# ମହାମାନ୍ୟ ମୁହମ୍ମଦ

ଲେଖକ :
**ଶକୀଲ ଅହମଦ**



ପ୍ରକାଶକ :
**ଇକ୍‌ରା ରିସର୍ଚ୍ଚ ଏକାଡେମୀ**
ମେଟ୍ରୋ ମଞ୍ଜିଲ, ଦିୱାନ ବଜାର
କଟକ - ୭୫୩ ୦୦୧

**ପ୍ରଥମ ସଂସ୍କରଣ : ୨୦୧୧**

ଅକ୍ଷରସଜ୍ଜା :
**ସାହୁ କମ୍ପ୍ୟୁଟର୍ ୟୁନିଟ୍, କଟକ**

ମୁଦ୍ରଣ :
**ଜୁନୁପ୍ ଗ୍ରାଫିକ୍ସ, କଟକ**

ମୂଲ୍ୟ :
**ଟ.୨୦୦.୦୦**

## MAHAMANYA MUHAMMAD

**Author :**
Shakeel Ahmed



**Publisher :**
**IQRA RESEARCH ACADEMY**
Metro Manzil, Dewan Bazar
Cuttack-753 001

**New Edition : 2011**

**Laser Typeset :**
Sahoo Computer Unit, Cuttack

**ISBN: 81-69881-55-2**

**Printers :**
Junup Graphics, Cuttack

**Price : 200.00**

# PUBLISHER'S NOTE

It is our pleasure to present one of the great works of brother Shakeel Ahmed, a researcher in Islamic Studies & Comparative Religion. The Author strives for peace and harmony and has been writing on Islam to create a proper understanding of the religion. His writings have received warm reception by the learned readers, both Muslims and Non-Muslims from various parts of the state.

The present work of the author is first of its kind in Odia literature which gives the readers a beautiful introduction to the Prophet of Islam and his teachings. It describes in great detail the truth about Prophet Muhammad (Peace be upon him) which changed the thoughts and lives of over one-fifth of the human race. The book acclaims distinction for its logical presentation with documentary records, critical analysis of the claim of Prophethood of Hazrat Muhammad (Peace be upon him) and refutation of the false allegations made against him by the western writers. The author has also brought to light many similarities in various religious scriptures which can be helpful in developing harmony. He has indeed, taken much pain in quoting the historians, theologians, scholars, scientists and various world scriptures.

The work of the author deserves sincere appreciation. We hope the book will be very useful in dispelling the religious differences as well as in understanding Islam and its Prophet ﷺ.

Mufti Abdur Rahman Nadvi
C.E.O., IQRA RESEARCH ACADEMY

## ଡକ୍ଟର ଉମେଶ ପତ୍ରୀ

ଶକୀଲ ଅହମଦ୍‌ଙ୍କ ''ମାହାମାନ୍ୟ ମୁହମ୍ମଦ'' ହଜରତ୍‌ଙ୍କ ସଂକ୍ରାନ୍ତରେ ଏକ ଗବେଷଣାଧର୍ମୀ ଗ୍ରନ୍ଥ । ଏଇ କେତେବର୍ଷ ହେଲା ଓଡ଼ିଆ ଭାଷାରେ ସେ ଯେଉଁ କେତେକ ଗ୍ରନ୍ଥ ଇସ୍‌ଲାମ ଉପରେ ଲେଖିଛନ୍ତି ତାହା ପାଠକଙ୍କ ପାଇଁ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଇସ୍‌ଲାମ ଭଳି ଏକ ଜଟିଳତମ ଧର୍ମ ଯାହା ଏକଦା ଆରବୀ ଓ ଉର୍ଦ୍ଦୁରେ ସୀମିତ ଥିଲା, ତାକୁ ସରଳ ସାବଲୀଳ ଭାଷାରେ ଓଡ଼ିଆ ପାଠକଙ୍କ ପାଖରେ ରଖିବା କିଛି ସହଜ କଥା ନ ଥିଲା, ଯାହା ଶକୀଲ ଅହମ୍ମଦ କରିଛନ୍ତି ।

ପାଶ୍ଚାତ୍ୟ ବିଦ୍ୱାନ୍‌ଙ୍କ ଅମୂଳକ ଅପପ୍ରଚାର ଫଳରେ ସମଗ୍ର ବିଶ୍ୱରେ ଏହାହିଁ ପ୍ରଚାରିତ ହୋଇ ଆସୁଛି ଯେ ଇସ୍‌ଲାମ ଦୟା ଓ କରୁଣାର କଥା କହୁଥିଲେ ମଧ୍ୟ ଏଥିରେ ନା ଅଛି ଦୟା ନା କରୁଣା । ମାତ୍ର ଏପ୍ରକାର ଅବାନ୍ତର ଆକ୍ଷେପର ନିରାକରଣ ଶକୀଲ ତାଙ୍କ ଏ ଗ୍ରନ୍ଥରେ କରିଛନ୍ତି । ସେ ଟମାସ୍ କାର୍ଲାଇଲ ଓ ବର୍ଣ୍ଣାଡ୍'ଶଙ୍କ ଠାରୁ ଆରମ୍ଭ କରି ମାର୍ଗୋଲିୟଥ ଓ ମୁର୍ ପର୍ଯ୍ୟନ୍ତ ଯେତେ ପାଶ୍ଚାତ୍ୟ ବିଦ୍ୱାନ୍ ଅଛନ୍ତି ସମସ୍ତଙ୍କ ମନ୍ତବ୍ୟର ଆଧାରରେ ଏହା ପ୍ରମାଣ କରି ଦେଇଛନ୍ତି ଯେ ଇସ୍‌ଲାମ ଏକ ଶାନ୍ତି ଓ ସମର୍ପଣର ଧର୍ମ ।

ହଜରତ୍ ମହମ୍ମଦଙ୍କ ଉପରେ ଥିବା ପାଶ୍ଚାତ୍ୟ ବିଦ୍ୱାନ୍‌ଙ୍କର ଆକ୍ଷେପଗୁଡ଼ିକ ମଧ୍ୟ ଶକୀଲ ଦୃଢ଼ ଶବ୍ଦରେ ଖଣ୍ଡନ କରିଛନ୍ତି, ଯେଉଁମାନେ ହଜରତ୍‌ଙ୍କୁ ଜଣେ ଲୁଣ୍ଠନକାରୀ, ଅପସ୍ମାର ରୋଗୀ ଓ ପାଗଳ କବି ଭାବରେ ପ୍ରଚାର କରିଆସୁଥିଲେ । ତେବେ ଯେଉଁମାନେ ଏବେ ପ୍ରଚାର କରି ଆସୁଛନ୍ତି ଯେ, ଇସ୍‌ଲାମରେ ଦୟା ଓ କରୁଣାର ସ୍ଥାନ ନାହିଁ, ସେମାନଙ୍କ ପାଇଁ ଏ ଆଲେଖ୍ୟଟି ଶକୀଲଙ୍କ ଗ୍ରନ୍ଥର ଆଉ ଏକ ଅଧ୍ୟାୟ ରୂପେ କାମ କରିବ ବୋଲି ମୋର ବିଶ୍ୱାସ ।

ଅଶେଷ ଦୟାବାନ ଓ ସଦା କରୁଣାମୟ ଅଲ୍ଲାହଙ୍କ ନାମରେ କୁର୍‌ଆନ ଆରମ୍ଭ ହୋଇଛି । ସେଥିପାଇଁ କୁହାଯାଇଛି—''ବିସ୍‌ମିଲ୍ଲାଃ ହିର୍ ରହ୍‌ମା ନିର୍‌ରହିମ୍'' ଅର୍ଥାତ୍—ଅସୀମ ଦୟାବାନ ଅନନ୍ତ କରୁଣାଶୀଳ ଅଲ୍ଲାହଙ୍କ

ନାମରେ । ଇସ୍‌ଲାମର ପ୍ରବର୍ତ୍ତକ ମୁହମ୍ମଦ ସମସ୍ତ ଜୀବଙ୍କ ଉପରେ ଦୟାବାନ୍ ବା 'ରହମତୁଲ୍ଲିଲ ଅଲ୍‌ମୀନ୍' ଥିଲେ । ଇସ୍‌ଲାମ ଅର୍ଥ ଶାନ୍ତି ଓ 'ସଲମ୍' ଧାତୁରୁ ଏ ଶବ୍ଦଟି ଆସିଥିବାରୁ ଏହାର ଅର୍ଥ ଶରଣାଗତ ।

ହଜରତ୍ ମୁହମ୍ମଦଙ୍କ ଦୟାର ତୁଳନା ନାହିଁ । ଛାରପୋକଠାରୁ ଆରମ୍ଭ କରି ପିମ୍ପୁଡ଼ିଙ୍କ ପର୍ଯ୍ୟନ୍ତ କାହାକୁ ଦଳି ଦେବାର ଅଧିକାର ଇସ୍‌ଲାମରେ ମୁସଲମାନମାନଙ୍କୁ ଦିଆଯାଇ ନାହିଁ । ପିମ୍ପୁଡ଼ିଧାର ଲମ୍ବିଥିବା ସମୟରେ ଧାର ସରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ମୁହମ୍ମଦ କହିଛନ୍ତି । ପୁନଶ୍ଚ କହିଛନ୍ତି, ନମାଜ ପଢୁଥିବା ସମୟରେ କପାଳରେ ଯଦି ପିମ୍ପୁଡ଼ିଟିଏ ଚାଲୁଛି ତାକୁ ମଧ୍ୟ କେହି ରଗଡ଼ି ନ ଦିଅନ୍ତୁ । ପିମ୍ପୁଡ଼ିମାନଙ୍କ ସମ୍ପର୍କରେ ମୁହମ୍ମଦ ଆଉ ଗୋଟିଏ ଉଦାହରଣ ଦିଅନ୍ତି, ଜଣେ ଧର୍ମଦୂତ ଗୋଟିଏ ଗଛ ମୂଳରେ ବିଶ୍ରାମ ନେବା ସମୟରେ ତାଙ୍କୁ ପିମ୍ପୁଡ଼ିଟିଏ କାମୁଡ଼ିଦେଲା । ସେ ପିମ୍ପୁଡ଼ିମାନଙ୍କ ଗାତରେ ନିଆଁ ଲଗାଇ ଦେଲେ । ଅଲ୍ଲାହଙ୍କ ଦୈବବାଣୀ ହେଲା, ତୁମେ ଗୋଟିଏ ପିମ୍ପୁଡ଼ିକୁ ପୋଡ଼ି ଦେବା କ'ଣ ଯଥେଷ୍ଟ ନଥିଲା ? ଅର୍ଥାତ୍ ତୁମକୁ ଗୋଟିଏ ପିମ୍ପୁଡ଼ି କାମୁଡ଼ିଦେଲା ବୋଲି ତୁମେ ମୋର ଏତେଗୁଡ଼ିଏ ପିମ୍ପୁଡ଼ିକୁ ନିଆଁରେ ପୋଡ଼ିଦେଲ (ବୁଖାରୀ ୪ : ୫୩୬) ।

କେହି ଯଦି ଓଟ ବା ଘୋଡ଼ାକୁ କୌଣସି କାରଣରୁ ପିଟୁଥିଲା ବା ନିର୍ଦ୍ଦୟପୂର୍ବକ କାମ କରାଉଥିଲା, ସେଥିରେ ମୁହମ୍ମଦ ଦୁଃଖିତ ହୋଇ ସେମାନଙ୍କୁ କହୁଥିଲେ—''ନିଜ ମୃତ୍ୟୁ କଥା ମନେପକାଅ । ତୁମେ ଜାଣନା ତାହା ତୁମ ପାଖକୁ କିଭଳି ଆସିବ । ଆଜି ତୁମେ ପଶୁପକ୍ଷୀଙ୍କୁ ଦୟା କରୁନାହଁ, କାଲି ତୁମକୁ କିଏ ଦୟା କରିବ ?'' ଏପରିକି ମସଜିଦ୍ ଉପରେ ରହୁଥିବା ପାରାଙ୍କୁ ଗୋଡ଼ିଟିଏ ମାରିବା ପାଇଁ ସେ ଶକ୍ତ ବାରଣ କରିଥିଲେ ।

ମୁହମ୍ମଦ ଏପରି ଜଣେ ସ୍ତ୍ରୀଲୋକର ଉଦାହରଣ ଦେଉଥିଲେ, ଯିଏ ଶୋଷିଲା କୁକୁରଟିକୁ ପିଇବା ପାଇଁ ପାଣି ଦେବାକୁ ଯାଇ ନିଜ ଜୋତାକୁ ବାଲ୍‌ଟି ଭଳି କୂଅରେ ବୁଡ଼ାଇ ପାଣି କାଢ଼ି ତା'ର ଶୋଷ ମେଣ୍ଟାଇଥିଲା (ବୁଖାରୀ ୩ : ୫୫୧) । ମହାତ୍ମା ମୁହମ୍ମଦ କହିଥିଲେ, ଜଣେ ସ୍ତ୍ରୀଲୋକ ଗୋଟିଏ ବିରାଡ଼ିକୁ ଖାଇବା ପିଇବାକୁ ନ ଦେଇ ଗୋଟିଏ ଜାଗାରେ ବାନ୍ଧି ରଖିଥିବାରୁ ତା'ର ମୃତ୍ୟୁ ହୋଇଗଲା । ଏଇ ପାପ ପାଇଁ ସ୍ତ୍ରୀଲୋକଟି ନରକଗାମୀ ହେଲା (ବୁଖାରୀ ୪ : ୬୮୯) । କ୍ରୂର ଭାବରେ ବଧ

କରାଯାଉଥିବାରୁ ହଜରତ୍ ମୁହମ୍ମଦ ବନ୍ୟ ପଶୁଙ୍କ ସୁନ୍ଦର ଚମଡ଼ା ଉପରେ ମଧ୍ୟ ବସିବାକୁ ମନା କରି ଦେଇଥିଲେ, କି ନିର୍ଦ୍ଦୟ ଭାବରେ ମରାଯାଇଥିବା ପଶୁପକ୍ଷୀଙ୍କ କୌଣସି ବସ୍ତୁ ବ୍ୟବହାର କରିବା ପାଇଁ ସେ ବାରଣ କରୁଥିଲେ ।

ଅବଦୁଲ୍ଲା ବିନ୍, ମାସୁଦ ରସୁଲଙ୍କ ସମ୍ପର୍କରେ ସାକ୍ଷ୍ୟ ଦିଅନ୍ତି, କିପରି ସେ ନିଜେ ତାଙ୍କ ସହ ଯାତ୍ରା କରିବା ସମୟରେ ଦୁଇଟି କପୋତ ଛୁଆଙ୍କୁ ଧରି ନେଇଥିଲେ । ମା’ କପୋତଟି ବସାରେ ତା’ ଶାବକଙ୍କୁ ନ ଦେଖି କେମିତି ପାଗଳ ପରି ଉଡ଼ିବୁଲିଲା । ଏହା ଦେଖି ରସୁଲ ସେ କପୋତ ଛୁଆ ଦୁଇଟାଙ୍କୁ ଛାଡ଼ିଦେବାପାଇଁ କହିଥିଲେ ଏବଂ ତାହାହିଁ କରାଗଲା ।

ଆଶା ଓ ବିଶ୍ୱାସ ଓଡ଼ିଆ ପାଠକଗଣ ଶକୀଲ ଅହମଦଙ୍କ ଏ ଗ୍ରନ୍ଥଟିରେ ମହାମାନ୍ୟ ମୁହମ୍ମଦଙ୍କ ବିଷୟରେ ଓ ଇସ୍‌ଲାମ ସଂକ୍ରାନ୍ତରେ ବହୁ କଥା ଜାଣିପାରିବେ । ଏ ପ୍ରକାର ଏକ ଗ୍ରନ୍ଥ ରଚନା କରିଥିବାରୁ ମୁଁ ତାଙ୍କୁ ସାଧୁବାଦ ଜଣାଉଛି ।

(ଡକ୍ଟର ଉମେଶ ପତ୍ରୀ)
ଅଧ୍ୟକ୍ଷ, କୃତିକା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍
ଟେକ୍‌ନିକାଲ ଏଜୁକେସନ୍ସ (କାଇଟ୍)
ଜାଆଁଳା, ଭୁବନେଶ୍ୱର-୭୫୨୦୫୪

## ଶ୍ରୀଯୁକ୍ତ ଅନ୍ନଦା ପ୍ରସାଦ ରାୟ

ପୃଥିବୀରେ ଯେତେ ପ୍ରତିଷ୍ଠିତ ଧର୍ମ ରହିଛି ସେସବୁ ମୂଳରେ ଗୋଟିଏ ଦିବ୍ୟସତ୍ତାର ଭୂମିକା ଥାଏ, ଯାହା ଅନେକ ସମୟରେ ଅଲୌକିକ ମନେହେଲେ ହେଁ ତାହା ଅନୁଭୂତିରେ ଆସି ଏକ ବିଶ୍ୱାସର ପରମ୍ପରା ସୃଷ୍ଟି କରେ । ଇସ୍‌ଲାମ ଧର୍ମର ପ୍ରବର୍ତ୍ତକ ମହାମାନ୍ୟ ମୁହମ୍ମଦ ଏହି ଦେଢ଼ହଜାର ବର୍ଷର ଇତିହାସରେ ମାନବସଭ୍ୟତାକୁ ବହୁ ଦୃଷ୍ଟିରୁ ପ୍ରଭାବିତ କରିଆସିଛନ୍ତି । ପୃଥିବୀରେ ଇସ୍‌ଲାମ ଧର୍ମ ଏକ ସୁପ୍ରତିଷ୍ଠିତ ଧର୍ମ ଏବଂ ଏହାର ଅନୁଗାମୀଙ୍କ ସଂଖ୍ୟା ମଧ୍ୟ ବିପୁଳ ।

ଧର୍ମ ବ୍ୟାପାରରେ କୌଣସି ସ୍ଥିର ସିଦ୍ଧାନ୍ତକୁ ସାବ୍ୟସ୍ତ କରିବା ଅତ୍ୟନ୍ତ ଜଟିଳ ଓ ଅସମ୍ଭବ ମଧ୍ୟ । ତୁଳନାତ୍ମକ ଦୃଷ୍ଟିକୋଣରୁ ଦେଖିଲେ ଇସ୍‌ଲାମ ଧର୍ମର ନୀତି ଓ ଲକ୍ଷ୍ୟ ଅପେକ୍ଷାକୃତ ସହଜ ଓ ଯୁକ୍ତିଯୁକ୍ତ ମଧ୍ୟ । ଧର୍ମ ଆଚରଣସିଦ୍ଧ ହେବା ଉଚିତ, ଯେହେତୁ ବିଚାରସର୍ବସ୍ୱ ଧର୍ମ ସାଧାରଣ ଲୋକଙ୍କ ଦ୍ୱାରା ଆଦୃତ ହୋଇପାରେ ନାହିଁ । ତେଣୁ ଇସ୍‌ଲାମ ଧର୍ମ ପ୍ରବର୍ତ୍ତକ ମୁହମ୍ମଦ ପୂର୍ବ ପ୍ରଚଳିତ ଅନ୍ୟ ଧର୍ମର ସଂସ୍କାର କରିବା ଉଦ୍ଦେଶ୍ୟରେ ଅନେକ ତ୍ୟାଗ ଓ ଯନ୍ତ୍ରଣାର ସମ୍ମୁଖୀନ ହୋଇ ମଧ୍ୟ ନିଜର ସିଦ୍ଧିଲବ୍ଧ ସନ୍ଦେଶ ବିତରଣ କରିଛନ୍ତି ।

ମୁହମ୍ମଦ ଈଶ୍ୱରଙ୍କ ଦୂତ ବୋଲି କୁର୍‌ଆନ ଧର୍ମଗ୍ରନ୍ଥରେ ଉଲ୍ଲେଖ ରହିଛି । ଯୀଶୁଖ୍ରୀଷ୍ଟଙ୍କ ପରେ ପୃଥିବୀର ସର୍ବାଧିକ ପ୍ରଚାରିତ ଇସ୍‌ଲାମ ଧର୍ମର ବିକାଶ ଓ ପ୍ରତିଷ୍ଠା କେବଳ ମୁହମ୍ମଦଙ୍କ ତ୍ୟାଗପୂତ ଓ ବୀରତ୍ୱପୂର୍ଣ୍ଣ ଜୀବନର ସିଦ୍ଧି ସ୍ୱରୂପ ମାନବଜାତିକୁ ହସ୍ତାନ୍ତରିତ ହୋଇଥିଲା । ପ୍ରାୟ ୧୫୭ କୋଟିରୁ ଊର୍ଦ୍ଧ୍ୱ ନରନାରୀ ମୁହମ୍ମଦଙ୍କ ଆଦର୍ଶ ଓ ନୀତି ଦ୍ୱାରା ଅନୁପ୍ରାଣିତ । ବିଶ୍ୱ ଲୋକସଂଖ୍ୟାର ଏହା ୨୩ ଶତାଂଶ । ମୁହମ୍ମଦ ୫୭୦ ମସିହାରେ ଏପ୍ରିଲ ୨୦ତାରିଖରେ ମକ୍କାର 'କୁରେଶ' ନାମକ ଏକ ଧନାଢ଼୍ୟ ବଂଶରେ ଜନ୍ମ ହୋଇଥିଲେ ମଧ୍ୟ ସେ ଶୈଶବରୁ ପିତାମାତାଙ୍କୁ ହରାଇ ଏକପ୍ରକାର ଅନାଥ ହୋଇଗଲେ । ଫଳରେ ମକ୍କାର ଜଣେ ପ୍ରଭାବଶାଳୀ ବ୍ୟକ୍ତି ତାଙ୍କର ଲାଳନ ପାଳନ ଦାୟିତ୍ୱ ନେଲେ । ଚାଳିଶ ବର୍ଷ ବୟସରେ ସେହି ମହାପୁରୁଷଙ୍କୁ ଦୈବାଦେଶ ହେଲା

ଯେ ସେ ହିଁ ଈଶ୍ୱରଙ୍କ ଦୂତ ଯାହାଙ୍କ ଦ୍ୱାରା ଦିବ୍ୟଧର୍ମ ପ୍ରତିଷ୍ଠା ହେବ ଏବଂ ପ୍ରଚଳିତ ସମାଜର କୁସଂସ୍କାର, ଅନ୍ୟାୟ, ହତ୍ୟା, ଲୁଣ୍ଠନ ଭଳି ଦୁରାଚାର ଦୂରୀଭୂତ ହେବ । ମୁହମ୍ମଦ ବିଶ୍ୱଧର୍ମ ପରମ୍ପରାରେ ଜଣେ ଅସାଧାରଣ କ୍ଷମତାସମ୍ପନ୍ନ ମହାପୁରୁଷଭାବେ କ୍ରମେ ବିଖ୍ୟାତ ହୋଇ ଇସ୍‌ଲାମ ଧର୍ମ ପ୍ରତିଷ୍ଠା କଲେ । ତାଙ୍କ ପ୍ରତି ହୋଇଥିବା ଦୈବାଦେଶକୁ କୁର୍‌ଆନ ଧର୍ମଗ୍ରନ୍ଥରେ ସ୍ଥାନିତ କରାଯାଇଛି । ଏ ସମ୍ପର୍କରେ ଗ୍ରନ୍ଥାକାର ଶକୀଲ ଅହମଦ ଏକ ମନୋଜ୍ଞ ଶୈଳୀରେ ମୁହମ୍ମଦଙ୍କ ଜୀବନୀ ଓ ଦର୍ଶନର ପ୍ରାଞ୍ଜଳ ଓ ରସାଳ ଉପସ୍ଥାପନା କରି ସବୁ ଧର୍ମବିଶ୍ୱାସୀମାନଙ୍କ ପାଇଁ ଧନ୍ୟବାଦର ପାତ୍ର ହୋଇପାରିଛନ୍ତି ।

ଇସ୍‌ଲାମ ଦୁନିଆ ମହାମାନ୍ୟ ମୁହମ୍ମଦଙ୍କ ଶିକ୍ଷା ଓ ସନ୍ଦେଶକୁ ବହନ କରି ଆଜି ପୃଥିବୀରେ ଏକ ଦ୍ୱିତୀୟ ବୃହତ୍ତମ ଧର୍ମ ଭାବରେ ପରିଚୟ ଲାଭ କରିଛି । 'କୁର୍‌ଆନ'ର ସିଦ୍ଧାନ୍ତ ବହୁ ପ୍ରାଚୀନ ଓ ସମକାଳୀନ ଧର୍ମମତର ଏକ ସୁନ୍ଦର ସମନ୍ୱୟ ସ୍ଥାପନ କରିଛି । ଏହା କୌଣସି ଧର୍ମର ପରିପନ୍ଥୀ ବୋଲି ଭାବିବା ଠିକ୍ ନୁହେଁ । ବରଂ ଏକ ନୂତନ ଉପଲବ୍ଧି । ଆଲ୍ଲା ବା ଈଶ୍ୱର ହେଉଛନ୍ତି ଏକ ହିଁ ସର୍ବଶକ୍ତିମାନ ପ୍ରଭୁ ଏବଂ ଏ ସମଗ୍ର ଜଗତ ହେଉଛି ତାଙ୍କରି ଶକ୍ତିର ପରିପ୍ରକାଶ । କୁର୍‌ଆନର ବହୁଶିକ୍ଷା ମାନବିକ ଐକ୍ୟ, ସମତା, ନ୍ୟାୟ ଇତ୍ୟାଦି ମୂଲ୍ୟବୋଧକୁ ଘୋଷଣା କରିଛି ।

ଶ୍ରୀ ଶକୀଲ ଅହମଦ ଇସ୍‌ଲାମୀ ସଂସ୍କୃତିର ଆମୂଳଚୂଳ ଅନୁଧ୍ୟାନ କରି ଯେଉଁ ତୁଳନାତ୍ମକ ଧର୍ମୀୟ ବିଚାର ଉପସ୍ଥାପିତ କରିଛନ୍ତି, ତାହା ଇସ୍‌ଲାମ ଧର୍ମର ମହନୀୟତାକୁ ପ୍ରତିପାଦିତ କରିବାରେ ସହାୟକ ହୋଇପାରିଛି ।

'ମହାମାନ୍ୟ ମୁହମ୍ମଦ' ଜଣେ ଦିବ୍ୟକ୍ରାନ୍ତିର ବାର୍ତ୍ତାବହ ତଥା ଏକାଧାରରେ ଯୋଦ୍ଧା ଓ କୃପାଳୁ ଥିଲେ । ସେ ତାଙ୍କ ସମୟର ସମସ୍ତ ପ୍ରକାର ମୂଢ଼ତା, ସ୍ଥାଣୁତା ଓ କୁସଂସ୍କାରକୁ ଦୃଢ଼ ଭାବରେ ଖଣ୍ଡନ କରି ଜଣେ ଯୁଗନିର୍ମାତା ଭାବରେ ବନ୍ଦିତ ହୋଇପାରିଥିଲେ । ତାଙ୍କର ଅନୁଗାମୀମାନଙ୍କୁ 'ମୁସଲମାନ' କୁହାଯାଏ । ଦେଢ଼ହଜାର ବର୍ଷ ଧରି ଇସ୍‌ଲାମ ଧର୍ମ ପୃଥିବୀର ସଭ୍ୟତା ଓ ସଂସ୍କୃତିକୁ ଗଭୀର ଭାବରେ ପ୍ରଭାବିତ କରିଛି ।

ଆମ ଭାରତବର୍ଷରେ ଇସ୍‌ଲାମ ଧର୍ମ, ସଂସ୍କୃତି ଓ ବିଶ୍ୱାସୀମାନଙ୍କର ଦେଶର ସର୍ବାଙ୍ଗୀନ କଲ୍ୟାଣ ଓ ବିକାଶ ପାଇଁ ବହୁ ଅବଦାନ ରହିଛି । ଏହି ଗ୍ରନ୍ଥର ପ୍ରଣେତା ଶ୍ରୀ ଶକୀଲ ମହୋଦୟ ଓଡ଼ିଆ ଭାଷାରେ କୁର୍‌ଆନ ଓ

ମହାମାନ୍ୟ ମୁହମ୍ମଦଙ୍କ ସମ୍ପର୍କରେ ଏକ ତଥ୍ୟଭିତ୍ତିକ ତଥା ଯୁକ୍ତିଯୁକ୍ତ ବିଷୟବସ୍ତୁକୁ ସନ୍ନିବେଶିତ କରି ଓଡ଼ିଆ ଧର୍ମ ସାହିତ୍ୟରେ ଗୋଟିଏ ଉଜ୍ଜ୍ୱଳ ବର୍ତ୍ତିକା ପ୍ରଜ୍ୱଳିତ କରିଛନ୍ତି । ନଅଟି ଅଧ୍ୟାୟରେ ମୁହମ୍ମଦଙ୍କ ଆବିର୍ଭାବ, ତାଙ୍କ ସମ୍ପର୍କରେ ବିଭିନ୍ନ ମନୀଷୀଙ୍କର ମତ, ତାଙ୍କର ଐଶ୍ୱରୀକ କ୍ଷମତା, କୁର୍‌ଆନରେ ପ୍ରଦତ୍ତ ବ୍ରହ୍ମାଣ୍ଡ ସୃଷ୍ଟି ରହସ୍ୟ, ତାଙ୍କର ଭବିଷ୍ୟତ ବାଣୀ ଏବଂ ପାର୍ସି, ବୌଦ୍ଧ, ହିନ୍ଦୁ, ବାଇବଲ ଇତ୍ୟାଦି ଧର୍ମଗ୍ରନ୍ଥରେ ତାଙ୍କର ଦର୍ଶନର ସାମଞ୍ଜସ୍ୟ ଇତ୍ୟାଦି ସାବଲୀଳ ଭାଷା ଓ ଶୈଳୀରେ ବର୍ଣ୍ଣନା କରି ଇସ୍‌ଲାମ ସଂସ୍କୃତି ପ୍ରତି ସାର୍ବଜନିକ ଆଗ୍ରହ ସୃଷ୍ଟି କରିପାରିଛନ୍ତି ।

ଅନ୍ନଦା ପ୍ରସାଦ ରାୟ

(ଅନ୍ନଦା ପ୍ରସାଦ ରାୟ)
ପୂର୍ବତନ ସଭାପତି
ଉତ୍କଳ ସାହିତ୍ୟ ସମାଜ

## ଡକ୍ଟର ହୁସେନ୍ ରବି ଗାନ୍ଧୀ

ଏମ୍.ଏ., ଏଲ୍.ଏଲ୍.ବି., ପି.ଏଚ୍.ଡି.

ଜନାବ୍ ଶକୀଲ ଅହମ୍ମଦ ଓଡ଼ିଆ ଭାଷାରେ ବେଶ୍ କେତୋଟି ମୂଲ୍ୟବାନ ଇସ୍‌ଲାମୀ ପୁସ୍ତକ ରଚନା କରି ଓଡ଼ିଆ ପାଠକମାନଙ୍କୁ ଇସ୍‌ଲାମ ଧର୍ମ ସମ୍ପର୍କରେ ଅନେକ ସୂଚନା ଓ ଶିକ୍ଷା ପ୍ରଦାନ କରିବାରେ ସମର୍ଥ ହୋଇପାରିଛନ୍ତି । ପୂର୍ବରୁ ସେ 'ଇସ୍‌ଲାମ ପରିଚୟ', 'ଇସ୍‌ଲାମ ଏବଂ ମାନବିକତା', 'ବେଦ, ବାଇବଲ ଏବଂ କୁର୍‌ଆନରେ ଏକେଶ୍ୱରବାଦ' ତଥା 'ପୁନର୍ଜୀବନ କାହିଁକି ?' ପୁସ୍ତକମାନ ରଚନା କରି ଓଡ଼ିଆଭାଷୀ ପାଠକମାନଙ୍କୁ ଇସ୍‌ଲାମ ଧର୍ମ ସମ୍ପର୍କରେ ଅନେକ କଥା ଜାଣିବାରେ ସାହାଯ୍ୟ କରିପାରିଛନ୍ତି ।

ଏକଥା ସତ ଯେ, ଓଡ଼ିଶାରେ ହିନ୍ଦୁ ଓ ମୁସଲମାନ୍‌ମାନେ ଗତ ପ୍ରାୟ ୫ଶହ ବର୍ଷ ଧରି ଏକାଠି ବାସ କରିଆସୁଥିଲେ ବି ସଂଖ୍ୟାଗରିଷ୍ଠ ହିନ୍ଦୁମାନେ ନିଜର ସଂଖ୍ୟାଲଘୁ ଭାଇମାନଙ୍କ ଧାର୍ମିକ ଆଚାର, ବିଚାର, ଦର୍ଶନ ଓ ବିଶ୍ୱାସ ସମ୍ପର୍କରେ ଖୁବ୍ କମ୍ ଧାରଣା ରଖନ୍ତି । ତା'ର କାରଣ ହେଉଛି, ଓଡ଼ିଆ ଭାଷାରେ ଇସ୍‌ଲାମ ଧର୍ମ ବା ଏହି ଧର୍ମର ଶେଷ ପୟଗମ୍ବର୍ (ବାର୍ତ୍ତାବହ) ହଜରତ୍ ମୁହମ୍ମଦଙ୍କ ସମ୍ପର୍କରେ ବିଶେଷ କିଛି ପ୍ରାମାଣିକ ପୁସ୍ତକ ଉପଲବ୍ଧ ନାହିଁ । ତେଣୁ ହିନ୍ଦୁ ଭାଇ-ଭଉଣୀମାନେ ଅନ୍ୟାନ୍ୟ ଧର୍ମ ସମ୍ପର୍କରେ ଯେତେ ଜାଣନ୍ତି, ନିଜର ନିକଟତମ ପଡ଼ୋଶୀ ଇସ୍‌ଲାମ ଧର୍ମାବଲମ୍ବୀମାନଙ୍କ ସମ୍ପର୍କରେ ସେତେ କଥା ଜାଣନ୍ତି ନାହିଁ ।

ଏହି କଥା ହୃଦୟଙ୍ଗମ କରି ଏଇ ଦଶନ୍ଧି ଭିତରେ ଇସ୍‌ଲାମ ଧର୍ମ ସମ୍ପର୍କୀୟ କେତୋଟି ଉପାଦେୟ ପୁସ୍ତକ ଓଡ଼ିଆ ଭାଷାରେ ରଚିତ ହୋଇଛି । ଯଦିଓ ଏଗୁଡ଼ିକ ତଥାପି ଯଥେଷ୍ଟ ନୁହେଁ, କିନ୍ତୁ ଏ ଦିଗରେ ଏକ ପ୍ରୟାସ ଆରମ୍ଭ ହେବା ନିଶ୍ଚିତ ଭାବେ ଆଶାର କଥା, ଏହା ଅସ୍ୱୀକାର କରାଯାଇ ପାରିବ ନାହିଁ । ଏହି ପ୍ରୟାସ ଭିତରେ ସର୍ବାଗ୍ରେ ରହିଛନ୍ତି ଜନାବ୍ ଶକୀଲ୍ ଅହମଦ୍ ସାହେବ ଓ ତାଙ୍କର ପ୍ରକାଶନ ସଂସ୍ଥା 'ଇକ୍‌ରା ରିସର୍ଚ୍ଚ ଏକାଡେମୀ' ।

ଏହା ପୂର୍ବରୁ କିଛି ବିଦ୍ୱାନ୍ ଇସ୍‌ଲାମ ଧର୍ମ ସମ୍ପର୍କରେ ତଥା ହଜରତ୍ ମୁହମ୍ମଦ (ସ.ଅ.ସ.)ଙ୍କ ଜୀବନୀ ସମ୍ପର୍କରେ ଓଡ଼ିଆ ଭାଷାରେ କେତୋଟି

ପୁସ୍ତକ ଅବଶ୍ୟ ରଚନା କରିଛନ୍ତି; ମାତ୍ର ତାହା ଯଥେଷ୍ଟ ନୁହେଁ । ଇତିମଧ୍ୟରେ ଜନାବ୍ ଶକୀଲ ଅହମଦ୍ ସାହେବଙ୍କ ଦ୍ୱାରା ରଚିତ ତଥା 'ଇକ୍‌ରା ରିସର୍ଚ୍ଚ ଏକାଡେମୀ' ତରଫରୁ ପ୍ରକାଶିତ ୪ଖଣ୍ଡ ପୁସ୍ତକ ବେଶ୍ ପାଠକୀୟ ଶ୍ରଦ୍ଧା ହାସଲ କରିପାରିଛି । ପ୍ରସ୍ତୁତ ପୁସ୍ତକ 'ମହାମାନ୍ୟ ମୁହମ୍ମଦ' ତାଙ୍କର ୫ମ ଅବଦାନ ।

ହଜରତ୍ ମୁହମ୍ମଦ (ସ.ଅ.ସ.)ଙ୍କ ଏକ ଜୀବନୀ ପୁସ୍ତକ ଏଇ ନିକଟ ଅତୀତରେ କବି ଓ ଲେଖକ ଜନାବ୍ କୁଦ୍‌ରତ୍ ଅଲୀ କୁଦ୍‌ରତ୍ ରଚନା କରିଛନ୍ତି । କିନ୍ତୁ ଜନାବ୍ ଶକୀଲ ଅହମଦ୍ ସାହେବଙ୍କର ପ୍ରସ୍ତୁତ ପୁସ୍ତକ 'ମହାମାନ୍ୟ ମୁହମ୍ମଦ' ଶେଷ ପୟଗମ୍ବର୍ ହଜରତ୍ ମୁହମ୍ମଦ (ସ.ଅ.ସ.)ଙ୍କ ଜୀବନୀ ନୁହେଁ । ଏହା ଅତି ଚମତ୍କାର ଭାବରେ ହଜରତ୍ ମୁହମ୍ମଦଙ୍କ ଏକ ସଂକ୍ଷିପ୍ତ ଜୀବନୀ ସହିତ ପୟଗମ୍ବରମାନଙ୍କ ଅବତରଣର କାରଣ, ଈଶ୍ୱରଙ୍କ ପ୍ରତିନିଧିତ୍ୱ—ଏକ ଦିବ୍ୟ ପରମ୍ପରା ସମ୍ପର୍କରେ ବିସ୍ତୃତ ଆଲୋଚନା, ହଜରତ୍ ମୁହମ୍ମଦ (ସ.ଅ.ସ.)ଙ୍କ ଈଶ୍ୱରଦୂତ ହେବା ସପକ୍ଷରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ, ଶେଷ ପୟଗମ୍ବର୍ ହଜରତ୍ ମହମ୍ମଦ (ସ.ଅ.ସ)ଙ୍କ ଚମତ୍କାରିତା ପ୍ରଦର୍ଶନର ଏକ ତାତ୍ତ୍ୱିକ ବିଶ୍ଳେଷଣ ଓ ଐତିହାସିକ ପ୍ରମାଣମାନଙ୍କର ଉପସ୍ଥାପନା, ତାଙ୍କର ଭବିଷ୍ୟତ ବାଣୀ ଓ ସମସ୍ତ ଭବିଷ୍ୟତବାଣୀ ସତ୍ୟରେ ପରିଣତ ହେବା, ତାଙ୍କ ମାଧ୍ୟମରେ ଅବତରିତ ଗ୍ରନ୍ଥ ପବିତ୍ର କୁର୍‌ଆନ୍‌ର ବିଶେଷତ୍ୱ, ଏହି ପୁସ୍ତକରେ ଥିବା ବିଷୟମାନଙ୍କର ବୈଜ୍ଞାନିକ ପ୍ରମାଣ ସିଦ୍ଧତା, ଅତୀତର ବିଭିନ୍ନ ମହାନ୍ ଧର୍ମଗୁରୁ ଓ ଗ୍ରନ୍ଥମାନଙ୍କ ମାଧ୍ୟମରେ ହଜରତ୍ ମୁହମ୍ମଦ (ସ.ଅ.ସ.)ଙ୍କ ଆଗମନ ସମ୍ପର୍କରେ ଅଗ୍ରସୂଚନା ତଥା ବିଶ୍ୱର ଅନେକ ବରେଣ୍ୟ ଦାର୍ଶନିକ, ଐତିହାସିକ, ସାହିତ୍ୟିକ ଓ ଚିନ୍ତକ ମନିଷୀମାନେ ହଜରତ୍ ମୁହମ୍ମଦଙ୍କ ସମ୍ପର୍କରେ ବ୍ୟକ୍ତ କରିଥିବା ମୂଲ୍ୟବାନ ଉକ୍ତିମାନଙ୍କର ଉଦ୍ଧୃତିମାନ ଦେଇ, ଜନାବ୍ ଶକୀଲ୍ ଅହମଦ ସାହେବ ନିଜର ସଦ୍ୟତମ କୃତି 'ମହାମାନ୍ୟ ମୁହମ୍ମଦ' ମାଧ୍ୟମରେ ଓଡ଼ିଆ ଭାଷା-ସାହିତ୍ୟର କେବଳ ହିତ ସାଧନା କରିନାହାନ୍ତି, ଅପିତୁ ସମସ୍ତ ବର୍ଗର ଓ ସମସ୍ତ ଶ୍ରେଣୀର ପାଠକ-ପାଠିକାମାନଙ୍କ ଭିତରେ ଶେଷ ପୟଗମ୍ବର ହଜରତ୍ ମୁହମ୍ମଦଙ୍କ ସମ୍ପର୍କରେ ଅନେକ ଅଜଣା କଥାକୁ ସଫଳତାର ସହିତ ଜଣାଇ ପାରିଛନ୍ତି । ତାଙ୍କର ବ୍ୟାଖ୍ୟା ଏକ ନୂତନ ଶୈଳୀରେ ଓ ସରଳ ଭାଷାରେ ହୋଇଥିବାରୁ ଏହା ସହଜ ଓ ବୋଧଗମ୍ୟ ହୋଇପାରିଛି ।

ପ୍ରାୟ ଅଧିକାଂଶ ମୁସଲମାନ ଏଇଥିପାଇଁ ମୁସଲମାନ ଯେ, ସେମାନେ ମୁସଲମାନ ପିତାମାତାଙ୍କଠାରୁ ଜନ୍ମଗ୍ରହଣ କରିଛନ୍ତି । ସେମାନେ ଇସ୍‌ଲାମ୍ ଧର୍ମର ଦର୍ଶନ ଅନୁଧ୍ୟାନ କରି ପବିତ୍ର କୁରଆନ୍‌ର ବାଣୀ ପାଠ କରି ବା ଶେଷ ପୟଗମ୍ବର ହଜରତ୍ ମୁହମ୍ମଦଙ୍କ ଜୀବନ ଦ୍ୱାରା ପ୍ରଭାବିତ ହୋଇ ମୁସଲମାନ ହୋଇ ନାହାନ୍ତି । ଏହି ପୁସ୍ତକ ସେପରି ଲୋକମାନଙ୍କର ମଧ୍ୟ ମାର୍ଗଦର୍ଶନ କରିବାରେ ସମର୍ଥ ହେବ ବୋଲି ମୋର ବିଶ୍ୱାସ ।

ମୁଁ ମୁସଲମାନ ପିତାମାତାଙ୍କଠାରୁ ଜନ୍ମ ହୋଇ ଆଦୌ ମୁସଲମାନ ହୋଇନାହିଁ । ମୁଁ ଇସ୍‌ଲାମ୍ ଧର୍ମର ଦର୍ଶନକୁ କିଛି କିଛି ଅଧ୍ୟୟନ କରି, ଏହାର ସାରମର୍ମକୁ ହୃଦୟଙ୍ଗମ କରିପାରିଛି । ଫଳରେ ଇସ୍‌ଲାମ୍ ଧର୍ମର ସରଳତା, ଆଡ଼ମ୍ବରବିହୀନତା ଓ ଉଚ୍ଚମାନବିକ ମୂଲ୍ୟବୋଧ ଦ୍ୱାରା ପ୍ରଭାବିତ ହୋଇ ମୁଁ ଇସ୍‌ଲାମୀ ଜୀବନଶୈଳୀକୁ ଆପଣେଇ ନେଇଛି । ମୁଁ ବିଶ୍ୱାସ କରୁଥିବା ଇସ୍‌ଲାମ୍ ପୃଥିବୀରେ ଘୃଣା ପରିବର୍ତ୍ତେ, ପ୍ରେମ, ସୌହାର୍ଦ୍ଦ୍ୟ ଓ ଭାଇଚାରାର ବାର୍ତ୍ତା ପ୍ରଚାର କରେ । ହିଂସା, ଘୃଣା, ଯୁଦ୍ଧ ଓ ଆତଙ୍କବାଦ ସହିତ ମୁଁ ବିଶ୍ୱାସ କରୁଥିବା ଇସ୍‌ଲାମ୍ ଧର୍ମର କୌଣସି ସମ୍ପର୍କ ନାହିଁ । ମୁଁ ଯେଉଁ ଇସ୍‌ଲାମୀ ଦର୍ଶନରେ ବିଶ୍ୱାସ କେରେ, ତାହାହିଁ ଶେଷ ପୟଗମ୍ବର ହଜରତ୍ ମୁହମ୍ମଦ (ସ.ଅ.ସ.)ଙ୍କ ପ୍ରଚାରିତ ଆଦି ଦର୍ଶନ । ଏହି ଦର୍ଶନକୁ 'ମହାମାନ୍ୟ ମୁହମ୍ମଦ' ପୁସ୍ତକ ମାଧ୍ୟମରେ ଜନାବ୍ ଶକୀଲ୍ ଅହମ୍ମଦ ସାହେବ ଓଡ଼ିଆ ଭାଷାରେ ଅତି ସୁନ୍ଦର ଭାବରେ ସବିସ୍ତୃତ ପ୍ରସ୍ତୁତ କରି ଆମ ଭାଷାର ପାଠକ-ପାଠିକାମାନଙ୍କ ଅଧ୍ୟୟନ ପାଇଁ ପରିବେଷଣ କରି ଧନ୍ୟବାଦର ପାତ୍ର ହୋଇ ପାରିଛନ୍ତି ।

ଆଦିପୁରୁଷ ଆଦମ୍‌ଙ୍କଠାରୁ ଏକେଶ୍ୱରବାଦର ଯେଉଁ ଆଧ୍ୟାତ୍ମିକ ପରମ୍ପରା ପ୍ରଚାରିତ ଓ ପ୍ରସାରିତ ହୋଇଛି, ସେହି ଆଧ୍ୟାତ୍ମିକ ପରମ୍ପରାର ଶେଷ ପ୍ରଚାରକ ହେଉଛନ୍ତି ହଜରତ୍ ମୁହମ୍ମଦ (ସ.ଅ.ସ.) । ତାଙ୍କ ପରେ ମହାପୁରୁଷମାନେ ଆସିବେ ସତ, ସେମାନେ କିନ୍ତୁ କେବଳ ମୁହମ୍ମଦଙ୍କ ଦ୍ୱାରା ଆନୀତ ବାର୍ତ୍ତାକୁ ହିଁ ତର୍ଜମା କରିବେ ବା ବ୍ୟାଖ୍ୟା କରିବେ । ସୁତରାଂ ପବିତ୍ର କୁର୍‌ଆନ ଯେ ଶେଷ ଈଶ୍ୱରପ୍ରଦତ୍ତ ଦିବ୍ୟ ଆଇନ୍, ଏଥିରେ ସନ୍ଦେହ ନାହିଁ । ଏହି ସତ୍ୟକୁ ଜନାବ୍ ଶକୀଲ୍ ଅହମ୍ମଦ ସାହେବ ନିଜ ପୁସ୍ତକରେ ବେଶ୍ ତର୍କସଙ୍ଗତ ଉପସ୍ଥାପନା ମାଧ୍ୟମରେ ପ୍ରମାଣିତ କରାଇପାରିଛନ୍ତି ।

ଏହି ପୁସ୍ତକଟି ସମସ୍ତ ଧର୍ମାବଲମ୍ବୀମାନଙ୍କୁ 'ଇସ୍‌ଲାମ୍' ସମ୍ପର୍କରେ ଚମତ୍କାର ଭାବେ ଏକ ବିଶେଷ ଜ୍ଞାନ ପ୍ରଦାନ କରିପାରିବ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ । ଏପରି ଏକ ଭିନ୍ନ ସ୍ୱାଦର ଆଧ୍ୟାତ୍ମିକ, ବୈଜ୍ଞାନିକ, ଯୁକ୍ତିସଙ୍ଗତ ଓ ସାଧାରଣ ପାଠକର ବୋଧଗମ୍ୟ ଭାଷାରେ ରଚିତ ପୁସ୍ତକ ଆମ ପାଇଁ ଅନେକ ଉପାଦେୟ ହେବା ସହିତ ଯୁଗୋପଯୋଗୀ ହୋଇପାରିଛି, ଏଥିରେ ସନ୍ଦେହ ନାହିଁ । ଜନାବ୍ ଶକୀଲ୍ ଅହମଦ ସାହେବଙ୍କୁ ଏହି ପୁସ୍ତକ ରଚନା ପାଇଁ ମୁଁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

ଅଦ୍ୱିତୀୟ ବ୍ରହ୍ମ (ଯାହାଙ୍କୁ ଆରବୀୟ ଭାଷାରେ 'ଅଲ୍ଲାହ' କୁହାଯାଏ) ଏହି ପୁସ୍ତକ ପାଠ କରିଥିବା ବ୍ୟକ୍ତିମାନଙ୍କ ହୃଦୟରେ ଆଦି ସତ୍ୟର ଜ୍ୟୋତି ପ୍ରଜ୍ୱଳିତ କରି ସେମାନଙ୍କୁ ସତ୍‌ମାର୍ଗ ପ୍ରଦାନ କରନ୍ତୁ । ଏହାହିଁ ମୋ ପରି ଜଣେ ଅକିଞ୍ଚନ ସତ୍ୟମାର୍ଗ ଅନୁସରଣକାରୀ ଅଦ୍ୱିତୀୟ ବ୍ରହ୍ମ-ସେବକର ବିନୀତ ପ୍ରାର୍ଥନା ।

(ଡକ୍ଟର ହୁସେନ୍ ରବି ଗାନ୍ଧୀ)<br>
ପୂର୍ବତନ ସଭାପତି<br>
ଓଡ଼ିଶା ସାହିତ୍ୟ ଏକାଡେମୀ<br>
ସମ୍ପାଦକ, ଉତ୍କଳ ପ୍ରସଙ୍ଗ<br>
ଭୁବନେଶ୍ୱର

## ଡକ୍ଟର ଅବଦୁଲ ୱସିଦ୍ ଖାଁ

ଶକୀଲ ଅହମଦ୍‌ଙ୍କ ପଞ୍ଚମ ପୁସ୍ତକ ''ମାହାମାନ୍ୟ ମୁହମ୍ମଦ'' ବାସ୍ତବରେ ଏକ ଉଲ୍ଲେଖନୀୟ ଗ୍ରନ୍ଥ । ମୋ ମତରେ ମହାପୁରୁଷ ମୁହମ୍ମଦଙ୍କ ଉପରେ ଏପର୍ଯ୍ୟନ୍ତ ଲେଖାଯାଇଥିବା ଓଡ଼ିଆ ପୁସ୍ତକମାନଙ୍କ ମଧ୍ୟରେ ଏହା ସର୍ବଶ୍ରେଷ୍ଠ । ମାଷ୍ଟରପିସ୍ କହିଲେ ଅତ୍ୟୁକ୍ତି ହେବନାହିଁ । ଏଥିରେ ଯେଉଁ ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି, ତାହା ଯେ କେବଳ ମହାପୁରୁଷ ମୁହମ୍ମଦଙ୍କୁ ବିଶ୍ୱର ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତି, ସର୍ବଶେଷ ଈଶ୍ୱରଦୂତ, ମହାନ ମାର୍ଗଦର୍ଶକ, ଧର୍ମ ସଂସ୍କାରକ ତଥା ଧର୍ମର ପୁନଃସଂସ୍ଥାପକ, ପରିବାର, ସମାଜ, ଶାସନ, ଶିକ୍ଷା, ଅର୍ଥନୀତି, ବିଜ୍ଞାନ, ଦର୍ଶନ ଓ ସାହିତ୍ୟର ଜଣେ ସର୍ବଶ୍ରେଷ୍ଠ ବିଦ୍ଧାଣୀ, ଅତୀତ-ବର୍ତ୍ତମାନ-ଭବିଷ୍ୟତର ପ୍ରବକ୍ତା ଭାବରେ ସଯୁକ୍ତି ପ୍ରମାଣ କରାଯାଇଛି ତା' ନୁହେଁ, ଏଇ ଆଳରେ ବିଶ୍ୱର ମହାନ ଧର୍ମମାନଙ୍କ ମଧ୍ୟରେ ସଦ୍‌ଭାବନା ପ୍ରତିଷ୍ଠା, ବିଶ୍ୱ ବ୍ରହ୍ମାଣ୍ଡକୁ ଏକ ଓ ଅଦ୍ୱିତୀୟ ପରମେଶ୍ୱରଙ୍କର ସୁନ୍ଦର ସୃଷ୍ଟି ଭାବରେ ପ୍ରତିପାଦନ, ଧର୍ମଗ୍ରନ୍ଥମାନଙ୍କ ମଧ୍ୟରେ ଥିବା ମହାନ ମାନବ ହିତୈଷୀ ଲକ୍ଷ୍ୟ ଓ ଆଦର୍ଶ ଆଦିର ତୁଳନା ଓ ଅଧ୍ୟୟନ ମଧ୍ୟ କରାଯାଇଛି ।

ଇସ୍‌ଲାମ ଧର୍ମର ମହାନ୍ ଦିଗବାରେଣୀ—କୁର୍‌ଆନ ଓ ହଦିସ୍ । ପବିତ୍ର କୁର୍‌ଆନ ନିରାକାର ବ୍ରହ୍ମସତ୍ତା ପରମେଶ୍ୱର ଅଲ୍ଲାହଙ୍କର ମହାନ ବାଣୀ ଯାହା ସ୍ୱର୍ଗଦୂତ (Angel) ଜିବ୍ରାଇଲଙ୍କ ମାଧ୍ୟମରେ ହୀରା ଗୁମ୍ଫାରୁ ଆରମ୍ଭ କରି ମକ୍କା ଓ ମଦିନାର ବିଭିନ୍ନ ସ୍ଥାନରେ ମହାମାନ୍ୟ ମୁହମ୍ମଦଙ୍କ ଜରିଆରେ ଦୀର୍ଘ ୨୩ବର୍ଷ ମଧ୍ୟରେ ଇହଜଗତକୁ ଅବତରିତ ହୋଇଥିଲା । ଅପରନ୍ତୁ ହଦିସ୍ ହେଉଛି ମହାମାନ୍ୟ ଈଶ୍ୱରଦୂତଙ୍କ କଥା ଓ କର୍ମର ପ୍ରାମାଣିକ ବିବରଣୀ । ପ୍ରକୃତରେ ଏହା ପବିତ୍ର କୁର୍‌ଆନର ବ୍ୟାଖ୍ୟା । କୁର୍‌ଆନକୁ ମହାମାନ୍ୟ ମୁହମ୍ମଦ ନିଜ ଜୀବନ ଧାରାରେ ଢାଳି ସମଗ୍ର ମାନବ ସମାଜ ପାଇଁ ସର୍ବୋତ୍ତମ ଉଦାହରଣ ସୃଷ୍ଟି କରିଅଛନ୍ତି । ତାଙ୍କର ଶିକ୍ଷା ମଣିଷର ଜୀବନଧାରାକୁ ଶୁଦ୍ଧ, ଶୃଙ୍ଖଳିତ, ସଂଯତ, ସତ୍ୟନିଷ୍ଠ ତଥା ମାନବକଲ୍ୟାଣକାରୀ କରିବା ଦିଗରେ ଏକ ଅବ୍ୟର୍ଥ ଆଚରଣ ସଂହିତା ।

ଧର୍ମର ମହାନ୍ ଲକ୍ଷ୍ୟ ମନୁଷ୍ୟକୁ ଶରୀର ତଥା ଆତ୍ମାରେ ମହାନ କରି ଗଢ଼ି ତୋଳିବା । ତାକୁ ବିଶାଳ ସୃଷ୍ଟି ଜଗତ ମଧ୍ୟରେ ଅନ୍ୟାନ୍ୟ ସତ୍ତା ପରି କଲ୍ୟାଣକାରୀ କରି ସଜାଇବା ।

ଶକୀଲ ଅହମଦ ତାଙ୍କର ''ମହାମାନ୍ୟ ମୁହମ୍ମଦ'' ଗ୍ରନ୍ଥରେ ବହୁ ଯୁକ୍ତ, ତର୍କ, ପ୍ରମାଣ ଓ ଯଥାର୍ଥ ତଥ୍ୟମାନଙ୍କ ମାଧ୍ୟମରେ ଉପରୋକ୍ତ ଆଭିମୁଖ୍ୟକୁ ପ୍ରତିପାଦନ କରିବାକୁ ପ୍ରୟାସ ପୋଷଣ କରିଅଛନ୍ତି । କେବଳ ମହାପୁରୁଷ ମୁହମ୍ମଦ ନୁହଁନ୍ତି, ମୁହମ୍ମଦଙ୍କ ପ୍ରତ୍ୟେକ ଅନୁଗାମୀ ମଧ୍ୟ ଜଗତ କଲ୍ୟାଣାର୍ଥେ ନିଜକୁ ସମର୍ପିତ କରୁ । ଆମୀନ୍ ।

(ଡକ୍ଟର ଅବଦୁଲ ଓ୍ୱସିଦ୍ ଖାଁ)
ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ନିମାପଡ଼ା କଲେଜ, ପୁରୀ

**Dr. M.Q. Khan**
M.A. D.Litt.,
Former Vice Chancellor, B.U.
Emeritus Professor of English
Revenshaw University
President, All Orissa Association
for English Studies
President, Researchers' Association
Chairman, Sayeed Seminary
Welfare and Educational Trust

Kashana-I-Mubarak
Saidani Bagicha
Cuttack-753008
Phone- 2361052
Mobile- 9437314522
e-mail : mqkctc@rediffmail.com

When we study the life of a great prophet or religious person against the background of time in which he flourished, we encounter hundreds of questions which call for various interpretations and explanations. Although Prophet Muhammad (Peace be upon him) is acclaimed as "*a great silent soul who was to kindle the world, the world's maker had ordered so*" and yet, many queries and questions still lurk in the minds of those who are still locked up in the Castle of Doubts. The complex life of the holy prophet (Peace be upon him), full of divine mirages and mundane elements, enriched with the experiences of an able statesman, indefatigable fighter and military leader, and creative thinker who opened the eyes of his people to see the marvels of heaven, still remains mysterious and strange to many people who have failed to visualize the world beyond this life through his spiritual vision.

Mr. Shakeel Ahmed, in his present book on the life and sayings (Hadith) of Prophet Muhammad (Peace be upon him), makes attempts to dispel these doubts and also answers the various questions that arise in the minds of these people. Among the various books written on the subject, this work by Shakeel Ahmed is unique in the sense that it takes all the aspects of the subject including the deeds, actions and hadith of the Holy Prophet (Peace be upon him) which do need sound explanation and correct interpretation. Besides, the author also attempts to make a comparative study of Islam vis-a-vis other great religions and also furnishes an adequate account of great

men of the world on the life and mission of the prophet (Peace of upon him). Above all, this is the first book in Odia, written in simple, vivid and lucid language with clarity, felicity and explicitly of expression. This indeed, is an additional value that the book acquires particularly for those who are confined to Odisha and have genuine desire to know Islam and its great prophet in this language.

In short, the book may be regarded as a gem in Odia language, particularly in the realm of Islamic Studies and Mr. Shakeel Ahmed deserves our sincere appreciation and good wishes in his noble mission to bring Islam to innumerable people of our State.

(Dr. M.Q. Khan)

بسم اللہ الرحمن الرحیم

مولانا سید ابو داؤد قاسمی
مدرس، مدرسہ سلطانیہ ، کٹک

مورخہ ۲۳، جولائی ، ۲۰۱۱ء

حضرت محمد ﷺ کو اللہ پاک نے پورے عالم کے لیے بھیجا ہے۔آپؐ کا پیغام ہر انسان کے لیے ہے۔ صدیوں سے آپ پر جھوٹے الزامات لگایے جا رہے ہیں اور اسلام کے خلاف غلط باتیں پھیلائی جا رہی ہیں جس کی وجہ سے بہت سارے لوگ اسلام کے متعلق غلط فہمی کا شکار ہو گیے ہیں۔

حضرت محمد ﷺ اللہ کے سچے رسول ہیں اور آپ پر لگایے گیے الزامات سراسر غلط اور بے بنیاد ہیں، اسی بات کو تاریخ کی روشنی میں مدلل پیش کرتے ہوے جناب شکیل احمد صاحب نے بڑی محنت سے اڈیا زبان میں یہ کتاب. " مہامانیہ محمد ﷺ ،، لکھی ہے جس کا میں نے مطالعہ کیا۔ یہ کتاب خاص کر ان لوگوں کے لیے ہے جو صرف اڈیا زبان ہی پڑھتے ہیں اور سمجھتے ہیں مگر اسلام کے خلاف غلط باتیں پھیلنے کی وجہ سے کسی بدگمانی میں مبتلا ہو گیے ہیں۔ ان کے ذہن کی صفائی کے لیے، ان تک پیغام حق پہنچانے کے لیے اور اسلام سے انھیں قریب کرنے کے لیے یہ کتاب بہت ہی زیادہ مفید ثابت ہوگی۔ میں اللہ پاک سے دعا کرتا ہوں کہ اللہ مصنف کی محنت کو قبول فرمایے اور ہم سب کو اخلاص کے ساتھ کام کرنے کی توفیق عطا فرمایے۔آمین۔

(سید ابو داؤد غفرلہٗ)




بِسۡمِ اللّٰہِ الرَّحۡمٰنِ الرَّحِیۡمِ

مفتی سید نقیب الامین برقی قاسمی
مہتمم مرکز العُلــــوم، ســُنگڑہ

مورخہ ۲۳ ، جولائی، ۲۰۱۱

وجود کائنات کے بعد جب انسان کی تخلیق عمل میں آئی تو اللہ رب العزت نے اسکی رہنمائی و رہبری اور رشد و ہدایت کے لئے نبوت و رسالت کا ایک مقدس سلسلہ جاری فرمایا۔ اس سلسلہ میں تخمیناً ایک لاکھ چوبیس ہزار انبیاء و رسل کو اللہ نے مبعوث فرمایا، یہاں تک کہ سید الاولین والاخرین خاتم النبین والمرسلین جناب محمد رسول اللہ ﷺ کی بعثت فرمائی۔ اللہ نے آپ کو پوری کائنات، پوری انسانیت وتمام مخلوقات کا نبی اور رسول بنا دیا اور اعلان فرما دیا "وما ارسلناک الا رحمة للعلمین" اور "انا ارسلناک الی کافة الناس بشیراً و نذیراً"۔ اب قرآن کریم کے اس واضح اعلان کے بعد آپؐ کے بارے میں یہ رائے رکھنا کہ آپؐ صرف مسلمانوں کے نبی تھے یا آپؐ صرف مسلمانوں کے لئے بھیجے گئے تھے یہ سراسر اسلام اور تعلیمات اسلام سے ناواقفیت ہے۔

یہ مسلّم ہے کہ آپؐ کی نبوت و رسالت، آپؐ کی تعلیمات حقہ، آپ کے صدق و صفا، امانت و دیانت کے صرف مسلمان ہی قائل نہیں، بلکہ غیر مسلموں کا وہ طبقہ جو آپؐ کی سیرت وتعلیمات کا بغور مطالعہ کیا ہے اور انتہائی غیر جانب دار ہو کر اسکا جائزہ لیا ہے، وہ بھی اس بات کا معترف ہے یہاں تک کہ آپؐ کے زمانۂ حیات میں بھی غیر مسلموں نے برملا یہ کہا "یا محمدؐ انا لا نکذبک بل بماجئت بہ لا نصدق" یعنی اے محمد ﷺ ہم آپکے (صداقت امانت دیانت و رسالات) کے منکر نہیں ہیں لیکن ہم آپکی وہ

تعلیمات (جو ہمارے آباؤ اجداد کی تعلیمات کے خلاف ہے) کی تصدیق نہیں کر سکتے۔ جناب موہن داس کرم چند گاندھی نے بھی آپؐ کے بارے میں یہ کہا تھا کہ اسلام کی ارتقاٗ تلوار سے نہیں بلکہ محمد رسول اللہ ﷺ کی سادگی، رواداری، جذبۂ ایثار و قربانی اپنے اصحاب و متبعین کے تئیں آپؐ کی بے خوفی اور اللہ پر غایت درجہ کا ایمان و یقین سے ہوئی ہے۔ بہر کیف آپؐ کی رسالت پوری کائنات و پوری انسانیت کے لئے مسلّم ہے۔

زیر نظر کتاب **مہامانیہ محمدؐ** میں اڈیا زبان کے مشہور مصنف و مؤلف جناب شکیل احمد صاحب نے اسی بات کو قرآن و احادیث و تواریخ کے روشنی میں مدلل کیا ہے۔ اللہ رب العزت سے دعا ہے کہ موصوف محترم کی خدمات کو شرف قبولیت بخشے اور انکی جملہ تصانیف کو مقبول خاص و عام فرمائے۔ آمین۔

سید نقیب الامین برقی قاسمی غفر

(مفتی سید نقیب الامین برقی قاسمی)

بِسْمِ اللّٰهِ الرَّحْمٰنِ الرَّحِيْمِ

*ଅସୀମ ଦୟାବାନ ଅନନ୍ତ କରୁଣାଶୀଳ ଅଲ୍ଲାହଙ୍କ ନାମରେ*

# ମୁଖବନ୍ଧ

ଆମ ଭାରତ ଏକ ମହାନ୍ ଦେଶ । ଏହା ବହୁଧର୍ମ ଓ ବହୁ ସଂସ୍କୃତିର ସମନ୍ୱୟ ଭୂମି । ବିବିଧତା ମଧ୍ୟରେ ଏକତା ଏହାର ବୈଶିଷ୍ଟ୍ୟ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ବୌଦ୍ଧ, ଜୈନ ଓ ଶିଖ—ସଭିଙ୍କୁ ସେ ନିଜ କୋଳରେ ଆଦରି ରଖିଛି । ସମସ୍ତଙ୍କୁ ନିଜ ପସନ୍ଦର ଧର୍ମ ପାଳନ କରିବାର ସ୍ୱାଧୀନତା ଦେଇଛି । ଆମ ଦେଶର ଧାର୍ମିକ ଉଦାରତା ସମଗ୍ର ବିଶ୍ୱରେ ବିରଳ । ଏଥିପାଇଁ ପ୍ରତ୍ୟେକ ଭାରତବାସୀ ଗର୍ବିତ ।

ପ୍ରାୟ ପ୍ରତ୍ୟେକ ପରିବାର ମଧ୍ୟରେ ବିଭିନ୍ନ ପ୍ରକାରର ମତଭେଦ ଦେଖାଯାଏ । ଏହା ସଦସ୍ୟମାନଙ୍କର ବ୍ୟକ୍ତିଗତ ପସନ୍ଦ ଯୋଗୁଁ ହୁଏ । କିନ୍ତୁ ପ୍ରତ୍ୟେକ ସଭ୍ୟ ପରିବାରର ପ୍ରତିଷ୍ଠା ଓ ସ୍ୱାଭିମାନକୁ ସର୍ବାଧିକ ମହତ୍ତ୍ୱ ଦେଇଥାନ୍ତି । ଭାରତ ପରି ଏକ ବିଶାଳ ପରିବାର ମଧ୍ୟରେ ଧର୍ମୀୟ ମତପାର୍ଥକ୍ୟ ରହିବା ବଡ଼ କଥା ନୁହେଁ । କିନ୍ତୁ ଏହାକୁ ଆଧାର କରି ଘୃଣା ବା ବିଦ୍ୱେଷ ସୃଷ୍ଟି କରିବା ଆଦୌ ଉଚିତ ନୁହେଁ । କୌଣସି ଧର୍ମଗ୍ରନ୍ଥ ଏଭଳି ଶିକ୍ଷା ଦେଇନାହିଁ । ପ୍ରସିଦ୍ଧ ଉର୍ଦ୍ଦୁ କବି ଇକ୍‌ବାଲ ଅତି ସୁନ୍ଦର କଥାଟିଏ କହିଛନ୍ତି—

> ମଜ୍‌ହବ ନହିଁ ଶିଖାତା ଆପସ୍‌ମେଁ ବୈର୍ ରଖନା
> ହିନ୍ଦୀ ହେଁ ହମ୍, ଓ୍ୱତନ୍ ହୈ ହିନ୍ଦୁସ୍ତାଁ ହମାରା ।

ତେଣୁ ଦେଶ ଓ ଜାତିର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ସାମ୍ପ୍ରଦାୟିକ ସଦ୍‌ଭାବର ଉନ୍ନତି ପାଇଁ ସମସ୍ତେ ଯତ୍ନବାନ ହେବା ଉଚିତ । ଆମେ ନିଜ ନିଜ ପସନ୍ଦର ଧର୍ମ ପାଳନ କରି ମଧ୍ୟ ଗୋଟିଏ ପରିବାର ଭଳି ରହିପାରିବା ଏବଂ ଦେଶର ଶାନ୍ତି ଓ ସଂହତି ବଜାୟ ରଖିବା ପାଇଁ ପ୍ରୟାସ କରିପାରିବା ।

ଅନେକ ସମୟରେ ପରସ୍ପରକୁ ଭୁଲ ବୁଝିବା ଦ୍ୱାରା ମଧ୍ୟ ମତାନ୍ତର ସୃଷ୍ଟି ହୋଇଥାଏ । ଆମେ ପରସ୍ପରର ଧର୍ମ ଓ ସଂସ୍କୃତି ସହ ପରିଚିତ ହେଲେ ଏହି ଧର୍ମୀୟ ବ୍ୟବଧାନ ଅବଶ୍ୟ କମିଯିବ ।

ଇସ୍‌ଲାମ ଗୋଟିଏ ଉଦାରବାଦୀ ଧର୍ମ ହୋଇଥିଲେ ସୁଦ୍ଧା, ଏକ ବର୍ବର ଧର୍ମ ରୂପେ ଚର୍ଚ୍ଚାରେ ରହିଆସିଛି । ଏହାର ଗୋଟିଏ ମୁଖ୍ୟ କାରଣ ହେଉଛି ପାଶ୍ଚାତ୍ୟ ଲେଖକମାନଙ୍କର ଇସ୍‌ଲାମ ବିରୋଧି ଅପପ୍ରଚାର । ଅନେକ ଶତାବ୍ଦୀ ଧରି ମହାପୁରୁଷ ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ପାଶ୍ଚାତ୍ୟ ଲେଖକମାନଙ୍କର ବିଭିନ୍ନ ପ୍ରକାରର ଅପପ୍ରଚାର ଓ ମିଥ୍ୟାରୋପ ସାଧାରଣ ଲୋକଙ୍କ ମନରେ ତାଙ୍କ ବ୍ୟକ୍ତିତ୍ୱ ଓ ଶିକ୍ଷା ସମ୍ପର୍କରେ ନାନାପ୍ରକାର ସନ୍ଦେହ ଠୁଳ କରିଦେଇଛି । କେତେକ ପାଶ୍ଚାତ୍ୟ ଲେଖକ ତାଙ୍କପ୍ରତି ଆରୋପ କରନ୍ତି ଯେ ସେ ମିଛରେ ନିଜକୁ ଜଣେ ଈଶ୍ୱରଦୂତ ବୋଲି ପରିଚୟ ଦେଇ ଇସ୍‌ଲାମ ନାମରେ ଗୋଟିଏ ନୂଆ ଧର୍ମ ପ୍ରତିଷ୍ଠା କରିଦେଲେ ଏବଂ କୁର୍‌ଆନ ଗ୍ରନ୍ଥଟିକୁ ନିଜେ ଲେଖିଦେଇ ତାକୁ ବ୍ରହ୍ମବାଣୀ ବୋଲି ଘୋଷଣା କଲେ । କେବଳ ଏତିକି ନୁହେଁ, ସେମାନେ ମହାପୁରୁଷ ମୁହମ୍ମଦଙ୍କ ଚରିତ୍ର ଓ ଶିକ୍ଷାଗୁଡ଼ିକୁ ମଧ୍ୟ ବିକୃତ କରି ବ୍ୟାଖ୍ୟା କଲେ, ଯାହା ଫଳରେ ଲୋକମାନଙ୍କ ମନରେ ଜଣେ ଦିବ୍ୟପୁରୁଷଙ୍କ ପ୍ରତି ଭୁଲ ଧାରଣାମାନ ସୃଷ୍ଟି ହୋଇଗଲା । ଏହି ଭୁଲ ଧାରଣାଗୁଡ଼ିକ ଧର୍ମୀୟ ବୁଝାମଣା କ୍ଷେତ୍ରରେ ଏକ ଅନ୍ତରାୟ । ତେଣୁ ଏଗୁଡ଼ିକ ଦୂର କରିବାକୁ ହେଲେ ମହାପୁରୁଷ ମୁହମ୍ମଦଙ୍କର ସ୍ୱରୂପ ଓ ଶିକ୍ଷା ଲୋକଲୋଚନକୁ ଆସିବା ଆବଶ୍ୟକ, କାରଣ ସେ ହିଁ ଇସ୍‌ଲାମ ଧର୍ମର ମୁଖ୍ୟ ବ୍ୟାଖ୍ୟାକାର ଏବଂ ଇସ୍‌ଲାମ ଧର୍ମତତ୍ତ୍ୱରେ ତାଙ୍କ ଚରିତ୍ର ଓ ଶିକ୍ଷାର ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏହାଦ୍ୱାରା ଅନେକ ଲୋକଙ୍କ ମନରେ ଇସ୍‌ଲାମ ସମ୍ପର୍କରେ ଥିବା ସନ୍ଦେହଗୁଡ଼ିକ ଦୂର ହୋଇପାରିବ ଏବଂ ମୁସଲମାନ୍‌ମାନେ ନିଜ ଈଶ୍ୱରଦୂତଙ୍କ ସମ୍ପର୍କରେ ବହୁ ଉପାଦେୟ ତଥ୍ୟ ପାଇପାରିବେ ।

ଓଡ଼ିଆ ଭାଷାରେ ଇସ୍‌ଲାମୀ ସାହିତ୍ୟର ଘୋର ଅଭାବ । ଏହି କାରଣରୁ ଅନେକ ବୁଦ୍ଧିଜୀବୀ ଇସ୍‌ଲାମ ବିଷୟରେ ଅନେକ କଥା ଜାଣିବା ପାଇଁ ଆଗ୍ରହୀ ଥିଲେ ସୁଦ୍ଧା, ଜାଣିପାରନ୍ତି ନାହିଁ । ମହାପୁରୁଷ ମୁହମ୍ମଦଙ୍କର ପରିଚୟ ପ୍ରଦାନ କରି ଏପର୍ଯ୍ୟନ୍ତ ଓଡ଼ିଆ ଭାଷାରେ କୌଣସି ପ୍ରାମାଣିକ ଗ୍ରନ୍ଥ ଲେଖାଯାଇଥିବା ମୋ ଦୃଷ୍ଟିକୁ ଆସିନାହି । ତେଣୁ ମୁଁ ଇତିହାସ ଆଲୋକରେ

ଏହି ମହାପୁରୁଷଙ୍କର ପରିଚୟ ପ୍ରଦାନ କରିବା ପାଇଁ ଚେଷ୍ଟା କରିଛି । ଆଲୋଚ୍ୟ ଗ୍ରନ୍ଥରେ ମୁଁ ମହାମାନ୍ୟ ମୁହମ୍ମଦଙ୍କର ବ୍ୟକ୍ତିତ୍ୱ, ଆଚାର-ବ୍ୟବହାର, ଚଳଣି ଓ ଚରିତ୍ର, ନୀତି ଓ ଆଦର୍ଶର ବର୍ଣ୍ଣନା କରିବା ସହ ଜଣେ ଈଶ୍ୱରଦୂତ ବୋଲି ତାଙ୍କର ଦାବିକୁ ମଧ୍ୟ ବିଭିନ୍ନ ଦିଗରୁ ବିଶ୍ଳେଷଣ କରିଛି । ଏହା ବ୍ୟତୀତ ପବିତ୍ର କୁର୍‌ଆନ ପ୍ରକୃତରେ ଈଶ୍ୱରବାଣୀ ବା ମହାମାନ୍ୟ ମୁହମ୍ମଦଙ୍କର ନିଜ ରଚନା, ଏ ବିଷୟରେ ମଧ୍ୟ ବିସ୍ତୃତ ଭାବେ ଆଲୋଚନା କରିଛି । ଏହାକୁ ନେଇ ସୁଧୀ ପାଠକ ବିଚାର କରିବେ ଯେ ତାଙ୍କ ପ୍ରତି କରାଯାଇଥିବା ଆରୋପର ସତ୍ୟତା କେତେ ?

ମହାମାନ୍ୟ ମୁହମ୍ମଦଙ୍କର ହିତୋପଦେଶ ସହସ୍ର ସଂଖ୍ୟାରେ ରହିଥିଲେ ହେଁ ଓଡ଼ିଆ ଭାଷାରେ ଉପଲବ୍ଧ ନୁହେଁ । ମୁଁ ତାଙ୍କର କେତେକ ମହତବାଣୀର ଓଡ଼ିଆ ରୂପାନ୍ତର କରିଛି, ଯାହା ପାଠକମାନଙ୍କୁ ଏହି ମହାପୁରୁଷଙ୍କର ନୀତି ଓ ଆଦର୍ଶ ସମ୍ପର୍କରେ ପର୍ଯ୍ୟାପ୍ତ ଧାରଣା ଦେଇପାରିବ ।

ଏହି ଗ୍ରନ୍ଥରେ ଯେଉଁଠି ବେଦ, ବାଇବଲ୍ ବା ଅନ୍ୟ ଧର୍ମଗ୍ରନ୍ଥଗୁଡ଼ିକରୁ ଉଦ୍ଧୃତି ଦିଆଯାଇଛି, ତାହା କେବଳ ଅନ୍ୟ ଧର୍ମର ଶିକ୍ଷା ସହ ଇସ୍‌ଲାମର ସମାନତା ଦର୍ଶାଇବା ପାଇଁ ଦିଆଯାଇଛି । ଅନ୍ୟଥା କାହାରିକୁ ଆକ୍ଷେପ କରିବା ବା କାହା ମନରେ କଷ୍ଟ ଦେବା ଏହାର ଉଦ୍ଦେଶ୍ୟ ନୁହେଁ । ତଥାପି ଅଜାଣତରେ ଯଦି କାହାରି ମନରେ ମୁଁ ଆଘାତ ଦେଉଥାଏ, ତେବେ ସେଥିପାଇଁ କ୍ଷମାପ୍ରାର୍ଥନା କରୁଛି ।

ଲେଖିବା ପାଇଁ ମୋତେ ଅନୁପ୍ରେରିତ କରିବା ସଙ୍ଗେ ସଙ୍ଗେ ନିଜର ବହୁମୂଲ୍ୟ ସମୟ ଦେଇ ଗ୍ରନ୍ଥର ପାଣ୍ଡୁଲିପିଟି ପଢ଼ିବାର କଷ୍ଟ ସ୍ୱୀକାର କରିଥିବାରୁ ସମ୍ମାନୀୟ ମୌଲାନା ପ୍ରଫେସର ସୟଦ ମଞ୍ଜୁର ଅହମଦ କାସମୀ, ମୌଲାନା ସୟଦ ଅବୁ ଦାଉଦ କାସ୍‌ମୀ, ମୌଲାନା ମୁବାରକ ହୁସେନ୍, ମୁଫ୍‌ତି ସୟଦ ନକିବୁଲ୍ ଅମୀନ୍ ବରକୀ ଏବଂ ମୁଫ୍‌ତି ଅବଦୁର୍ ରହମାନ୍ ନଦୱୀଙ୍କ ନିକଟରେ ମୁଁ କୃତଜ୍ଞ । ଡକ୍ଟର ଉମେଶ ପତ୍ରୀ ଏବଂ ଶ୍ରୀଯୁକ୍ତ ଅନ୍ନଦା ପ୍ରସାଦ ରାୟ ମୋତେ ଉତ୍ସାହିତ କରି ମୋର ମନୋବଳ ବୃଦ୍ଧି କରିଆସିଛନ୍ତି । ସେଥିପାଇଁ ମୁଁ ସେମାନଙ୍କୁ ମଧ୍ୟ ନିଜର କୃତଜ୍ଞତା ଜ୍ଞାପନ କରୁଛି । ଶେଷରେ, ଡକ୍ଟର ଅବଦୁଲ୍ ୱସିଦ୍ ଖାଁ, ବନ୍ଧୁ ରଫି ଅହମଦ୍ ଖାଁ, ସମିମ୍ ଖାଁ ଏବଂ ଫଜଲେ ହକ୍‌ଙ୍କୁ ସେମାନଙ୍କ ସାହାଯ୍ୟ ସହଯୋଗ ପାଇଁ ମୁଁ ଆନ୍ତରିକ ଧନ୍ୟବାଦ ଦେଉଛି ।

ସବୁପ୍ରକାର ସାବଧାନତା ସତ୍ତ୍ୱେ ଲେଖାରେ ଭୁଲ ରହିବା ଅସମ୍ଭବ ନୁହେଁ । ଯଦି କୌଣସି ତ୍ରୁଟି ପାଠକମାନଙ୍କ ଦୃଷ୍ଟିକୁ ଆସେ, ତେବେ ମୋତେ ଜଣାଇଲେ, ପରବର୍ତ୍ତୀ ସଂସ୍କରଣରେ ମୁଁ ଏହାର ସଂଶୋଧନ କରିପାରିବି । ଆଶା କରେ ଗ୍ରନ୍ଥଟି ପାଠକମାନଙ୍କୁ ଜଣେ ମହାପୁରୁଷଙ୍କ ସମ୍ପର୍କରେ ଅନେକ ପ୍ରାମାଣିକ ତଥ୍ୟ ଯୋଗାଇବା ସହିତ ଧର୍ମୀୟ ବୁଝାମଣା କ୍ଷେତ୍ରରେ ସହାୟକ ହେବ ।

**(ଶକୀଲ ଅହମଦ)**

ତା.୩୧.୦୪.୨୦୧୧

ଗ୍ରାମ/ପୋ. : ମୁକୁନ୍ଦଦାଶପୁର
ଭାୟା : ପିପିଲି
ଜିଲ୍ଲା : ଖୋର୍ଦ୍ଧା
ପିନ୍ : ୭୫୨ ୧୦୪
ଦୂରଭାଷ-9861269764

ପାଠକ-ପାଠିକାମାନଙ୍କୁ ବିନମ୍ର ଅନୁରୋଧ, ସେମାନେ ମହାନ୍ ଗ୍ରନ୍ଥମାନଙ୍କର ପବିତ୍ରତା ରକ୍ଷା କରିବେ ।

# ସୂଚୀପତ୍ର

## ପ୍ରଥମ ଅଧ୍ୟାୟ

★ ମହାମାନ୍ୟ ମୁହମ୍ମଦଙ୍କର ସଂକ୍ଷିପ୍ତ ପରିଚୟ .... ୧
- ପଙ୍କ ମଧ୍ୟରେ ପଦ୍ମ .... ୨
- ଚରିତ୍ର .... ୩
- କୃତି .... ୫

★ ଇତିହାସର ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତି :
ବିଭିନ୍ନ ମତ ଓ ମନ୍ତବ୍ୟ .... ୭
- ଥୋମାସ୍ କାର୍ଲାଇଲ୍ .... ୮
- ଆର୍ ବସ୍‌ୱର୍ଥ ସ୍ମିଥ .... ୧୧
- ଆଲଫୋନ୍ସ ଡି. ଲାମରଟାଇନ .... ୧୨
- ଜନ୍ ଉଇଲିୟମ ଡ୍ରାପର .... ୧୫
- ମାଇକେଲ ହାର୍ଟ .... ୧୫
- ଟାଇମ ମାଗାଜିନ୍‌ରେ ବିଭିନ୍ନ ବିଦ୍ୱାନ୍ .... ୧୭
- ଏଡ଼ୱାର୍ଡ଼ ଗୀବନ .... ୨୦
- ମେଜର ଆର୍ଥର ଲିଓନାର୍ଡ଼ .... ୨୧
- ଜର୍ଜ ବର୍ଣାଡ଼ ଶ' .... ୨୩
- ଜନ୍ ଡାଭେନପୋର୍ଟ .... ୨୪
- ଗଡ୍‌ଫ୍ରେ ହିଗିନ୍‌ସ .... ୨୬
- ମାନବେନ୍ଦ୍ରନାଥ ରାୟ .... ୨୭
- ମାର୍କସ୍ ଡ଼ଡ୍‌ସ .... ୨୮
- ସାମୁଏଲ ଜି. ଗୁଡ଼ରିଚ .... ୨୯
- ଷ୍ଟେନ୍‌ଲି ଲେନ୍‌ପୁଲ .... ୩୦
- ଜି.ଏମ. ଡ୍ରେକଟ୍ .... ୩୧
- ଡ଼ି.ଏସ୍. ମାର୍ଗୋଲିୟଥ୍ .... ୩୨
- ଏଚ୍. ଆର୍. ଗୀବ୍ .... ୩୩
- ଉଇଲିୟମ ମଣ୍ଟଗୋମେରୀ ୱାଟ୍ .... ୩୩
- ୱାଶିଂଟନ ଇରଭିଙ୍ଗସ୍ .... ୩୪

- ସାର୍ ଉଇଲିୟମ ମୁର୍ .... ୩୫
- ମେରେଡ଼ିଥ୍ ଟନସେଣ୍ଡ .... ୩୫
- ପ୍ରବଞ୍ଚନାର ଆରୋପ .... ୩୬


*ଦ୍ୱିତୀୟ ଅଧ୍ୟାୟ*


★ ଈଶ୍ୱରଙ୍କ ପ୍ରତିନିଧିତ୍ୱ - ଏକ ଦିବ୍ୟ ପରମ୍ପରା .... ୩୯
- ମାର୍ଗଦର୍ଶନ କାହିଁକି ? .... ୪୩
- ବୁଦ୍ଧି ଯଥେଷ୍ଟ ନୁହେଁ .... ୪୬
- ନିୟମ ନିର୍ଦ୍ଧାରଣ ସ୍ରଷ୍ଟାଙ୍କର ଅଧିକାର .... ୪୭

★ ମାର୍ଗଦର୍ଶନ ପଦ୍ଧତି .... ୫୧
- ଦୈବବାଣୀ .... ୫୩
- ମାର୍ଗଦର୍ଶନରେ ଈଶ୍ୱରଦୂତଙ୍କର ଭୂମିକା .... ୫୫
- ଈଶ୍ୱରଦୂତମାନଙ୍କର ବିଶେଷତ୍ୱ .... ୬୦
- ମହାମାନ୍ୟ ଈଶ୍ୱରଦୂତଗଣ ମାନବ .... ୬୪
- ଈଶ୍ୱରଦୂତମାନଙ୍କର ଶିକ୍ଷା .... ୭୪
- ବହୁ ଧର୍ମ ସୃଷ୍ଟିର କାରଣ .... ୭୯


*ତୃତୀୟ ଅଧ୍ୟାୟ*


★ ମହାମାନ୍ୟ ମୁହମ୍ମଦ କ'ଣ ଜଣେ ଈଶ୍ୱରଦୂତ ? .... ୮୧
- ମିଥ୍ୟାବାଦୀ ? .... ୮୫
- ଉଚ୍ଚାଭିଳାଷୀ ? .... ୮୮
- ଲୋଭୀ ? .... ୯୨
- ନିଖୁଣ ଚରିତ୍ର .... ୯୪
- ସମ୍ରାଟ ହରକ୍ୟୁଲେସ୍ ଓ ମହାମାନ୍ୟ ମୁହମ୍ମଦ .... ୯୯


*ଚତୁର୍ଥ ଅଧ୍ୟାୟ*


★ ମହାମାନ୍ୟ ମୁହମ୍ମଦଙ୍କର ଚମତ୍କାରିତା .... ୧୦୫
- କୁର୍‌ଆନ କ'ଣ ? .... ୧୦୬
- କୁର୍‌ଆନର ଚମତ୍କାରିତା .... ୧୦୬
- ଅନୁପମ ଶୈଳୀ .... ୧୦୭
- ପାରିପାର୍ଶ୍ୱିକ ପ୍ରଭାବ ମୁକ୍ତ .... ୧୦୯

- ତ୍ରୁଟିବିହୀନ ରଚନା .... ୧୧୦
- ଅସମ୍ଭବ ପୁନରାବୃତ୍ତି .... ୧୧୧
- କୁର୍‌ଆନ ପାଠ ଶାନ୍ତିପ୍ରଦ .... ୧୧୧
- ପରିପୂର୍ଣ୍ଣ ବିଧାନ .... ୧୧୨
- ଶବ୍ଦଗୁଡ଼ିକର ଚମତ୍କାର ପୁନରାବୃତ୍ତି .... ୧୧୨
- ଅଭୂତପୂର୍ବ ସୁରକ୍ଷା .... ୧୧୩
- ରହସ୍ୟମୟ ଶବ୍ଦ .... ୧୨୦
- କୁର୍‌ଆନର ଚ୍ୟାଲେଞ୍ଜ୍ .... ୧୨୦
- ମହାମାନ୍ୟ ମୁହମ୍ମଦ ନିରକ୍ଷର .... ୧୨୨
- କୁର୍‌ଆନ ଓ ବାଇବଲ୍ ମଧ୍ୟରେ ସାମଞ୍ଜସ୍ୟର କାରଣ .... ୧୩୦
- କୁରଆନର ଭବିଷ୍ୟବାଣୀ ସତ ହେଲା .... ୧୩୧
- ଈଶ୍ୱରଦୂତଙ୍କ ପ୍ରତି ଆକଟପୂର୍ଣ୍ଣ ଦୈବବାଣୀ .... ୧୩୩
- ଇଚ୍ଛାବିରୋଧୀ ଦୈବବାଣୀ .... ୧୩୪


***ପଞ୍ଚମ ଅଧ୍ୟାୟ***


★ କୁର୍‌ଆନର ବୈଜ୍ଞାନିକ ଚମତ୍କାରିତା .... ୧୩୭

- ବ୍ରହ୍ମାଣ୍ଡର ଉତ୍ପତ୍ତି .... ୧୩୯
- ପୃଥିବୀ ଗୋଲାକାର .... ୧୪୧
- ମହାକାଶର କକ୍ଷପଥ .... ୧୪୩
- ଗ୍ରହଗୁଡ଼ିକ କକ୍ଷପଥରେ ବୁଲୁଛନ୍ତି .... ୧୪୪
- ସପ୍ତ ଆକାଶମଣ୍ଡଳ .... ୧୪୫
- ଆକାଶ ଏକ ସୁରକ୍ଷାପ୍ରଦାନକାରୀ ଛାତ .... ୧୪୮
- ପାହାଡ଼ଗୁଡ଼ିକ ଭୂପୃଷ୍ଠ ଉପରେ କୀଲା .... ୧୫୦
- ସମୁଦ୍ର ଗର୍ଭରେ ଅଦୃଶ୍ୟ ଅନ୍ତରାୟ .... ୧୫୨
- ଗଭୀର ସମୁଦ୍ର ଅନ୍ଧକାରମୟ .... ୧୫୩
- ଜୀବ ଓ ଜଡ଼ଜଗତର ଯୁଗଳ ସୃଷ୍ଟି .... ୧୫୫
- ସନ୍ତାନର ଲିଙ୍ଗ ପାଇଁ ପୁରୁଷ ଦାୟୀ .... ୧୫୬
- ଟିପଚିହ୍ନ ପରିଚୟପତ୍ର .... ୧୫୭
- କୁର୍‌ଆନ ସମ୍ପର୍କରେ ବୈଜ୍ଞାନିକମାନଙ୍କ ମତାମତ .... ୧୫୮
- ମରିସ୍ ବୁକାଏଙ୍କର କୁର୍‌ଆନ ଉପରେ ଗବେଷଣା .... ୧୬୩

## ଷଷ୍ଠ ଅଧ୍ୟାୟ


★ ମହାମାନ୍ୟ ମୁହମ୍ମଦଙ୍କର ଭବିଷ୍ୟବାଣୀ .... ୧୬୬

- ନିଜର ଓ ନିଜ ଝିଅଙ୍କ ମୃତ୍ୟୁ .... ୧୬୬
- ଯୁଦ୍ଧରେ ନିହତ ହେବାକୁ ଥିବା ଶତ୍ରୁ .... ୧୬୭
- ଇଥିଓପିଆର ରାଜାଙ୍କ ମୃତ୍ୟୁ .... ୧୬୭
- ଇରାନ୍ ଓ ରୋମ ବିଜୟ .... ୧୬୮
- ଉଓ୍ୱେଶ କରନୀ .... ୧୬୮
- ଶହୀଦ ହଜରତ ଉମର ଓ ଉସ୍‌ମାନ .... ୧୬୯
- ନାତି ହଜରତ ହସନ୍ .... ୧୬୯
- ଖିଲାଫତ କାଳ ଅବଧି .... ୧୬୯
- ମୋତା ଯୁଦ୍ଧର ଧାରା ବିବରଣୀ .... ୧୭୦


## ସପ୍ତମ ଅଧ୍ୟାୟ


★ ମହାମାନ୍ୟ ମୁହମ୍ମଦ ପ୍ରକୃତରେ ଜଣେ ଈଶ୍ୱରଦୂତ .... ୧୭୧

- ପାଶ୍ଚାତ୍ୟ ଆରୋପଗୁଡ଼ିକ ମିଥ୍ୟା .... ୧୭୨
- ମାନବଜଗତର ମାର୍ଗଦର୍ଶକ .... ୧୮୫
- ଈଶ୍ୱରଦୂତଙ୍କ ଶିକ୍ଷାର ସଂରକ୍ଷଣ .... ୧୮୭
- ଅନ୍ତିମ ଈଶ୍ୱରଦୂତ .... ୧୯୧


## ଅଷ୍ଟମ ଅଧ୍ୟାୟ


★ ବିଶ୍ୱର ମହାନ ଗ୍ରନ୍ଥମାନଙ୍କରେ ମହାମାନ୍ୟ ମୁହମ୍ମଦ .... ୧୯୭

- ପାର୍ସି ଧର୍ମଗ୍ରନ୍ଥ .... ୧୯୭
- ବୌଦ୍ଧ ଧର୍ମଗ୍ରନ୍ଥ .... ୨୦୦
- ହିନ୍ଦୁ ଧର୍ମଗ୍ରନ୍ଥ ..... ୨୦୩
- ବାଇବଲ୍ .... ୨୧୮


## ନବମ ଅଧ୍ୟାୟ


★ ମହାମାନ୍ୟ ମୁହମ୍ମଦଙ୍କର ମହତବାଣୀ .... ୨୨୪

ନିର୍ବାଚିତ ପୁସ୍ତକ ..... ୨୭୩




## ପ୍ରଥମ ଅଧ୍ୟାୟ

# ମହାମାନ୍ୟ ମୁହମ୍ମଦଙ୍କର ସଂକ୍ଷିପ୍ତ ପରିଚୟ

ବିଶ୍ୱରେ ଅନେକ ମହାମାନବ ଜନ୍ମଗ୍ରହଣ କରିଛନ୍ତି ଯେଉଁମାନଙ୍କର ଅସାଧାରଣ ବ୍ୟକ୍ତିତ୍ୱ ସମାଜକୁ ଗଭୀର ଭାବେ ପ୍ରଭାବିତ କରିଛି । ସମାଜ ସେମାନଙ୍କୁ ମହାପୁରୁଷର ମାନ୍ୟତା ଦେଇଛି । ଇତିହାସ ସେମାନଙ୍କର ଯଶଗାନ କରିଛି ଏବଂ ଅଗଣିତ ନରନାରୀ ସେମାନଙ୍କୁ ନିଜ ଜୀବନର ଆଦର୍ଶ ରୂପେ ଗ୍ରହଣ କରିଛନ୍ତି । ସେହି ମହାପୁରୁଷମାନଙ୍କ ମଧ୍ୟରେ ମହାମାନ୍ୟ ମୁହମ୍ମଦ ଜଣେ ଅନନ୍ୟ ପ୍ରତିଭା ଯାହାଙ୍କ ଆଦର୍ଶରେ ବିଶ୍ୱର ପ୍ରାୟ ୧୫୭ କୋଟି ନରନାରୀ ଅନୁପ୍ରାଣୀତ । ସେମାନେ ତାଙ୍କୁ କେବଳ ଜଣେ ମହାପୁରୁଷ ନୁହେଁ, ଈଶ୍ୱରଙ୍କର ପ୍ରତିନିଧି ବୋଲି ବିଶ୍ୱାସ କରନ୍ତି ଏବଂ ନିଜର ଦୈନନ୍ଦିନ ଜୀବନର ସମସ୍ତ ଆଚରଣରେ ତାଙ୍କୁ ଅନୁକରଣ କରନ୍ତି । ବିଶ୍ୱର ଶତକଡ଼ା ୨୩ଭାଗ ଲୋକେ ମହାମାନ୍ୟ ମୁହମ୍ମଦଙ୍କର ଉପଦେଶକୁ ଈଶ୍ୱରଙ୍କ ଆଜ୍ଞା ମନେ କରନ୍ତି ।

ମହାମାନ୍ୟ ଯୀଶୁଙ୍କ ଆବିର୍ଭାବର ୫୭୦ବର୍ଷ ପରେ ଆରବର 'କୁରେଶ' ନାମକ ଏକ ସମ୍ଭ୍ରାନ୍ତ ବଂଶରେ ୫୭୦ ମସିହା ଏପ୍ରିଲ ୨୦ ତାରିଖ ସୋମବାର ଦିନ ମହାମାନ୍ୟ ମୁହମ୍ମଦଙ୍କର ଜନ୍ମ । ପୂରାନାମ 'ମୁହମ୍ମଦ ବିନ୍ ଅବ୍ଦୁଲ୍ଲାହ' । ବାପାଙ୍କ ନାମ 'ଅବ୍ଦୁଲ୍ଲାହ' ଏବଂ ମାଆଙ୍କ ନାମ 'ଆମନା' । ମାତୃଗର୍ଭରେ ଥିବା ଅବସ୍ଥାରେ ସେ ନିଜ ପିତାଙ୍କୁ ହରାଇଲେ ଏବଂ ମାତ୍ର ୬ବର୍ଷ ବୟସରେ ମାଆଙ୍କୁ ହରାଇ ଅନାଥ ହୋଇଗଲେ । ଜେଜେ ଅବ୍ଦୁଲ ମୁତ୍ତଲିବ ଥିଲେ ସେତେବେଳେ ମକ୍କାର ସର୍ଦ୍ଦାର ଏବଂ କାବା ପୀଠର ତତ୍ତ୍ୱାବଧାରକ । ସେ ବାପା-ମାଆ ଛେଉଣ୍ଡ ମୁହମ୍ମଦଙ୍କର ଲାଳନ ପାଳନ ଭାର ଗ୍ରହଣ କଲେ; କିନ୍ତୁ ମାତ୍ର ଦୁଇବର୍ଷ ପରେ ତାଙ୍କର ମଧ୍ୟ ଦେହାନ୍ତ ହୋଇଗଲା । ଶେଷରେ କକା ଅବୁ ତାଲିବ୍ ମୁହମ୍ମଦଙ୍କ ପ୍ରତିପୋଷଣର ଦାୟୀତ୍ୱ ବହନ କଲେ । ସେ ମୁହମ୍ମଦଙ୍କୁ ବହୁତ ସ୍ନେହ କରୁଥିଲେ । କକାଙ୍କ ସ୍ନେହର ପରଶ ପାଇ ଅନାଥ ମୁହମ୍ମଦ ଧୀରେ ଧୀରେ ବଡ଼ ହେଲେ । ଚାଳିଶ ବର୍ଷ ବୟସ ପର୍ଯ୍ୟନ୍ତ ସେ କକା ଅବୁ ତାଲିବ୍ଙ୍କ ତତ୍ତ୍ୱାବଧାନରେ ରହିଥିଲେ ।

ଚାଳିଶ ବର୍ଷ ବୟସରେ ତାଙ୍କୁ ଦୈବବାଣୀ ହେଲା ଏବଂ ସେ ଈଶ୍ୱରଦୂତ ନିଯୁକ୍ତ ହେଲେ । ପରବର୍ତ୍ତୀ ୨୩ବର୍ଷ ଈଶ୍ୱରଦୂତ ରୂପେ ଦିବ୍ୟଧର୍ମର ପୁନଃସ୍ଥାପନା ପାଇଁ, ସମାଜକୁ ଅନ୍ୟାୟ ଓ କୁସଂସ୍କାରରୁ ମୁକ୍ତ କରିବା ପାଇଁ ସେ କଠୋର ସଂଗ୍ରାମ କଲେ ଓ ଗୋଟିଏ ଆଦର୍ଶ ସମାଜ ଗଢ଼ିବାକୁ ସମର୍ଥ ହେଲେ । ଖ୍ରୀ.ଅ. ୬୩୨ ଜୁନ୍ ୮ ତାରିଖରେ ସେ ମଦିନାରେ ଇହଧାମ ତ୍ୟାଗ କଲେ ।

## ପଙ୍କ ମଧ୍ୟରେ ପଦ୍ମ

ଯେଉଁ ସମାଜରେ ମହାମାନ୍ୟ ମୁହମ୍ମଦ ଜନ୍ମ ଗ୍ରହଣ କଲେ ଏବଂ ଯେଉଁଠାରେ ସେ ଶିଶୁରୁ ଯୁବକ ହେଲେ, ସେ ସମାଜ ନାନା ପ୍ରକାର କୁସଂସ୍କାର ଓ ଅନ୍ଧବିଶ୍ୱାସରେ ପୂର୍ଣ୍ଣ ଥିଲା । ହତ୍ୟା, ଲୁଣ୍ଠନ, ବ୍ୟଭିଚାର— ସବୁପ୍ରକାର ଅନ୍ୟାୟ ଅତ୍ୟାଚାର ଚାଲିଥିଲା । ପ୍ରତ୍ୟେକ ସମ୍ପ୍ରଦାୟର ନିଜସ୍ୱ ଉପାସ୍ୟ ଥିଲେ ଏବଂ ବିଗ୍ରହ ସମ୍ମୁଖରେ ନରବଳି ଦିଆଯାଉଥିଲା । ଅନ୍ଧବିଶ୍ୱାସ ଏଭଳି ଥିଲା ଯେ ସମାଧି ନିକଟରେ ଓଟକୁ ବାନ୍ଧି ଭୋକ ଉପାସରେ ତାକୁ ମାରିଦେବା ପୁଣ୍ୟ କାର୍ଯ୍ୟ ମନେ କରୁଥିଲେ । ଦୁର୍ଭିକ୍ଷବେଳେ ଗାଈ ଲାଞ୍ଜରେ ଘାସ ବାନ୍ଧି ନିଆଁ ଲଗାଇ ଦେଉଥିଲେ ଯେ, ଏହାଦ୍ୱାରା ବର୍ଷା ହେବ । ଆରବ ସମାଜ ଘୋର ନୈତିକ ଅଧଃପତନ ମଧ୍ୟରେ ଗତି କରୁଥିଲା । ମଦ ଏବଂ ଜୁଆ ଏକ ସାଧାରଣ ଘଟଣା ଥିଲା । ସୁଧ ବ୍ୟବସାୟ ଚରମ ସୀମା ସ୍ପର୍ଶ କରିଥିଲା । ଚୋରି ଡକାୟତି ହେଉଥିଲା । ବ୍ୟବସାୟୀ ଓ ପଥିକମାନଙ୍କୁ ବାଟରେ ଲୁଟି ନିଆଯାଉଥିଲା । ସମାଜରେ ଦାସତ୍ୱ ପ୍ରଥାର ପ୍ରଚଳନ ଥିଲା ଏବଂ କ୍ରୀତଦାସମାନଙ୍କ ପ୍ରତି ଅତି ଅମାନୁଷିକ ବ୍ୟବହାର କରାଯାଉଥିଲା ।

ସମାଜରେ ମହିଳାମାନଙ୍କର କୌଣସି ସ୍ଥାନ ନଥିଲା । ସେମାନଙ୍କୁ ଅକଥନୀୟ ନିର୍ଯ୍ୟାତନା ଦିଆଯାଉଥିଲା । ଯିଏ ଯେତେ ଚାହୁଁଥିଲା ଉପପତ୍ନୀ ରଖୁଥିଲା ଏବଂ ମନଇଚ୍ଛା ସେମାନଙ୍କୁ ତ୍ୟାଗ କରି ଦେଉଥିଲା । ଛାଡ଼ପତ୍ରର କୌଣସି ନୀତିନିୟମ ନଥିଲା । ଲୋକେ ନିଜ ଦାସୀମାନଙ୍କ ଦ୍ୱାରା ଦେହ ବ୍ୟବସାୟ କରାଇ ଅର୍ଥ ଅର୍ଜନ କରୁଥିଲେ । ବ୍ୟଭିଚାର ଏପରି ଥିଲା ଯେ ଜଣେ ମହିଳା ସହିତ ଏକାଧିକ ପୁରୁଷ ସମ୍ପର୍କ ରଖୁଥିଲେ ଏବଂ ସନ୍ତାନ ଜନ୍ମ ହେଲେ ସେ ମହିଳା ହିଁ କହୁଥିଲା ତା' ଶିଶୁର ବାପା କିଏ ।

ବର୍ବରତା କଥା ଶୁଣିଲେ ହୃଦୟ ଥରିଉଠିବ । ବାପା ନିଜ କୁନି ଝିଅକୁ ଜିଅନ୍ତା ମାଟିତଳେ ପୋତି ଦେଉଥିଲା, କେବଳ ଏଇଥିପାଇଁ ଯେ, ସେ କାହାରି

ଶ୍ୱଶୁର ହେବା ଏକ ଅପମାନ ବୋଲି ମନେ କରୁଥିଲା । ଯୁଦ୍ଧରେ ବନ୍ଦୀ ହୋଇ ଆସିଥିବା ଶିଶୁ ଓ ମହିଳାମାନଙ୍କୁ ନୃଶଂସ ଭାବରେ ହତ୍ୟା କରାଯାଉଥିଲା । ଗର୍ଭବତୀ ମହିଳାଙ୍କର ବଳପୂର୍ବକ ଗର୍ଭପାତ କରାଇ ଦିଆଯାଉଥିଲା ଏବଂ ଛୋଟ ପିଲାମାନଙ୍କୁ ତେଣ୍ଟା ମୁନରେ ଝୁଲାଇ ଦିଆଯାଉଥିଲା ।

ଏଭଳି ନିର୍ଲଜ ଥିଲେ ଯେ ନାରୀ ଓ ପୁରୁଷ ନିବସ୍ତ୍ର ହୋଇ ପବିତ୍ର କାବା ପୀଠ ପରିକ୍ରମା କରୁଥିଲେ । ପିତାର ମୃତ୍ୟୁ ପରେ ପୁତ୍ର ପିତାଙ୍କ ପତ୍ନୀର ଉତ୍ତରାଧିକାରୀ ରୂପେ ତାକୁ ବିବାହ କରୁଥିଲା ।

ଆରବରେ ଥିଲା ଘୋର ଅରାଜକତା । ‘‘ଜୋର ଯା’ର ମୁଲକ ତାର’’ ନୀତି ପ୍ରଚଳିତ ଥିଲା । ଦେଶରେ ଶାସନ ବୋଲି କିଛି ନଥିଲା ବା କୌଣସି ଶାସକ ନଥିଲେ । ପ୍ରତ୍ୟେକ ସମ୍ପ୍ରଦାୟର ମୁଖ୍ୟ ଭାବେ ଜଣେ ଜଣେ ସର୍ଦ୍ଦାର ଥିଲେ । ଅବଶ୍ୟ ଆରବୀୟମାନେ ଥିଲେ ବୀର ଓ ସ୍ୱାଭିମାନୀ । ନିଜର ବା ନିଜ ସମ୍ପ୍ରଦାୟର ମର୍ଯ୍ୟାଦା ରକ୍ଷା କରିବା ପାଇଁ ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିଦେଉଥିଲେ, କିନ୍ତୁ ଜାତୀୟତା କ’ଣ ସେମାନେ ଜାଣି ନଥିଲେ । ଗୋଷ୍ଠୀ ବା ସମ୍ପ୍ରଦାୟ ହିଁ ଥିଲା ସେମାନଙ୍କ ପାଇଁ ସବୁକିଛି । ସାମାନ୍ୟ କଥାକୁ କେନ୍ଦ୍ରକରି ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ଶହ ଶହ ବର୍ଷ ଧରି ଯୁଦ୍ଧ ଓ ରକ୍ତପାତ ଲାଗି ରହୁଥିଲା । ଶତ୍ରୁକୁ ହତ୍ୟା କରି ତା’ ନାକ ଓ କାନ କାଟି ନିଆଯାଉଥିଲା । ମାନବିକତା ବୋଲି କିଛି ନଥିଲା । ଶିକ୍ଷା ପ୍ରାୟ ନଥିଲା । ଲେଖାପଢ଼ା ଜାଣିଥିବା ଲୋକେ ନଗଣ୍ୟ ଥିଲେ । ମୋଟାମୋଟି ଭାବେ ଏହାହିଁ ଥିଲା ଆରବବାସୀଙ୍କର ସଭ୍ୟତା ।

## ଚରିତ୍ର

ଏହିଭଳି ଏକ ବର୍ବର ଓ ବିଶୃଙ୍ଖଳ ସମାଜରେ ଭିନ୍ନ ଏକ ଚରିତ୍ର ଧାରଣ କରି ଜନ୍ମଗ୍ରହଣ କରିଥିଲେ ମହାମାନ୍ୟ ମୁହମ୍ମଦ ସତେଯେପରି ପଙ୍କ ମଧ୍ୟରେ ପଦ୍ମ । ସମାଜ ମଧ୍ୟରେ ବସବାସ କରୁଥିଲେ ସୁଦ୍ଧା ଏହାର କୌଣସି ଅନ୍ୟାୟ ଅନୀତି ତାଙ୍କୁ ସ୍ପର୍ଶ କରିପାରି ନଥିଲା । ଇତିହାସ କହେ, ସେ ଥିଲେ ଜଣେ ସରଳ ଓ ସତ୍ୟନିଷ୍ଠ ବ୍ୟକ୍ତି । ସମ୍ପୂର୍ଣ୍ଣ ନିରକ୍ଷର ଥିଲେ । ବ୍ୟବହାର ଅତି ଭଦ୍ର ଓ ବିନମ୍ର । କାହାରିକୁ କଟୁକଥା କହୁ ନଥିଲେ । କୌଣସି ଅପଶବ୍ଦ ବ୍ୟବହାର କରୁ ନଥିଲେ କିମ୍ବା ଅନାବଶ୍ୟକୀୟ କଥା ମଧ୍ୟ କହୁ ନଥିଲେ । ଧିରେ କିନ୍ତୁ ସ୍ପଷ୍ଟ ଶବ୍ଦରେ କହିବା ଏବଂ ସ୍ୱଳ୍ପ ଶବ୍ଦରେ

ଅଧିକ ଭାବପ୍ରକାଶ ତାଙ୍କର କଳା ଥିଲା । କଥାବାର୍ତ୍ତା ବେଳେ ମୁହଁରେ ମୃଦୁ ହସ ଛାଇ ରହୁଥିଲା । ଜୀବନରେ ଥରେ ହେଲେ ସେ ମିଛ କହିନାହାନ୍ତି । ଥଟ୍ଟା ପରିହାସ ବେଳେ ମଧ୍ୟ ମିଛ କହୁ ନଥିଲେ । ସ୍ମିତହାସ୍ୟ ବ୍ୟତୀତ ଉଚ୍ଚସ୍ୱରରେ ହସିବାର ତାଙ୍କୁ କେହି କେବେ ଦେଖିନାହିଁ । ସେ କୌଣସି ବିଗ୍ରହ ପୂଜା କରୁ ନଥିଲେ । ମଦ ଖାଉ ନଥିଲେ ବା ଜୁଆ ଖେଳୁ ନଥିଲେ । ନାଚଗୀତର ଆସରଠାରୁ ଦୂରେଇ ରହୁଥିଲେ । ଅବସର ସମୟରେ ସାଙ୍ଗସାଥିଙ୍କ ମେଳରେ ବା ମଉଜ ମଜଲିସ୍‌ରେ ସମୟ ନଷ୍ଟ ନକରି 'ହିରା' ପାହାଡ଼ର ଏକ ଗୁମ୍ଫା ଭିତରକୁ ଚାଲି ଯାଉଥିଲେ ଏବଂ ସେଠାରେ ଏକାନ୍ତରେ ଧ୍ୟାନମଗ୍ନ ରହି ସ୍ରଷ୍ଟାଙ୍କର ଉପାସନା କରୁଥିଲେ ।

ମହାମାନ୍ୟ ମୁହମ୍ମଦଙ୍କ ଚରିତ୍ର ଏତେ ଉଚ୍ଚକୋଟୀର ଥିଲା ଯେ, ସମାଜ ତାଙ୍କୁ ''ଅଲ୍-ଅମୀନ'' ଅର୍ଥାତ୍ 'ବିଶ୍ୱସନୀୟ' ଉପାଧି ଦେଇଥିଲା । ତାଙ୍କର ହୃଦୟ ଥିଲା ଅତ୍ୟନ୍ତ କୋମଳ । ଦୁଃଖୀରଙ୍କିଙ୍କ ଦୁଃଖ ସହିପାରୁ ନଥିଲେ । କେହି କିଛି ସାହାଯ୍ୟ ମାଗିଲେ ଧାରକରଜ କରି ସାହାଯ୍ୟ କରିଦେଉଥିଲେ । ଉଦାରତା ଏପରି ଯେ କେହି ତାଙ୍କ ପ୍ରତି ଦୁର୍ବ୍ୟବହାର କଲେ ସହି ନେଉଥିଲେ ଏବଂ କ୍ଷମା କରି ଦେଉଥିଲେ । ତାଙ୍କ ପ୍ରତି ଅନେକ ଅତ୍ୟାଚାର ହେଲା; କିନ୍ତୁ ସେ କୌଣସି ଆକ୍ରୋଶ ରଖିନାହାନ୍ତି । ଦଣ୍ଡିତ କରିବାର ଶକ୍ତି ଥାଇ ମଧ୍ୟ କ୍ଷମା କରିଛନ୍ତି । ସେବକମାନେ ଭୁଲ୍ କଲେ ସେମାନଙ୍କ ପ୍ରତି ବିରକ୍ତି ପ୍ରକାଶ କରିବାର ମଧ୍ୟ କେହି କେବେ ଦେଖିନାହିଁ । ଅତ୍ୟନ୍ତ ଉଦାର ଓ ସଂଯମୀ ପୁରୁଷ । ଅନ୍ୟକୁ ପ୍ରଥମେ ଶୁଭେଚ୍ଛା ଜଣାଇବା, ବନ୍ଧୁ ପ୍ରିୟଜନଙ୍କୁ ଉପହାର ଦେବା ଏବଂ ପୀଡ଼ିତଙ୍କୁ ସାକ୍ଷାତ୍ କରିବା, ରୋଗୀ ମୁଣ୍ଡ ପାଖରେ ବସି ତାକୁ ଆଉଁସିବା, ସାନ୍ତ୍ୱନା ଦେବା ଏବଂ ତା'ର ଆରୋଗ୍ୟ କାମନା କରି ପ୍ରାର୍ଥନା କରିବା ଆଦି ମହାମାନ୍ୟ ମୁହମ୍ମଦଙ୍କ ଦୈନନ୍ଦିନ ଜୀବନର ପ୍ରାୟ ନିୟମିତ ଘଟଣା ଥିଲା ।

ନିଜ ପରିବାର ପ୍ରତି ସେ ଥିଲେ ଅତ୍ୟନ୍ତ ଉଦାର । ଘରକାର୍ଯ୍ୟରେ ସାହାଯ୍ୟ କରୁଥିଲେ । ନିଜ କାମ ନିଜେ କରୁଥିଲେ । ଜୋତା ଫାଟିଗଲେ ବା ପୋଷାକ ଚିରିଗଲେ ନିଜ ହାତରେ ସିଲେଇ କରୁଥିଲେ । ନିଜେ କ୍ଷୀର ଦୁହୁଁଥିଲେ ଏବଂ ଘରେ ଝାଡୁ ମଧ୍ୟ ଦେଉଥିଲେ ।

ତାଙ୍କର ଏପରି ସୁନ୍ଦର ଚରିତ୍ର ଆରବର ଜଣେ ଧନଶାଳୀ ଓ ଆଭିଜାତ୍ୟ ସମ୍ପନ୍ନ ମହିଳା ହଜରତ ଖଦିଜାଙ୍କୁ ଆକୃଷ୍ଟ କରିଥିଲା । ଏହି ବିଧବା

ଭଦ୍ରମହିଳାଜଣଙ୍କର ବୟସ ଥିଲା ସେତେବେଳେ ଚାଳିଶି ବର୍ଷ । ମହାମାନ୍ୟ ମୁହମ୍ମଦଙ୍କ ବ୍ୟକ୍ତିତ୍ୱ ଦ୍ୱାରା ସେ ଏତେ ପ୍ରଭାବିତ ହୋଇଗଲେ ଯେ ପ୍ରଥମେ ତାଙ୍କୁ ନିଜ ବ୍ୟବସାୟର ଦାୟିତ୍ୱ ଦେଲେ । କ୍ରମେ ଯୁବକ ମୁହମ୍ମଦଙ୍କର ସାଧୁତା ଓ ସଦାଚାର ତାଙ୍କୁ ଅତିଶୟ ମୁଗ୍ଧ କଲା ଏବଂ ସେ ତାଙ୍କୁ ବିବାହ ପ୍ରସ୍ତାବ ପଠାଇଲେ । ମାତ୍ର ୨୫ବର୍ଷ ବୟସ୍କ ଯୁବକ ମହାମାନ୍ୟ ମୁହମ୍ମଦ ଏହି ପ୍ରସ୍ତାବ ଗ୍ରହଣ କରି ତାଙ୍କୁ ବିବାହ କଲେ ।

ଜଣେ ସମ୍ଭ୍ରାନ୍ତବଂଶୀୟ ଧନଶାଳୀ ମହିଳାଙ୍କ ସ୍ୱାମୀ ହୋଇ ସୁଦ୍ଧା ମହାମାନ୍ୟ ମୁହମ୍ମଦ କୌଣସି ପ୍ରକାର ବିଳାସ ବ୍ୟସନରେ ଲିପ୍ତ ନହୋଇ ସରଳ ଓ ନିରାଡ଼ମ୍ବର ଜୀବନ ଅତିବାହିତ କରୁଥିଲେ । ଧର୍ମଦୂତ ପଦ ପ୍ରାପ୍ତି ପରେ ସେ ନିଜର ସବୁ ଧନସମ୍ପତ୍ତି ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରି ଦାରିଦ୍ର୍ୟମୟ ଜୀବନକୁ ଆଦରି ନେଇଥିଲେ । ଆମେ ଇତିହାସରୁ ଜାଣୁ ତାଙ୍କ ଘରେ ଅନେକ ସମୟରେ ଚୁଲି ଜଳେ ନାହିଁ । ଭୋକ ଉପାସରେ ରହିବାକୁ ପଡ଼େ । ତାଙ୍କର ଖାଦ୍ୟ ଥିଲା ଖଜୁରୀ ବା ଯଅ ତିଆରି ରୁଟି । ବେଳେବେଳେ କ୍ଷୀର ବା ମାଂସ ମଧ୍ୟ ମିଳିଯାଏ । ସେ ମାଟିଘରେ ରହୁଥିଲେ ଏବଂ ଚମଡ଼ା ବା ଖଜୁରୀପତ୍ର ବିଛଣାରେ ଶୋଉଥିଲେ । ନିଜ ବା ନିଜ ପରିବାର ପାଇଁ ସେ କେବେହେଲେ ଟିକିଏ ଉନ୍ନତମାନର ଜୀବନ କାମନା କରିନାହାନ୍ତି । ଧନ ସଂଚୟ କରିନାହାନ୍ତି କିମ୍ବା କୋଠାବାଡ଼ି ତିଆରି କରିନାହାନ୍ତି । ବରଂ ଈଶ୍ୱରଙ୍କ କୃପାରୁ ଯାହା ମିଳେ, ତାକୁ ଅନ୍ୟକୁ ଦାନ କରିଦିଅନ୍ତି ।

## କୃତି

ଏହି ଶାନ୍ତ-ସରଳ ବ୍ୟକ୍ତିଜଣକ ମାତ୍ର ୨୩ବର୍ଷ ମଧ୍ୟରେ ଆରବର ଇତିହାସ ବଦଳାଇ ଦେଲେ । ବାରଲକ୍ଷ ବର୍ଗମାଇଲ ଅଞ୍ଚଳର ଅଧିବାସୀମାନଙ୍କର ଆଚାର-ବ୍ୟବହାର ଏବଂ ବିଶ୍ୱାସ ମଧ୍ୟ ବଦଳାଇ ଦେଲେ । ବିଭିନ୍ନ ପ୍ରଥା-ପରମ୍ପରାଯୁକ୍ତ ବିଶୃଙ୍ଖଳ ସମ୍ପ୍ରଦାୟମାନଙ୍କୁ ଗୋଟିଏ ଧର୍ମ ଓ ଭ୍ରାତୃତ୍ୱ ବନ୍ଧନରେ ବାନ୍ଧି ଦେଲେ । ସମାଜରେ ଥିବା ଅନ୍ଧବିଶ୍ୱାସ ଓ କୁସଂସ୍କାରଗୁଡ଼ିକର ଅନ୍ତ କରିବା ସହ ସମସ୍ତ ପ୍ରକାର ଦୁର୍ନୀତି ଓ ଦୁରାଚାରର ମୂଳୋତ୍ପାଟନ କରି ବିଶ୍ୱ ଇତିହାସରେ ଅନୁପମ ଉଦାହରଣ ସୃଷ୍ଟି କରିଗଲେ । ଯେଉଁ ସମାଜରେ ହତ୍ୟା, ଚୋରି, ଡକାୟତି, ବ୍ୟଭିଚାର, ମଦ୍ୟପାନ ଓ ଜୁଆ ଆଦି ଅତି ସାଧାରଣ କଥା ଥିଲା, ଦାସତ୍ୱ ପ୍ରଥାର ପ୍ରଚଳନ ଥିଲା, ମହିଳାମାନଙ୍କ ପ୍ରତି

ଅତ୍ୟାଚାର କରାଯାଉଥିଲା, ଶିଶୁକନ୍ୟାମାନଙ୍କୁ ଜିଅନ୍ତା ପୋତି ଦିଆଯାଉଥିଲା, ନଗ୍ନତା ଆଉ ବର୍ବରତା ତଥା ପାଶବିକତା ଥିଲା; କିନ୍ତୁ ମାନବିକତାର ଚିହ୍ନବର୍ଣ୍ଣ ନ ଥିଲା, ସେ ସମାଜ ପୁଣି କୋଟି କୋଟି ଜନତାଙ୍କର ଏକ ଆଦର୍ଶ ସମାନ ହୋଇଗଲା । ଏପରିକି ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିବା ଶତ୍ରୁମାନେ ମଧ୍ୟ ତାଙ୍କ ଦାସତ୍ୱ ସ୍ୱୀକାର କରିନେଲେ ଏବଂ ତାଙ୍କ ପାଇଁ ନିଜ ପ୍ରାଣ ମଧ୍ୟ ଉତ୍ସର୍ଗ କରିଦେଲେ । ହୃଦୟର ଜୟ ହିଁ ପ୍ରକୃତ ଜୟ, ଏହା ସେ ପ୍ରମାଣିତ କରିଦେଲେ । ମଣିଷ ହୃଦୟରେ ସେ ଏପରି ପରିବର୍ତ୍ତନ ଆଣିଦେଲେ ଯେ ବ୍ୟଭିଚାରୀ ନିଜେ ଆସି ତାଙ୍କ ନିକଟରେ ପ୍ରାଣଦଣ୍ଡ ଭିକ୍ଷା କରୁଥିଲା ।

ଆଶ୍ଚର୍ଯ୍ୟର କଥା, ଏସବୁ ଘଟଣା ମାତ୍ର ୨୩ବର୍ଷ ମଧ୍ୟରେ ଘଟିଗଲା । ଏତେ କମ୍ ସମୟ ମଧ୍ୟରେ ଏଭଳି ଚମତ୍କାରିତା କୌଣସି ଶକ୍ତିଶାଳୀ ରାଷ୍ଟ୍ର ପକ୍ଷରେ ମଧ୍ୟ ସମ୍ଭବ ନୁହେଁ । ଇନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା ମହାମାନ୍ୟ ମୁହମ୍ମଦଙ୍କ କୃତିର ମୂଲ୍ୟାୟନ କରି ଲେଖିଛି :

> ‘‘ଈଶ୍ୱରଦୂତ କାଳର ୨୩ବର୍ଷର ଅବଧି ମଧ୍ୟରେ ମୁହମ୍ମଦ ଏଭଳି କାର୍ଯ୍ୟ ସମ୍ପାଦନ କରିଛନ୍ତି, ଯାହା ଅବଶ୍ୟ ମାନବ ଇତିହାସର ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କୃତି ରୂପେ ବିବେଚିତ ହେବ ।’’[1]

ବିଶ୍ୱ ଇତିହାସରେ ଏଭଳି କୌଣସି ବ୍ୟକ୍ତିର ଦୃଷ୍ଟାନ୍ତ ନାହିଁ, ଯାହାର ଅତି ସାଧାରଣ ଆଚରଣଗୁଡ଼ିକୁ ମଧ୍ୟ କୋଟି କୋଟି ନରନାରୀ ପୁଣ୍ୟ ମନେକରି ଅନୁକରଣ କରନ୍ତି । ସେମାନେ ଠିକ୍ ତାଙ୍କରି ଭଳି ଖାଆନ୍ତି, ପିଅନ୍ତି, ଶୁଅନ୍ତି ଏବଂ ଅନ୍ୟାନ୍ୟ ନିତ୍ୟକର୍ମଗୁଡ଼ିକ କରନ୍ତି । ଯେଉଁ ଭକ୍ତି ଓ ଭାବାବେଗ ସହିତ ମହାମାନ୍ୟ ମୁହମ୍ମଦଙ୍କ ଆଦେଶ ପାଳନ କରାଯାଏ, ଏହାର ଦୃଷ୍ଟାନ୍ତ ବିଶ୍ୱରେ ବିରଳ ।



---

[1] **'Muhammed' Encyclopedia Britannica Ultimate Reference Suite, Chicago, 2011—**"During the 23 year period of his Prophethood, Muhammed accomplished what by any account must be considered among the most significant achievements of human history.... It can therefore be argued that Muhammed's mark on history was as profound and enduring as anything recorded in the pages of human history."

# ଇତିହାସର ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତି: ବିଭିନ୍ନ ମତ ଓ ମନ୍ତବ୍ୟ

ଅନେକ ବ୍ୟକ୍ତି କୌଣସି ଗୋଟିଏ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ପାରଦର୍ଶିତା ଯୋଗୁଁ କୀର୍ତ୍ତି ଅର୍ଜନ କରିଛନ୍ତି । କେହି କଳା ଓ ସାହିତ୍ୟରେ ଏବଂ କେହି ବିଜ୍ଞାନ ବା ଗଣିତଶାସ୍ତ୍ରରେ ପାରଦର୍ଶିତା ପ୍ରଦର୍ଶନ କରି ପ୍ରସିଦ୍ଧ ହେଲେ, କେହି ନୂତନ ଆବିଷ୍କାର ବା ଉଦ୍ଭାବନ କରି ବିଶ୍ୱବିଖ୍ୟାତ ହେଲେ, କେହି ସୁଶାସନ ପାଇଁ ବା କେହି ଅସାଧାରଣ ବୀରତ୍ୱ ଯୋଗୁଁ 'ମହାନ୍' ଆଖ୍ୟା ପାଇଲେ, କେହି ସମାଜ ସଂସ୍କାରକ ରୂପେ ସମାଜ ସେବା କରି ମହାପୁରୁଷର ମର୍ଯ୍ୟାଦା ପାଇଲେ ଏବଂ କେହି ଆଧ୍ୟାତ୍ମିକ ତତ୍ତ୍ୱର ଦିଗ୍‌ଦର୍ଶନ ଦେଇ 'ମହାତ୍ମା' ହେବାର ଗୌରବ ଅର୍ଜନ କଲେ । କିନ୍ତୁ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସମାନଭାବେ ସଫଳତାର ଶୀର୍ଷକୁ ଛୁଇଁ ପାରିଥିବା ଅନନ୍ୟ ବ୍ୟକ୍ତି ଇତିହାସରେ ମହାମାନ୍ୟ ମୁହମ୍ମଦଙ୍କ ବ୍ୟତୀତ ଅନ୍ୟ କେହି ଦେଖାଯାଉନାହାନ୍ତି ।

ବିଶ୍ୱର ଏକ-ପଞ୍ଚମାଂଶରୁ ଅଧିକ ନର-ନାରୀଙ୍କ ହୃଦୟ ଜୟ କରିଥିବା ଏହି ମହାନ୍ ପୁରୁଷ ଥିଲେ ଏକାଧାରରେ ଜଣେ ଧର୍ମପ୍ରାଣ ମହର୍ଷି, ଧର୍ମ ପ୍ରବର୍ତ୍ତକ, ସୁଦକ୍ଷ ଶାସକ, ବିଜ୍ଞ ବିଚାରପତି, ପ୍ରବୀଣ ରାଜନୀତିଜ୍ଞ, ଦକ୍ଷ ସେନାପତି ଏବଂ ଜଣେ ମହାନ୍ ସମାଜ ସଂସ୍କାରକ । ଜଣେ ଭାରତୀୟ ବିଦ୍ୱାନ୍ ପ୍ରଫେସର କେ.ଏସ୍.ରାମକ୍ରିଷ୍ଣା ରାଓଙ୍କ ମତରେ—

> ''ମୁହମ୍ମଦଙ୍କ ବ୍ୟକ୍ତିତ୍ୱର ସମ୍ପୂର୍ଣ୍ଣ ସତ୍ୟତାକୁ ଜାଣିପାରିବା ଅତ୍ୟନ୍ତ କଷ୍ଟକର । ମୁଁ କେବଳ ତାର ଗୋଟିଏ ଝଲକ ପାଇପାରୁଛି । ସିନେମାରେ ଦୃଶ୍ୟପଟ୍ଟ ଭଳି କି ନାଟକୀୟ ଅନୁକ୍ରମ ! ମୁହମ୍ମଦ ହେଉଛନ୍ତି ଧର୍ମପ୍ରବର୍ତ୍ତକ, ମୁହମ୍ମଦ ହେଉଛନ୍ତି ବୀରପୁରୁଷ, ମୁହମ୍ମଦ ବ୍ୟବସାୟୀ, ମୁହମ୍ମଦ ରାଜନୀତିଜ୍ଞ, ମୁହମ୍ମଦ ହିଁ ବକ୍ତା, ମୁହମ୍ମଦ କ୍ରୀତଦାସଙ୍କର ସଂରକ୍ଷକ, ମୁହମ୍ମଦ ନାରୀଜାତିର ମୁକ୍ତିଦାତା, ମୁହମ୍ମଦ ନ୍ୟାୟାଧୀଶ, ମୁହମ୍ମଦ ହିଁ ସନ୍ଥ । ଏ ସମସ୍ତ ଚମତ୍କାର ଭୂମିକାରେ, ସମସ୍ତ ମାନବୀୟ କାର୍ଯ୍ୟକ୍ଷେତ୍ରରେ ସେ ଜଣେ 'ନାୟକ' ସଦୃଶ ।''[1]

---

[1] "The personality of Muhammed, it is most difficult to get into the whole truth of it. Only a glimpse of it I can catch.

ବିଶ୍ୱର ପ୍ରଖ୍ୟାତ ଐତିହାସିକ ଓ ବୁଦ୍ଧିଜୀବୀ ଏହି ମହାପୁରୁଷଙ୍କର ସରଳତା, ସତ୍ୟନିଷ୍ଠା, ସହୃଦୟତା, ନ୍ୟାୟପରାୟଣତା ଏବଂ ମଧୁର ବ୍ୟବହାରର ଭୂୟସୀ ପ୍ରଶଂସା କରିଛନ୍ତି ଏବଂ ତାଙ୍କ ଅନୁପମ ଚରିତ୍ରକୁ ସେମାନଙ୍କ ଲେଖନୀ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଛି । ମୁସଲମାନ ଲେଖକଙ୍କ କଥା ଉଲ୍ଲେଖ କରିବାର ଆବଶ୍ୟକତା ନାହିଁ, ଅଣମୁସଲିମ୍ ଲେଖକମାନଙ୍କର କଲମ ମଧ୍ୟ ମହାମାନ୍ୟ ମୁହମ୍ମଦଙ୍କ ପ୍ରଶଂସାରେ ଶତମୁଖ । ଅନେକ ତାଙ୍କୁ ବିଶ୍ୱ ଇତିହାସର ମହାନ୍‌ତମ ତଥା ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତି ରୂପେ ବର୍ଣ୍ଣନା କରିଛନ୍ତି । ଏପରିକି ଏହି ମହାପୁରୁଷଙ୍କୁ ତୀବ୍ର ସମାଲୋଚନା କରିଥିବା ଅନେକ ପାଶ୍ଚାତ୍ୟ ଲେଖକ ମଧ୍ୟ ତାଙ୍କର ଗୁଣଗାନ କରିବା ପାଇଁ ବାଧ୍ୟ ହୋଇଛନ୍ତି । ଶତ୍ରୁ ଓ ମିତ୍ର ଉଭୟଙ୍କ ଦ୍ୱାରା ମହାମାନ୍ୟ ମୁହମ୍ମଦ ପ୍ରଶଂସିତ । ପାଠକମାନଙ୍କୁ ତାଙ୍କର ଉଜ୍ଜ୍ୱଳ ଚରିତ୍ର ଓ ପ୍ରଭାବଶାଳୀ ବ୍ୟକ୍ତିତ୍ୱର ଏକ ସ୍ୱଷ୍ଟ ଚିତ୍ର ଦେବାପାଇଁ ମୁଁ କେତେକ ବିଶିଷ୍ଟ ଐତିହାସିକ ଓ ବୁଦ୍ଧିଜୀବୀଙ୍କର ମତାମତ ସେମାନଙ୍କ ପୁସ୍ତକରୁ ଉଦ୍ଧାର କରୁଛି । ଉଲ୍ଲେଖନୀୟ କଥା ହେଉଛି ଯେ, ଏମାନେ କେହି ମୁସଲମାନ ନୁହଁନ୍ତି ।

## ଥୋମାସ୍ କାର୍ଲାଇଲ

ପ୍ରସିଦ୍ଧ ଐତିହାସିକ ଥୋମାସ୍ କାର୍ଲାଇଲ୍ (୧୭୯୫-୧୮୮୧) ଇଂଲଣ୍ଡରେ ୧୮୪୦ମସିହା ମେ' ମାସ ୮ତାରିଖ ଦିନ ନିଜର ଖ୍ରୀଷ୍ଟିୟାନ୍ ଶ୍ରୋତାମାନଙ୍କୁ ଉଦ୍‌ବୋଧନ ଦେଲେ । ତାଙ୍କର ଏହି ଐତିହାସିକ ଅଭିଭାଷଣର ବିଷୟବସ୍ତୁ ଥିଲା "The Hero as Prophet" ଅର୍ଥାତ୍ ଇଶ୍ୱରଦୂତ ରୂପେ

---

What a dramatic succession of picturesque scenes ? There is Muhammed, the Prophet. There is Muhammed, the Warrior; Muhammed, the Businessman; Muhammed, the Statesman; Muhammed, the Orator; Muhammed, the Reformer; Muhammed the Refuge of Orphans; Muhammed, the Protector of Slaves; Muhammed, the Emancipator of women; Muhammed, the Judge; Muhammed, the Saint. All in all these magnificent roles, in all these departments of human activities, he is like a Hero." (Prof. K.S. Ramakrishna Rao, Muhammad, the Prophet of Islam, Madras, 1952, P.-16)

ଜଣେ ବୀର । ହିରୋ ଧର୍ମଦୂତ ଭାବେ ସେ ଏମିତି ଜଣେ ବ୍ୟକ୍ତିଙ୍କୁ ବାଛିଲେ ଯିଏକି ସେ ସମୟରେ ବିଶ୍ୱର ସବୁଠାରୁ ଅଧିକ ନିନ୍ଦିତ ବ୍ୟକ୍ତି ଥିଲେ, ଯାହାଙ୍କର ଚରିତ୍ର ସଂହାର କରିବା ପାଇଁ ପାଶ୍ଚାତ୍ୟ ଲେକଖମାନଙ୍କର ଲେଖନୀ ସଦା ଚଞ୍ଚଳ ରହୁଥିଲା । ଇଂଲଣ୍ଡ ମାଟିରେ ଅପୂର୍ବ ସାହସର ସହିତ ମହାମାନ୍ୟ ମୁହମ୍ମଦଙ୍କର ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାଙ୍କୁ ଜଣେ 'ହିରୋ ଧର୍ମଦୂତ' ରୂପେ ଉପସ୍ଥାପିତ କରି କାର୍ଲାଇଲ୍ ଇଂଲଣ୍ଡବାସୀଙ୍କୁ ସ୍ତବ୍ଧ କରିଦେଇଥିଲେ । କେବଳ ଏତିକି ନୁହେଁ, ୟୁରୋପୀୟ ଲେଖକମାନେ ତାଙ୍କ ବିରୁଦ୍ଧରେ କରିଥିବା ଆରୋପଗୁଡ଼ିକୁ ଦୃଢ଼ଭାବରେ ଖଣ୍ଡନ କରି ସେ ପାଶ୍ଚାତ୍ୟ ଜଗତରେ ଏକ ଆଲୋଡ଼ନ ସୃଷ୍ଟି କରିଦେଇଥିଲେ । ତାଙ୍କର ଏହି ଐତିହାସିକ ଭାଷଣ ବିଶ୍ୱର ବହୁ ଐତିହାସିକ ଓ ବୁଦ୍ଧିଜୀବୀମାନଙ୍କର ବିଚାରକୁ ଗଭୀର ଭାବେ ପ୍ରଭାବିତ କରିଥିଲା । ମହାମାନ୍ୟ ମୁହମ୍ମଦଙ୍କୁ ଜଣେ ବୀର ଈଶ୍ୱରଦୂତ ରୂପେ ବର୍ଣ୍ଣନା କରି କାର୍ଲାଇଲ୍ କହିଥିଲେ—

> ''ଆରବ ଜାତି ପାଇଁ ଏହା ଅନ୍ଧାର ମଧ୍ୟରୁ ଆଲୋକର ଜନ୍ମ ପରି ଥିଲା । ଏହା ଯୋଗୁଁ ଆରବ ଜୀବନ୍ତ ହୋଇଉଠିଲା । ସୃଷ୍ଟି କାଳରୁ ଗୋଟିଏ ଦରିଦ୍ର ମେଷପାଳକ ଜାତି ଅଜ୍ଞାତଭାବେ ମରୁଭୂମିରେ ବୁଲୁଥିଲା । ଜଣେ ବୀର ଈଶ୍ୱରଦୂତଙ୍କୁ ଏକ ବିଶ୍ୱସନୀୟ ବାର୍ତ୍ତା ସହ ସେମାନଙ୍କ ନିକଟକୁ ପଠାଗଲା । ଦେଖ, ଗୋଟିଏ ଅଜଣା ଜାତି ହୋଇଗଲା ବିଶ୍ୱବିଦିତ ଏବଂ ଗୋଟିଏ କ୍ଷୁଦ୍ର ରାଷ୍ଟ୍ର ହୋଇଗଲା ବିଶ୍ୱମହାନ ।''[2]

ମହାମାନ୍ୟ ମୁହମ୍ମଦଙ୍କ ସଦାଚାର ଓ ସତ୍ୟନିଷ୍ଠାର ଭୂୟସୀ ପ୍ରଶଂସା କରି କାର୍ଲାଇଲ୍ କହିଲେ—

---

[2] **THOMAS CARLYLE, Heros and Hero Worship, London, Original Text :** "To the Arab Nation it was as a birth from darkness into light; Arabia first became alive by means of it. A poor shepherd people, roaming unnoticed in its desert since the creation of the world : a Hero-Prophet was sent down to them with a word they could believe : see, the unnoticed becomes world- notable, the small has grown world-great; …" (p.105)

''ତାଙ୍କ ସାଥିମାନେ ତାଙ୍କୁ ନାମ ଦେଇଥିଲେ 'ଅଲ୍‌-ଅମୀନ୍‌' ଅର୍ଥାତ୍‌ 'ବିଶ୍ୱସନୀୟ' । ଜଣେ ସଚ୍ଚୋଟ ଓ ବିଶ୍ୱସନୀୟ ମଣିଷ, ସଚ୍ଚୋଟ ନିଜ କଥାରେ, ନିଜ କାର୍ଯ୍ୟରେ ଆଉ ବିଚାରଧାରାରେ... ତାଙ୍କର ସମ୍ପୂର୍ଣ୍ଣ ଜୀବନକାଳ ମଧ୍ୟରେ ଆମେ ତାଙ୍କୁ ଜଣେ ଖାଣ୍ଟି, ଭ୍ରାତୃବତ୍ସଳ ଓ ପ୍ରକୃତ ମଣିଷ ରୂପେ ଦେଖିଛୁ । ଜଣେ ଗମ୍ଭୀର ନିଷ୍ଠାପର ଚରିତ୍ର, ତଥାପି ଆମାୟିକ, ଭଦ୍ର, ବନ୍ଧୁବତ୍ସଳ, ଏପରିକି ପରିହାସ ପ୍ରିୟ ମଧ୍ୟ... ।''[3]

''ନା ତାଙ୍କ କଥାଗୁଡ଼ିକ ମିଛ ଥିଲା, ନା ତାଙ୍କର କାର୍ଯ୍ୟଧାରା, ନା କୌଣସି ଛଳକପଟ ଥିଲା । ପ୍ରକୃତିର ବିଶାଳ ବୁକୁରେ ଆବିର୍ଭୂତ ଏକ ଜ୍ୟୋତିର୍ମୟ ଜୀବନଧାରା । ଜଗତକୁ ଆଲୋକମୟ କରିଦେବାପାଇଁ ଏହାହିଁ ଥିଲା ସ୍ରଷ୍ଟାଙ୍କର ଆଦେଶ । କୌଣସି ଦୋଷଦୁର୍ବଳତା, ଅପୂର୍ଣ୍ଣତା ବା ନିଷ୍ଠାହୀନତା ତାଙ୍କ ବିଷୟରେ ଏହି ପ୍ରାଥମିକ ସତ୍ୟକୁ ଦୋହଲାଇ ପାରିବ ନାହିଁ, ଯଦିଓ ଏଭଳି କିଛି ତାଙ୍କ ବିରୁଦ୍ଧରେ ଯୁକ୍ତିଯୁକ୍ତ ଭାବେ ପ୍ରମାଣିତ ହୋଇନାହିଁ ।''[4]

ମହାମାନ୍ୟ ମୁହମ୍ମଦଙ୍କ ଭିତରେ କାର୍ଲାଇଲ୍‌ ଜଣେ ପ୍ରକୃତ ବୀରକୁ ଦେଖିଥିବାର ବର୍ଣ୍ଣନା କରି କୁହନ୍ତି—

''ନିଜ କୁର୍ତ୍ତାରେ ନିଜେ ତାଳି ପକାଉଥିବା ଏହି ବ୍ୟକ୍ତିଜଣକର ଆଦେଶ ଯେଉଁଭଳି ଭାବରେ ପାଳନ କରାଯାଏ, କୌଣସି

---

(3) "His companions named him "Al Amin" The Faithful. A man of truth and fidelity; true in what he did, in what he spake and thought. … Through life we find him to have been regarded as an altogether solid, brotherly, genuine man. A serious, sincere character; yet amiable, cordial, companionable, jocose even; …" (Ibid.p.73)

(4) "The man's words were not false, nor his workings here below; no Inanity and Simulacrum; a fiery mass of Life cast-up from the great bosom of Nature herself. To kindle the world; the world's Maker had ordered it so. Neither can the faults, imperfections, insincerities even, of Mahomet, if such were never so well proved against him, shake this primary fact about him." (Ibid.pp.64-65)

ମୁକୁଟଧାରୀ ସମ୍ରାଟର ଆଦେଶ ମଧ୍ୟ ସେଭଳି ପାଳନ କରାଯାଏ ନାହିଁ । ଦୀର୍ଘ ତେଇଶି ବର୍ଷର କଠିନ ସଂଘର୍ଷ ମଧ୍ୟରେ ତାଙ୍କ ଭିତରେ ମୁଁ ଦେଖିଛି ଜଣେ ପ୍ରକୃତ ହିରୋକୁ ।''[5]

## ଆର୍‌.ବୋସୱର୍ଥ ସ୍ମିଥ୍‌

ଇଂଲଣ୍ଡର ପ୍ରସିଦ୍ଧ ଐତିହାସିକ ଆର୍‌.ବୋସୱର୍ଥ ସ୍ମିଥ୍‌ (୧୮୩୯-୧୯୦୮) ୧୮୭୪ ମସିହା ଫେବୃୟାରୀ ଓ ମାର୍ଚ୍ଚ ମାସରେ ରୟାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଗ୍ରେଟ୍‌ବ୍ରିଟେନ୍‌ରେ ଇଂଲଣ୍ଡର ଜନତାଙ୍କୁ ଉଦ୍‌ବୋଧନ ଦେଇଥିଲେ । ମହାମାନ୍ୟ ମୁହମ୍ମଦଙ୍କର ଅସାଧାରଣ ବ୍ୟକ୍ତିତ୍ୱର ଭୂୟସୀ ପ୍ରଶଂସା କରି ସେ କହିଥିଲେ—

''ରାଷ୍ଟ୍ର ଓ ଚର୍ଚ୍ଚର ମୁଖ୍ୟ ଭାବରେ ସେ ଥିଲେ ଏକାଧାରରେ ସିଜର୍ ଓ ପୋପ, କିନ୍ତୁ ପୋପ ଥିଲେ ବାହ୍ୟାଡମ୍ବରହୀନ ଏବଂ ସିଜର ଥିଲେ ସୈନ୍ୟବାହିନୀବିହୀନ । ଏକ ସ୍ଥାୟୀ ସେନା ବିନା, ନିରାପତ୍ତାରକ୍ଷୀ ବିନା, ରାଜପ୍ରାସାଦ ବିନା ଏବଂ ଏକ ନିର୍ଦ୍ଧିଷ୍ଟ ରାଜସ୍ୱ ବିନା ନ୍ୟାୟପୂର୍ଣ୍ଣ ଭାବରେ ଶାସନ କରିଛି ବୋଲି ଯଦି କାହାରି କହିବାର ଅଧିକାର ଥାଏ, ତେବେ ସେ ହେଉଛନ୍ତି ମୁହମ୍ମଦ । କାରଣ କୌଣସି ସାଧନ ବା ସହାୟତା ନଥାଇ ମଧ୍ୟ ତାଙ୍କର ସବୁକିଛି କରିପାରିବାର ସାମର୍ଥ୍ୟ ଥିଲା ।''[6]

---

[5] "No emperor with his tiaras was obeyed as this man in a cloak of his own clouting. During three-and-twenty years of rough actual trial. I find something of a veritable Hero necessary for that, of itself." (Ibid.p.98)

[6] **R.BOSWORTH SMITH, Mohammed and Mohammedanism, London, 1874, :** "Head of the State as well as of the Church, he was Caesar and Pope in one; but he was Pope without the Pope's pretensions, and Caesar without the legions of Caesar. Without a standing army, without a body guard, without a palace, without a fixed revenue, if ever any man had the right to say that he ruled by a right Divine, it was Mohammed; for he had all the power without its instruments and without its supports." (p.235)

ମହାମାନ୍ୟ ମୁହମ୍ମଦଙ୍କୁ ଋଷିତୁଲ୍ୟ ଗୁଣଗୁଡ଼ିକର ଏକ ନମୂନା ସ୍ୱରୂପ ବର୍ଣ୍ଣନା କରି ସେ କହନ୍ତି—

''ନିଃସନ୍ଦେହ ଭାବରେ ମକ୍କାରେ ସାରା ଜୀବନ ମୁହମ୍ମଦ ଋଷିତୁଲ୍ୟ ଗୁଣଗୁଡ଼ିକର ଏକ ପରିପୂର୍ଣ୍ଣ ମଡେଲ ଥିଲେ ।''(7)

ସ୍ମିଥ୍‌ଙ୍କ ବିଚାରରେ ସେ ଥିଲେ ଇତିହାସର ଏକ ଅନନ୍ୟ ବ୍ୟକ୍ତି ।

''ସୌଭାଗ୍ୟକ୍ରମେ ଇତିହାସରେ ସମ୍ପୂର୍ଣ୍ଣ ଅନନ୍ୟ ମୁହମ୍ମଦ ଥିଲେ ଗୋଟିଏ ଜାତିର, ଗୋଟିଏ ସାମ୍ରାଜ୍ୟର ଏବଂ ଗୋଟିଏ ଧର୍ମର ତ୍ରିବିଧ ପ୍ରତିଷ୍ଠାତା ।''(8)

## ଆଲଫୋନ୍‌ସ ଡି ଲାମରଟାଇନ

କାର୍ଲାଇଲ୍‌ଙ୍କ 'ହିରୋ ପ୍ରଫେଟ୍' ଉପରେ ବକ୍ତୃତା ଦେବାର ୧୪ବର୍ଷ ପରେ ତୁର୍କୀର ଇତିହାସ ଲେଖିଥିବା ପ୍ରସିଦ୍ଧ ଫରାସୀ ଐତିହାସିକ ଆଲଫୋନ୍‌ସ ଡି ଲାମରଟାଇନ୍ (୧୭୯୦-୧୮୬୯) ମହାମାନ୍ୟ ମୁହମ୍ମଦଙ୍କୁ ଆଧୁନିକ ଇତିହାସର ସବୁଠାରୁ ମହାନ ବ୍ୟକ୍ତିରୂପେ ଘୋଷଣା କରି କହିଲେ—

''ଉଦ୍ଦେଶ୍ୟରେ ମହାନତା, ସାଧନର ଅଭାବ ଆଉ ବିସ୍ମୟକର ପରିଣାମ ମଣିଷର ପ୍ରତିଭାକୁ ମାପିବା ପାଇଁ ଯଦି ତିନିଗୋଟି ମାନଦଣ୍ଡ ହୁଏ, ତେବେ ଆଧୁନିକ ଇତିହାସରେ କୌଣସି ମହାନ ବ୍ୟକ୍ତିଙ୍କ ସହ ମୁହମ୍ମଦଙ୍କୁ ତୁଳନା କରିବାର ସାହସ କିଏ କରିପାରିବ ?......''

''ବିଶ୍ୱର ଅତି ପ୍ରସିଦ୍ଧ ବ୍ୟକ୍ତିମାନେ କେବଳ ଅସ୍ତ୍ରଶସ୍ତ୍ର, ଆଇନ୍ ଓ ସାମ୍ରାଜ୍ୟ ଗଢ଼ିଲେ, ଏହାଠାରୁ ଅଧିକ ଯଦି କିଛି କଲେ, ତେବେ ବସ୍ତୁବାଦୀ ଶକ୍ତିକୁ ଜନ୍ମଦେଲେ, ଯାହା ସେମାନଙ୍କ

---

(7) "Mohammed himself, throughout his life at Mecca, unquestionably was a perfect model of the saintly virtues... (Ibid.p.145)

(8) "By a fortune absolutely unique in history, Mohammed is a threefold founder of a nation, of an empire, and of a religion." (Ibid.p.237)

ଆଖିଆଗରେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । କିନ୍ତୁ ଏହି ବ୍ୟକ୍ତି ମୁହମ୍ମଦ କେବଳ ସେନା, ଶାସନ, ସାମ୍ରାଜ୍ୟ ଓ ରାଜବଂଶଗୁଡ଼ିକୁ ଦୋହଲାଇ ଦେଇନାହାନ୍ତି, ବରଂ ତତ୍କାଳୀନ ବିଶ୍ୱର ଏକ ତୃତୀୟାଂଶ ଅଧିବାସୀଙ୍କ ହୃଦୟକୁ ଜିଣିପାରିଛନ୍ତି ଏବଂ ସେମାନଙ୍କର ପୂଜା ମଣ୍ଡପକୁ, ସେମାନଙ୍କର ପୂଜ୍ୟଙ୍କୁ, ଧର୍ମକୁ, ବିଚାରକୁ, ବିଶ୍ୱାସକୁ ଏବଂ ସେମାନଙ୍କର ଆତ୍ମାକୁ ମଧ୍ୟ ପରିବର୍ତ୍ତନ କରିଦେଇଛନ୍ତି ।''

''ଦାର୍ଶନିକ, ବକ୍ତା, ଧର୍ମପ୍ରଚାରକ, ଯୋଦ୍ଧା, ଚେତନାଜୟୀ, ସୁସଙ୍ଗତ ଧର୍ମବିଶ୍ୱାସ ଓ ନିରାକାରବାଦର ପୁନଃସ୍ଥାପକ, କୋଡ଼ିଏଟି ଭୌଗୋଳିକ ସାମ୍ରାଜ୍ୟ ତଥା ଗୋଟିଏ ଆଧ୍ୟାତ୍ମିକ ସାମ୍ରାଜ୍ୟର ପ୍ରତିଷ୍ଠାତା ହେଉଛନ୍ତି ମୁହମ୍ମଦ ।''

''ମଣିଷର ମହାନତାକୁ ମାପିବା ପାଇଁ ଯେତେଗୁଡ଼ିଏ ପରିମାପକ ଅଛି, ସବୁ ଦୃଷ୍ଟିରୁ ବିଚାର କଲେ ଆମେ ପ୍ରଶ୍ନ କରିପାରୁ ! ତାଙ୍କଠାରୁ ଅଧିକ ମହାନ ଆଉ କେହି ଅଛି କି ?''[9]

---

[9] **ALPHONSE DE LAMARTINE, Histoire De La Turquie, Paris, 1854 vol.II pp.276-277 :** "If greatness of purpose, smallness of means, and astounding results, are the three criteria of human genius, who could dare to compare any great man in modern history with Muhammad?…

"The most famous men created arms, laws and empires only. They founded, if anything at all, no more than material powers which often crumbled away before their eyes. This man Muhammed moved not only armies, legislation, empires, peoples and dynasties, but millions of men in one-third of the then inhabited world; and more than that, he moved the altars, the gods, the religions, the ideas, the beliefs and souls...."

"Philosopher, orator, apostle, legislator, warrior, conqueror of ideas, restorer of rational beliefs, of a cult without images; the founder of twenty terrestrial empires and of one spiritual empire, that is Muhammad.

ଲାମରଟାଇନ୍ ମହାମାନ୍ୟ ମୁହମ୍ମଦଙ୍କ ଅସାଧାରଣ ପ୍ରତିଭାର ମୂଲ୍ୟାଙ୍କନ କଲେ । ତାଙ୍କର ମହାନତାକୁ ମାପିବା ପାଇଁ ସେ ତିନୋଟି କଥା ଉପରେ ଗୁରୁତ୍ୱ ଦେଇଛନ୍ତି—ଲକ୍ଷ୍ୟ, ସାଧନ ଏବଂ ପରିଣାମ ।

ଲକ୍ଷ୍ୟ ? ରାଜମୁକୁଟ ବା ରାଜସିଂହାସନ ନୁହେଁ, ପ୍ରତିଷ୍ଠା ବା ପ୍ରତିପତ୍ତି ନୁହେଁ, କୋଠାବାଡ଼ି ବା ଧନସମ୍ପତ୍ତି ନୁହେଁ, ବରଂ ଲକ୍ଷ୍ୟ ଥିଲା ମାନବ ଜଗତର ସୁଖଶାନ୍ତି । କେବଳ ଆରବ ସମାଜର ନୁହେଁ, ବିଶ୍ୱର ପ୍ରତ୍ୟେକ ସମାଜର ଏବଂ ପ୍ରତ୍ୟେକ ମଣିଷର । ସମସ୍ତଙ୍କର ଇହଲୋକ ଓ ପରଲୋକ ଶାନ୍ତିମୟ ହେଉ, ଏହାହିଁ ଥିଲା ତାଙ୍କର ଏକମାତ୍ର କାମନା—ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ।

ଏତେ ବଡ଼ ଲକ୍ଷ୍ୟ ହାସଲ କରିବା ପାଇଁ ତାଙ୍କ ପାଖରେ ସାଧନ କ'ଣ ଥିଲା ? ତାଳିପକା ଜାମା ପିନ୍ଧୁଥିବା ଏବଂ ଖଜୁରୀପତ୍ର ପଟିରେ ଶୋଉଥିବା ଏହି ନିଃସ୍ୱ ବ୍ୟକ୍ତିଜଣକ ନିକଟରେ ଏଥିପାଇଁ ସାଧନ ବୋଲି କିଛି ନଥିଲା । ଧନବଳ ବା ସୈନ୍ୟବଳ ନଥିଲା, ଅସ୍ତ୍ରଶସ୍ତ୍ର ବା ରାଜଶକ୍ତି ନଥିଲା, ବିଦ୍ୟାଳୟର ଶିକ୍ଷା ନଥିଲା ବା ତୀର ତରବାରୀ ଚାଳନାର ବିଦ୍ୟା ମଧ୍ୟ ନଥିଲା । କିଛି ନଥାଇ ମଧ୍ୟ ଲକ୍ଷ୍ୟ ଥିଲା ମହାନ—'ବିଶ୍ୱଶାନ୍ତି' ।

କେତେ ସତ କହିଛନ୍ତି ବୋସୱର୍ଥ ସ୍ମିଥ୍—''କୌଣସି ସାଧନ ବା ସମର୍ଥନ ନଥାଇ ମଧ୍ୟ ତାଙ୍କର ସବୁକିଛି କରିପାରିବାର ସାମର୍ଥ୍ୟ ଥିଲା ।'' ଆଉ ନିଜ ଲକ୍ଷ୍ୟରେ ଅପୂର୍ବ ସଫଳତା ତାଙ୍କର ଏହି ସାମର୍ଥ୍ୟର ପ୍ରମାଣ ମଧ୍ୟ ଦେଇଗଲା ।

ପରିଣାମ ? କୋଟି କୋଟି ନରନାରୀଙ୍କର ଜୀବନଶୈଳୀରେ ଅଭୂତପୂର୍ବ ପରିବର୍ତ୍ତନ । ପାରସ୍ୟ ଓ ରୋମ ଭଳି ମହାଶକ୍ତିଗୁଡ଼ିକୁ ପରାଜିତ କରି ଏହି ମହର୍ଷି ବିଶ୍ୱରେ ଇତିହାସ ସୃଷ୍ଟି କରିଗଲେ । ଆଜି ୧୪୦୦ବର୍ଷ ପରେ ମଧ୍ୟ ସେ ବିଶ୍ୱର ଏକ ପଞ୍ଚମାଂଶରୁ ଊର୍ଦ୍ଧ୍ୱ ନରନାରୀଙ୍କ ହୃଦୟରେ ରାଜୁତି କରୁଛନ୍ତି ।

---

"As regards all the standards by which Human Greatness may be measured, we may well ask, IS THERE ANY MAN GREATER THAN HE?" http://en.wikipedia.org/Wiki/Muhammad & "The Choice", Vol-I, pp.158-159.

## ଜନ ଉଇଲିୟମ୍ ଡ୍ରାପର୍

ଜନ ଉଇଲିୟମ୍ ଡ୍ରାପର୍ (୧୮୧୧-୧୮୮୨) ନ୍ୟୁୟର୍କ ବିଶ୍ୱବିଦ୍ୟାଳୟର ଅଧ୍ୟାପକ । ସେ ଜଣେ ଦାର୍ଶନିକ ଏବଂ ପ୍ରସିଦ୍ଧ ଐତିହାସିକ । ମାନବସମାଜ ଉପରେ ମହାମାନ୍ୟ ମୁହମ୍ମଦଙ୍କର ଅଖଣ୍ଡ ପ୍ରଭାବର ବର୍ଣ୍ଣନା କରି ଡ୍ରାପର୍ କୁହନ୍ତି—

> ''ଜଷ୍ଟିନିୟାନଙ୍କ ମୃତ୍ୟୁର ଚାରିବର୍ଷ ପରେ ୫୬୯ ଖ୍ରୀଷ୍ଟାବ୍ଦରେ ଆରବର ମକ୍କାରେ ମୁହମ୍ମଦ ନାମକ ଜଣେ ବ୍ୟକ୍ତି ଜନ୍ମଗ୍ରହଣ କଲେ, ଯିଏ ମାନବଜାତିକୁ ସର୍ବାଧିକ ପ୍ରଭାବିତ କରିଛନ୍ତି ଏବଂ ଯାହାଙ୍କୁ ୟୁରୋପୀୟମାନେ ପ୍ରବଞ୍ଚକ ବୋଲି ନାମିତ କରିଛନ୍ତି ।''[10]

ମହାମାନ୍ୟ ମୁହମ୍ମଦଙ୍କ ପାଇଁ ଈଶ୍ୱରଦୂତ ପଦବୀ ଯଥାର୍ଥ ବୋଲି ମତଦେଇ ଡ୍ରାପର କୁହନ୍ତି—

> ''ଏକ ତୃତୀୟାଂଶ ମାନବଜଗତକୁ ସେମାନଙ୍କ ଦୈନନ୍ଦିନ ଜୀବନରେ ମାର୍ଗଦର୍ଶନ କରୁଥିବା ବହୁ ସାମ୍ରାଜ୍ୟର ଏହି ଧର୍ମାଧୀଶ, ବୋଧହୁଏ 'ଈଶ୍ୱରଦୂତ' ପଦବୀର ଯଥାର୍ଥତା ପ୍ରତିପାଦନ କରୁଛନ୍ତି ।''[11]

## ମାଇକେଲ ଏଚ୍. ହାର୍ଟ

ମାଇକେଲ ଏଚ୍ ହାର୍ଟ (୧୯୩୨) ବିଂଶ ଶତାବ୍ଦୀର ଜଣେ ପ୍ରସିଦ୍ଧ ଆମେରିକୀୟ ଲେଖକ । ଦୀର୍ଘଦିନର ଗବେଷଣା ପରେ ବିଶ୍ୱଇତିହାସରୁ ବାଛି

---

(10) **JOHN WILLIAM DRAPER, M.D., LL.D., History of the Intellectual Development of Europe, Vol.I, London, 1875 :** "Four years after the death of Justinian, A.D. 569, was born at Mecca, in Arabia, the man who, of all Birth of men, has exercised the greatest influence upon the human race, Mohammed, by Europeans surnamed "the Impostor". (p.329)

(11) "To be the religious head of many empires, to guide the daily life of one-third of the human race, may perhaps justify the title of a messenger of God. (Ibid.p.330)."

ବାଛି ଶତାଧିକ ଅତ୍ୟନ୍ତ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ଉପରେ **''ଦ ହଣ୍ଡ୍ରେଡ୍ : ଏ ର୍ୟାକିଂଙ୍ଗ୍ ଅଫ୍ ଦି ମୋଷ୍ଟ୍ ଇନ୍‌ଫ୍ଲୁଏନ୍‌ସିଆଲ୍ ପରସନ୍‌ସ ଇନ୍ ହିଷ୍ଟ୍ରି''** ନାମକ ପୁସ୍ତକଟିଏ ଲେଖିଛନ୍ତି । ତାଙ୍କର ଏହି ପୁସ୍ତକଟିକୁ ଅସାଧାରଣ ପ୍ରସିଦ୍ଧି ମିଳିଲା । ଏହି ପୁସ୍ତକଟିର ପାଞ୍ଚ ଲକ୍ଷରୁ ଊର୍ଦ୍ଧ୍ୱକପି ବିକ୍ରି ହୋଇଛି ଏବଂ ଏହା ୧୫ଗୋଟି ଭାଷାରେ ଅନୁବାଦ କରାଯାଇଛି । ହାର୍ଟଙ୍କ ଏହି ପୁସ୍ତକରେ ବହୁ ବିଶ୍ୱପ୍ରସିଦ୍ଧ ବ୍ୟକ୍ତିଙ୍କର ସଂକ୍ଷିପ୍ତ ଜୀବନୀ ସ୍ଥାନ ପାଇଛି । ସେମାନଙ୍କ ମଧ୍ୟରେ ଆରିଷ୍ଟୋଟଲ, ଗୌତମ ବୁଦ୍ଧ, ମହାବୀର, କନ୍‌ଫୁସିୟସ୍, ଜୋରାଷ୍ଟର୍, ଆଇଜାକ୍ ନିଉଟନ୍, ସେଣ୍ଟ ପଲ୍, ଆଇନ୍‌ଷ୍ଟାଇନ୍, ଗାଲିଲିଓ, ଚାର୍ଲସ୍ ଡାରଓ୍ୱିନ୍, କାର୍ଲ ମାର୍କସ୍, ମହାମାନ୍ୟ ଯୀଶୁ, ମହାମାନ୍ୟ ମୋସେସ୍, ନେପୋଲିୟନ୍, ସମ୍ରାଟ ଅଶୋକ, ସମ୍ରାଟ ଆଲେକ୍‌ଜାଣ୍ଡାର୍, ଜୁଲିୟସ୍ ସିଜର୍ ଓ ପ୍ଲାଟୋ ମଧ୍ୟ ଅନ୍ତର୍ଭୁକ୍ତ । ଶ୍ରୀଯୁକ୍ତ ହାର୍ଟ ବିଶ୍ୱର ଶହେଜଣ ମହାନ ପ୍ରଭାବଶାଳୀ ବ୍ୟକ୍ତିଙ୍କ ତାଲିକାରେ ମହାମାନ୍ୟ ମୁହମ୍ମଦଙ୍କୁ ପ୍ରଥମ ସ୍ଥାନ ଦେଇ କହିଛନ୍ତି—

> ''ମୁହମ୍ମଦଙ୍କୁ ବିଶ୍ୱର ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ତାଲିକାରେ ଅଗ୍ରଭାଗରେ ରଖିବାର ମୋ ପସନ୍ଦ କେତେକ ପାଠକଙ୍କୁ ବିସ୍ମିତ କରିପାରେ ଏବଂ ଅନେକଙ୍କ ମନରେ ପ୍ରଶ୍ନବାଚୀ ମଧ୍ୟ ସୃଷ୍ଟି କରିପାରେ । କିନ୍ତୁ ଇତିହାସରେ କେବଳ ସେ ହିଁ ଏକମାତ୍ର ବ୍ୟକ୍ତି ଯିଏ ଧର୍ମ ଏବଂ ଧର୍ମନିରପେକ୍ଷତା ସ୍ତରରେ ସର୍ବାଧିକ ସଫଳତା ଲାଭ କରିଛନ୍ତି ।''[12]

ନିଜ ପସନ୍ଦର କାରଣ ସମ୍ପର୍କରେ ହାର୍ଟ କୁହନ୍ତି—

> ''ଯେହେତୁ ବିଶ୍ୱରେ ଖ୍ରୀଷ୍ଟିୟାନ୍‌ମାନଙ୍କର ସଂଖ୍ୟା ମୋଟାମୋଟି ଭାବରେ ମୁସଲମାନଙ୍କ ଅପେକ୍ଷା ଦୁଇଗୁଣ, ତେଣୁ ଯୀଶୁଖ୍ରୀଷ୍ଟଙ୍କ ତୁଳନାରେ ମୁହମ୍ମଦଙ୍କୁ ଉଚ୍ଚସ୍ଥାନ ଦିଆଯାଇଥିବା ଆରମ୍ଭରେ ବିଚିତ୍ର ଲାଗିପାରେ । ଏଭଳି ନିଷ୍ପତ୍ତି ନେବାର ଦୁଇଟି ମୁଖ୍ୟ କାରଣ ଅଛି ।

---

[12] **MICHAEL H. HART, The 100 : A Ranking of the Most Influential Persons in History :** "My choice of Muhammad to lead the list of the world's most influential persons may surprise some readers and may be questioned by others, but he was the only man in history who was supremely successful on both the religious and secular level." (p.33)

ପ୍ରଥମତଃ ଖ୍ରୀଷ୍ଟଧର୍ମର ବିକାଶ ପାଇଁ ଯୀଶୁଖ୍ରୀଷ୍ଟ କରିଥିବା କାର୍ଯ୍ୟ ତୁଳନାରେ ଇସଲାମର ପ୍ରଗତି ପାଇଁ ମୁହମ୍ମଦ ଗ୍ରହଣ କରିଥିବା ଭୂମିକା ଯଥେଷ୍ଟ ଅଧିକ ଗୁରୁତ୍ୱପୂର୍ଣ୍ଣ । ଯଦିଓ ଖ୍ରୀଷ୍ଟଧର୍ମର ମୁଖ୍ୟ ଶାସ୍ତ୍ରୀୟ ଓ ନୈତିକ ଆଚରଣ ବିଧି ପାଇଁ ଯୀଶୁ ଦାୟୀ ରହିଥିଲେ (ଯହୁଦୀ ଧର୍ମରୁ ପୃଥକ ଥିବା ପର୍ଯ୍ୟନ୍ତ), କିନ୍ତୁ ସେଣ୍ଟ ପଲ୍ ହେଉଛନ୍ତି ଖ୍ରୀଷ୍ଟଧର୍ମତତ୍ତ୍ୱର ପ୍ରମୁଖ ପ୍ରଚାରକ ଏବଂ ବାଇବଲ୍‌ର ନୂତନ ନିୟମରେ ଥିବା ଏକ ବୃହତ୍ତର ଅଂଶର ରଚୟିତା ।

ମୁହମ୍ମଦ କିନ୍ତୁ ଉଭୟ ଇସ୍‌ଲାମର ଧର୍ମତତ୍ତ୍ୱ, ଏହାର ମୁଖ୍ୟ ନୀତିନିୟମ ତଥା ନୈତିକ ସିଦ୍ଧାନ୍ତ ପାଇଁ (ବ୍ୟକ୍ତିଗତ ରୂପେ) ଦାୟୀ ରହିଛନ୍ତି । ଏହା ବ୍ୟତୀତ ସେ ନୂତନ ଧର୍ମବିଶ୍ୱାସର ପ୍ରସାର ଏବଂ ଇସ୍‌ଲାମର ଧାର୍ମିକ ପରମ୍ପରାର ସଂସ୍ଥାପନାରେ ଅସଲ ଭୂମିକା ଗ୍ରହଣ କରିଥିଲେ ।''[13]

## 'ଟାଇମ୍' ମାଗାଜିନ୍‌ରେ ବିଭିନ୍ନ ବିଦ୍ୱାନ୍

୧୯୭୪ ମସିହା ଜୁଲାଇ ୧୫ତାରିଖରେ ଆମେରିକାର ପ୍ରସିଦ୍ଧ 'ଟାଇମ୍' ମାଗାଜିନ୍‌ରେ ''ଇତିହାସର ଶ୍ରେଷ୍ଠ ନେତାମାନେ କିଏ ?'' ଶୀର୍ଷକ ଉପରେ ବିଭିନ୍ନ ଐତିହାସିକ, ଲେଖକ, ଶିକ୍ଷାବିତ୍ ଓ ବୁଦ୍ଧିଜୀବୀମାନଙ୍କର ବିଚାର ପ୍ରକାଶ ପାଇଥିଲା । 'ଟାଇମ୍' ଏ ବିଷୟରେ ସେମାନଙ୍କର ମତାମତ ଆହ୍ୱାନ୍

---

(13) "Since there are roughly twice as many Christians as Moslems in the world, it may initially seem strange that Muhammad has been ranked higher than Jesus. There are two principal reasons for that decision.

First, Muhammad played a far more important role in the development of Islam than Jesus did in the development of Christianity. Although Jesus was responsible for the main ethical and moral precepts of Christianity (insofar as these differed from Judaism), St. Paul was the main developer of Christian theology, its principal proselytizer, and the author of a large portion of the New Testament. Muhammad, however, was responsible for both the theology of Islam and its main ethical and moral principles. In addition, he played the key role in proselytizing the new faith, and in establishing the religious practices of Islam."(Ibid.pp.38-39)

କରିଥିଲା । ଆମେରିକାର ଜଣେ ଐତିହାସିକ ତଥା ଚିକାଗୋ ବିଶ୍ୱବିଦ୍ୟାଳୟର ଅଧ୍ୟାପକ **ଉଇଲିୟମ୍ ଏମ୍.ସି. ନୀଲ୍** ନିଜର ମତାମତ ଦେଇ ଲେଖିଲେ—

> ''ଯଦି ପ୍ରଭାବକୁ ଆଧାର କରି ନେତା ଚୟନ କରାଯାଏ, ତେବେ ଆମକୁ ବିଶ୍ୱର ମହାନ୍ ଧର୍ମଦୂତ ଯୀଶୁ, ବୁଦ୍ଧ, ମୁହମ୍ମଦ ଏବଂ କନ୍‌ଫୁସିୟସ୍‌ଙ୍କ ନାମ ନେବାକୁ ହେବ ।''(14)

ଅବଶ୍ୟ ନୀଲ୍ ନିଜ ପସନ୍ଦ ସପକ୍ଷରେ କୌଣସି କାରଣ ବର୍ଣ୍ଣନା କରିନାହାନ୍ତି ।

ଆମେରିକାର ଜଣେ ଅବସରପ୍ରାପ୍ତ ଲେଫ୍ଟନାଣ୍ଟ ଜେନେରାଲ **ଜେମ୍ସ ଗେଭିନ୍** ନିଜର ବିଚାର ଉପସ୍ଥାପନ କରି ମହାମାନ୍ୟ ମୁହମ୍ମଦଙ୍କୁ ତାଙ୍କର ପ୍ରଥମ ପସନ୍ଦ ବୋଲି ବର୍ଣ୍ଣନା କଲେ—

> ''ଯୁଗ ଯୁଗ ଧରି ଯେଉଁ ଜନନାୟକମାନଙ୍କର ସର୍ବାଧିକ ପ୍ରଭାବ ରହିଛି, ମୋ ବିଚାରରେ ସେମାନେ ହେଲେ ମୁହମ୍ମଦ, ଯୀଶୁଖ୍ରୀଷ୍ଟ ବୋଧହୁଏ ଲେନିନ୍ ଏବଂ ସମ୍ଭବତଃ ମାଓ ।''(15)

ଗେଭିନ୍ ମଧ୍ୟ ବିଶେଷ କିଛି ଆଲୋଚନା କରିନାହାନ୍ତି । କିନ୍ତୁ ଚିକାଗୋ ବିଶ୍ୱବିଦ୍ୟାଳୟର ଅଧ୍ୟାପକ **ଜୁଲସ୍ ମେଶରମେନ୍** ନିଜର ପସନ୍ଦ ସହ ଏହାର କାରଣ ମଧ୍ୟ ଦର୍ଶାଇଛନ୍ତି । ସେ କୁହନ୍ତି ଯେ ଜଣେ ଭଲ ଜନନେତା ତିନୋଟି କାର୍ଯ୍ୟ କରୁଥିବା ଉଚିତ । ପ୍ରଥମତଃ ଜନକଲ୍ୟାଣମୂଳକ କାର୍ଯ୍ୟ । ନିଜର କଲ୍ୟାଣ ନୁହେଁ, ନିଜ ପାଇଁ କୋଠାବାଡ଼ି, ଗାଡ଼ିବଙ୍ଗଳା ବା ବ୍ୟାଙ୍କ୍‌ବାଲାନ୍ସ ନୁହେଁ, ବରଂ ଜନତାଙ୍କର ମୌଳିକ ଆବଶ୍ୟକତାଗୁଡ଼ିକ ପୂରଣ କରିବା ପାଇଁ ବିଧିବଦ୍ଧ ଭାବେ ବ୍ୟବସ୍ଥା କରିବା ଉଚିତ, ଯାହାଦ୍ୱାରା କେହି ଜୀବନର ସର୍ବନିମ୍ନ ଆବଶ୍ୟକତାରୁ ବଂଚିତ ନ ହୁଅନ୍ତୁ । ମହାମାନ୍ୟ ମୁହମ୍ମଦଙ୍କ

---

(14) **WILLIAM Mc NEILL: U.S. Historian (Chicago University), Time, July 15, 1974,** "If you measure leadership by impact, then you would have to name Jesus, Buddha, Mohammed, Confucius, the great prophets of the world."

(15) **JAMES GAVIN, Retd. U.S. Ltt. General, Time, July 15, 1974,** "Among leaders who have made the greatest impact through ages, I would consider Mohammed, Jesus Christ, may be Lenin, possibly Mao."

ପ୍ରଣୀତ ବିଧାନରେ ସମାଜର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବା ପାଇଁ ପର୍ଯ୍ୟାପ୍ତ ବ୍ୟବସ୍ଥା କରାଯାଇଥିବାର ସେ ଉପଲବ୍ଧି କରିଛନ୍ତି ।

ଦ୍ୱିତୀୟତଃ, ମେଶରମେନ୍‌ଙ୍କ ମତରେ ଜନତାଙ୍କର ଧନ-ଜୀବନର ସୁରକ୍ଷା ଜଣେ ଆଦର୍ଶ ଜନନାୟକର ପରମ କର୍ତ୍ତବ୍ୟ । ଏଥିପାଇଁ କଠୋର ନିୟମ ରହିବା ଉଚିତ ଏବଂ ଏହା କାର୍ଯ୍ୟକାରୀ ମଧ୍ୟ ହେବା ଉଚିତ, ଯାହାଫଳରେ ହତ୍ୟା, ଚୋରି, ଡକାୟତି ଆଦି ସବୁପ୍ରକାର ଅନ୍ୟାୟ ଅତ୍ୟାଚାରରୁ ସମାଜ ମୁକ୍ତ ରହିପାରିବ ଏବଂ ଲୋକଙ୍କର ଧନ-ଜୀବନ ବିପଦାପନ୍ନ ହେବନାହିଁ । ମହାମାନ୍ୟ ମୁହମ୍ମଦଙ୍କ ନିୟମରେ ବ୍ୟକ୍ତି ଓ ସମାଜ ପ୍ରତି କ୍ଷତିକାରକ ସମସ୍ତ ଆଚରଣଗୁଡ଼ିକ ସମ୍ପୂର୍ଣ୍ଣ ନିଷିଦ୍ଧ ରହିଛି । ସମାଜର ପ୍ରତ୍ୟେକ ବ୍ୟକ୍ତିର ଧନ-ଜୀବନ, ମାନ-ସମ୍ମାନ ଓ ଚରିତ୍ର ପ୍ରତି କ୍ଷତିକାରକ ସବୁ କର୍ମଗୁଡ଼ିକ କେବଳ ନିଷିଦ୍ଧ କରାଯାଇନାହିଁ, ଏଭଳି ଦୁଷ୍କର୍ମ ପାଇଁ କଠୋର ଦଣ୍ଡବ୍ୟବସ୍ଥା ମଧ୍ୟ କରାଯାଇଛି । ଏହି ନୀତିକୁ ଆଧାର କରି ସେ ଏକ ବିଶାଳ ସମାଜକୁ ଶୃଙ୍ଖଳିତ କରିବାକୁ ସମର୍ଥ ହେଲେ ।

ତୃତୀୟତଃ, ଜଣେ ଆଦର୍ଶ ନେତା ଜନତାଙ୍କର ଆଧ୍ୟାତ୍ମିକ ବିକାଶ ପାଇଁ ସେମାନଙ୍କୁ ଏକ ଧର୍ମୀୟ ବିଚାରଧାରା ଦେବା ଉଚିତ ବୋଲି ମେଶରମେନ୍ ମତ ଦିଅନ୍ତି । ଏହାର କାରଣ ହେଉଛି ଯେ ଧର୍ମ ହିଁ ମଣିଷକୁ ମଣିଷକରି ଗଢ଼େ, ତା' ଅନ୍ତରରେ ଈଶ୍ୱରଭକ୍ତି, ଦୟା, ପ୍ରେମ ଓ ପରୋପକାରର ବୀଜ ବପନ କରେ ଏବଂ ତା' ମଧ୍ୟରେ ଈଶ୍ୱରଙ୍କ ପ୍ରତି ଉତ୍ତରଦାୟିତ୍ୱବୋଧର ଭାବନାକୁ ଜୀବିତ ରଖେ । ଏହି ଈଶ୍ୱର ବିଶ୍ୱାସ ଏବଂ ତାଙ୍କ ପ୍ରତି ଆନୁଗତ୍ୟ ହିଁ ମଣିଷକୁ ଶୃଙ୍ଖଳିତ କରେ ଏବଂ ସମାଜରେ ଶାନ୍ତି ଆଣେ । ଆଧ୍ୟାତ୍ମିକ ସଚେତନତା ବିନା କେବଳ ଆଇନ୍‌କାନୁନ୍ ବା ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ବ୍ୟକ୍ତି ବା ସମାଜ ମଧ୍ୟରେ ଶୃଙ୍ଖଳା ଆସିବା ସମ୍ଭବ ନୁହେଁ । ଏହା ମେଶରମେନ୍ ଭଲ ଭାବରେ ଉପଲବ୍ଧି କରିପାରିଛନ୍ତି । ଆସନ୍ତୁ ଦେଖିବା ସେ କ'ଣ ମତାମତ ଦେଲେ—

> ''ନେତାମାନେ ତିନିଗୋଟି କାର୍ଯ୍ୟ ଅବଶ୍ୟ କରିବା ଉଚିତ— ଜନତାଙ୍କ କଲ୍ୟାଣ ପାଇଁ ପ୍ରବନ୍ଧ କରିବା, ସେମାନଙ୍କୁ ଏକ ସାମାଜିକ ସଙ୍ଗଠନ ଦେବା ଯାହାଦ୍ୱାରା ସେମାନେ ନିଜକୁ ଅପେକ୍ଷାକୃତ ସୁରକ୍ଷିତ ମନେକରିବେ ଏବଂ ସେମାନଙ୍କୁ ଗୋଟିଏ ଧର୍ମୀୟ ବିଚାରଧାରା ଦେବା । ପ୍ରଥମ ଦୃଷ୍ଟିକୋଣରୁ ପାଶ୍ଚର ଏବଂ ଶକଙ୍କ ପରି ବ୍ୟକ୍ତି

ନେତା ରୂପେ ପରିଗଣିତ ହୁଅନ୍ତି । ଗୋଟିଏ ପଟେ ମହାତ୍ମାଗାନ୍ଧୀ ଓ କନ୍‌ଫୁସିୟସ୍ ଏବଂ ଅନ୍ୟପଟେ ଆଲେକ୍‌ଜାଣ୍ଡାର୍ ସିଜର ଓ ହିଟଲର୍ ଦ୍ୱିତୀୟ ଦୃଷ୍ଟିକୋଣରୁ । ସମ୍ଭବତଃ ତୃତୀୟ ଦୃଷ୍ଟିକୋଣରୁ ନେତା ରୂପେ ଗଣ୍ୟ ହେବା ଉଚିତ । ମହାମାନ୍ୟ ଯୀଶୁ ଏବଂ ମହାତ୍ମା ବୁଦ୍ଧଙ୍କ ନେତୃତ୍ୱ କେବଳ ତୃତୀୟ ଦୃଷ୍ଟିକୋଣରୁ । ମୁହମ୍ମଦ ବୋଧହୁଏ ସବୁ ସମୟ ପାଇଁ ସର୍ବଶ୍ରେଷ୍ଠ ଜନନାୟକ ଯିଏକି ତିନୋଟିଯାକ କାର୍ଯ୍ୟ ଏକାସାଙ୍ଗେ ତୁଲାଇଛନ୍ତି । କିଛି କମ୍ ପରିମାଣରେ ମୋସେସ୍ ତାଙ୍କ ଭଳି କରିଛନ୍ତି ।''[16]

## ଏଡ୍‌ୱାର୍ଡ ଗୀବନ୍

ଐତିହାସିକ ଏଡ୍‌ୱାର୍ଡ ଗୀବନ୍ (୧୭୩୭-୧୭୯୪) ମହାମାନ୍ୟ ମୁହମ୍ମଦଙ୍କର ପନ୍ଥା ସବୁପ୍ରକାର ସନ୍ଦେହରୁ ଊର୍ଦ୍ଧ୍ୱରେ ବୋଲି ଘୋଷଣା କରି କୁହନ୍ତି—

''ମୁହମ୍ମଦଙ୍କ ନୀତି ସନ୍ଦେହ ଓ ଅସ୍ୱଷ୍ଟତାରୁ ଊର୍ଦ୍ଧ୍ୱରେ ଏବଂ କୁରଆନ୍ ଏକେଶ୍ୱରବାଦର ଏକ ଗୌରବମୟ ସାକ୍ଷୀ ।''[17]

ଇସ୍‌ଲାମର ବିଶୁଦ୍ଧ ବ୍ରହ୍ମତତ୍ତ୍ୱ ଗୀବନ୍‌ଙ୍କୁ ଆକୃଷ୍ଟ କରିଛି—

''ଉପାସ୍ୟଙ୍କର ବୌଦ୍ଧିକ ଛବି କେବେହେଲେ କୌଣସି ସାକାର ପ୍ରତିମା ଦ୍ୱାରା ଅସମ୍ମାନିତ ହୋଇନାହିଁ ଏବଂ ଈଶ୍ୱରଦୂତଙ୍କର

---

(16) **JULES MASSERMAN, U.S. Psychoanalyst :** Time, July 15, 1974, "Leaders must fulfill three functions—provide for the well-being of the led, provide a social organization in which people feel relatively secure, and provide them with one set of beliefs. People like Pasteur and Salk are leaders in the first sense. People like Gandhi and Confucius, on one hand, and Alexander, Caesar and Hitler on the other, are leaders in the second and perhaps in the third sense. Jesus and Buddha belong in the third category alone. Perhaps the greatest leader of all times was Mohammed, who combined all three functions. To a lesser degree Moses did the same."

(17) **EDWARD GIBBON, Life of Mahomet, London, 1881** : "The creed of Mahomet is free from suspicion or ambiguity; and the Koran is a glorious testimony to the unity of God." (p.75)

ସମ୍ମାନ କେବେବି ମାନବୀୟ ଗୁଣର ସୀମା ଲଂଘନ କରିନାହିଁ.... ।''(18)

ମହାମାନ୍ୟ ମୁହମ୍ମଦଙ୍କ ପ୍ରତିଭାର ପ୍ରଶଂସା କରି ଗୀବନ୍ କୁହନ୍ତି— ''ମୁହମ୍ମଦଙ୍କ ପ୍ରତିଭା ଆମର ଉଚ୍ଛ୍ୱସିତ ପ୍ରଶଂସାର ଯୋଗ୍ୟ, କିନ୍ତୁ ତାଙ୍କର ସଫଳତା ବୋଧହୁଏ ଆମ ପ୍ରଶଂସାକୁ ଗଭୀର ଭାବେ ଆକୃଷ୍ଟ କରିଛି ।''(19)

## ମେଜର ଆର୍ଥର ଗ୍ଲିନ୍ ଲିଓନାର୍ଡ଼

ମେଜର ଆର୍ଥର ଗ୍ଲିନ୍ ଲିଓନାର୍ଡ଼ ଇସ୍‌ଲାମର ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧ ସମ୍ପର୍କରେ ଗୋଟିଏ ପୁସ୍ତକ ଲେଖିଛନ୍ତି ଏବଂ ଏହି ପୁସ୍ତକଟି ଜଷ୍ଟିସ୍ ସୟଦ ଅମୀର ଅଲିଙ୍କ ମୁଖବନ୍ଧ ସହ ଲଣ୍ଡନରୁ ପ୍ରକାଶିତ ହୋଇଛି । ମହାମାନ୍ୟ ମୁହମ୍ମଦଙ୍କୁ ସେ ଜଣେ ମହାନ ତଥା ସଚ୍ଚୋଟ ବ୍ୟକ୍ତି ରୂପେ ବର୍ଣ୍ଣନା କରି ଲେଖିଛନ୍ତି—

''କେବଳ ଜଣେ ମହାନ ବ୍ୟକ୍ତି ନୁହଁନ୍ତି ବରଂ ସମଗ୍ର ମାନବ ଜଗତରେ ଜନ୍ମଲାଭ କରିଥିବା ମହାନ ଓ ପବିତ୍ରତମ ପୁରୁଷମାନଙ୍କ ମଧ୍ୟରେ ସେ ଅନ୍ୟତମ । କେବଳ ଜଣେ ଧର୍ମଦୂତ ଭାବରେ ମହାନ ନୁହନ୍ତି, ବରଂ ଜଣେ ଦେଶପ୍ରେମୀ ଓ ରାଷ୍ଟ୍ରନେତା ରୂପରେ ମଧ୍ୟ ସେ ମହାନ । ଜଣେ ଭୌତିକ ତଥା ଆଧ୍ୟାତ୍ମିକ ନିର୍ମାତା, ଯିଏ ଗଢ଼ିଦେଲେ ଗୋଟିଏ ମହାନ ଜାତି, ଏକ ବିଶାଳ ସାମ୍ରାଜ୍ୟ, ଆଉ ଏକ ମହାନ ଧର୍ମ । ଅଧିକନ୍ତୁ ଏହା ସତ୍ୟ, କାରଣ ସେ ସଚ୍ଚୋଟ ଥିଲେ ନିଜ ପ୍ରତି, ନିଜ ଲୋକମାନଙ୍କ ପ୍ରତି, ଆଉ ନିଜ ଈଶ୍ୱରଙ୍କ ପ୍ରତି ।''(20)

---

(18) "The intellectual image of the Deity has never been degraded by any visible idol; the honors of the prophet have never transgressed the measure of human virtue ...."(Ibid.p.232)

(19) "The talents of Mahomet entitle him to our applause, but his success has perhaps too strongly attracted our admiration." (Ibid.p.229)

(20) **MAJOR ARTHUR GLYN LEONARD, Islam : Her Moral And Spiritual Value, London, 1909 :** "A man not only great, but one of

''ତାଙ୍କୁ ଓ ତାଙ୍କ କାର୍ଯ୍ୟକୁ ପ୍ରତ୍ୟେକ ଦିଗରୁ ବିଚାର କଲେ ଜଣାଯାଏ ଯେ ମୁହମ୍ମଦ କେବଳ ଜଣେ ବୀର ଧର୍ମଦୂତ ନଥିଲେ, ସେ ଥିଲେ ଏହାଠାରୁ ଯଥେଷ୍ଟ ଅଧିକ । ଜଣେ ରାଜା ଏବଂ ଜଣେ ଜନନାୟକ ତଥା ସେମାନଙ୍କର ଶାସକ ଏବଂ ବିଚାରକ ମଧ୍ୟ । ତାଙ୍କର ମୂଲ୍ୟ କେତେ ଯଦି ଆମେ ବିଚାର କରୁ, ତାଙ୍କର କାର୍ଯ୍ୟକଳାପ, ତାଙ୍କ ଦୁର୍ଲଭ ଅଧ୍ୟବସାୟର ପରିପକ୍ୱ ଫଳ ଏବଂ ଗୋଟିଏ ହାତରେ କୁରଆନ ଆଉ ଅନ୍ୟ ହାତରେ ଇସ୍‌ଲାମର ଚର୍ଚ୍ଚରେ ସେ ଛାଡ଼ି ଯାଇଥିବା ଦୃଢ଼ ଆଧ୍ୟାତ୍ମିକ ଶକ୍ତି ଦ୍ୱାରା, ତେବେ ଆମେ ଅବଶ୍ୟ ତାଙ୍କୁ ଜଣେ ଅସାଧାରଣ ଓ ମହାନ ମଣିଷ ରୂପେ ଘୋଷଣା କରିବୁ । ଏମିତି ଜଣେ ବ୍ୟକ୍ତି, ଯଦି ତାଙ୍କର ପ୍ରକୃତ ମୂଲ୍ୟ କେହି ବୁଝିପାରେ, ତେବେ ସେ ଇତିହାସର ଅତ୍ୟନ୍ତ ତେଜସ୍ୱୀ ବୀର-ଶ୍ରେଣୀର ଜଣେ ରାଜନୈତିକ ଓ ଧର୍ମସଂସ୍କାରକ ରୂପେ ଦେଖାଯିବେ । ଏହି ବ୍ୟକ୍ତିଜଣକ ସେତେବେଳେ ବର୍ତ୍ତମାନ ଅପେକ୍ଷା ଆହୁରି ଅଧିକ ସମ୍ମାନିତ ହେବେ, ଯେତେବେଳେ ମାନବଜଗତ ଗୋଷ୍ଠୀବାଦୀ ଅପେକ୍ଷା ଅଧିକ ସୁସଙ୍ଗତ ଭାବେ ମାନବବାଦୀ ହୋଇଯିବ । ବାସ୍ତବରେ ମୁହମ୍ମଦ ଜଣେ ଅତି ମହାନ ବ୍ୟକ୍ତି ଥିଲେ ।''[21]

---

the greatest i.e. truest men that Humanity has ever produced. Great, i.e. not simply as a prophet, but as a patriot and a statesman : a material as well as a spiritual builder who constructed a great nation, a greater empire, and more even than all these, a still greater Faith. True, moreover, because he was true to himself, to his people, and above all to his God." (p.21)

(21) "Looking at him and his work from every aspect, Mohammed was not merely a heroic prophet. He was much more. A king and a leader of men. A ruler and a judge over them. If we are to judge of him, to take him for what he is worth, by his work the rich ripe fruit of his rare and strenuous effort the Koran on the one hand, and, on the other, the mighty spiritual force he has left behind him in the Church of Islam, we must pronounce him to have been a great and remarkable man. A man who, when his true value is understood and appreciated, will stand out in history as a political and religious reformer

ଧର୍ମରେ ସେ ହିଂସାକୁ ଅନୁମୋଦନ କରୁନଥିଲେ ବୋଲି ମତଦେଇ ଲିଓନାର୍ଡ କୁହନ୍ତି—

''ଯଦି ମଣିଷ ଧରାପୃଷ୍ଠରେ ଈଶ୍ୱରଙ୍କୁ ପାଇଛି, ଆଉ ଯଦି କୌଣସି ମଣିଷ ମହତ ଏବଂ ମହାନ ଉଦ୍ଦେଶ୍ୟ ପାଇଁ ଈଶ୍ୱରଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଛି, ତେବେ ନିଶ୍ଚିତ ରୂପେ ସେହି ବ୍ୟକ୍ତି ଜଣକ ହେଉଛନ୍ତି ଆରବର ଧର୍ମଦୂତ ।''[22]

## ସାର୍ ଜର୍ଜ ବର୍ଣ୍ଣାଡ ଶ'

ନୋବେଲ ପୁରସ୍କାର ବିଜେତା ଦାର୍ଶନିକ ତଥା ପ୍ରସିଦ୍ଧ ଲେଖକ ଜର୍ଜ ବର୍ଣ୍ଣାଡ ଶ' (୧୮୫୬-୧୯୫୦) ନିଜ ପୁସ୍ତକ 'ଦି ଜେନୁଇନ୍ ଇସ୍‌ଲାମ'ରେ ମହାମାନ୍ୟ ମୁହମ୍ମଦଙ୍କ ବିଷୟରେ କୁହନ୍ତି—

''ମୁଁ ତାଙ୍କୁ ଅଧ୍ୟୟନ କରିଛି—ଅଦ୍ଭୁତ ମଣିଷ । ମୋ ମତରେ ସେ ଖ୍ରୀଷ୍ଟୀୟାନ ବିରୋଧୀ ମଧ୍ୟ ନୁହନ୍ତି, ସୁତରାଂ ତାଙ୍କୁ ଅବଶ୍ୟ ମାନବଜାତିର ଉଦ୍ଧାରକର୍ତ୍ତା କୁହାଯିବା ଉଚିତ ।''[23]

ଏହି ଆରବୀୟ ମହାପୁରୁଷଙ୍କ ମଧ୍ୟରେ ସେ ଅଦ୍ଭୁତ ସାମର୍ଥ୍ୟର ସନ୍ଧାନ ପାଇଥିଲେ । ତେଣୁ ତାଙ୍କ ପ୍ରତିଭାର ଉଚ୍ଛ୍ୱସିତ ପ୍ରଶଂସା କରି ବର୍ଣ୍ଣାଡଶ' କୁହନ୍ତି—

''ଯଦି ତାଙ୍କ ଭଳି ଜଣେ ବ୍ୟକ୍ତି ଆଧୁନିକ ବିଶ୍ୱର ନିରଙ୍କୁଶ ଶାସନଭାର ଗ୍ରହଣ କରନ୍ତି, ତେବେ ବିଶ୍ୱସମସ୍ୟାଗୁଡ଼ିକର ସେ

---

of a virile and heroic type. A man who will be regarded in even a greater light than he now is, when humanity shall have become less denominational and more rationally humanitarian. In reality Mohammed was an ultra great man." (Ibid.pp.108-109)

[22] "If ever man on this earth found God, if ever man devoted his life to God's service with a good and great motive, it is certain that the Prophet of Arabia was that man." (Ibid.pp.18-19)

[23] **SIR GEORGE BERNARD SHAW, The Genuine Islam :** "I have studied him - the wonderful man and in my opinion far from being an anti-Christ, he must be called the Savior of Humanity."

ଏଭଳି ସମାଧାନ କରନ୍ତା ଯେ, ଯେଉଁ ସୁଖଶାନ୍ତିର ବର୍ତ୍ତମାନ ପ୍ରୟୋଜନ ଅଛି, ତାହା ଆଣିପାରନ୍ତା ।''[24]

## ଜନ ଡାଭେନ୍ ପୋର୍ଟ

ଜନ ଡାଭେନ୍ ପୋର୍ଟ ମହାମାନ୍ୟ ମୁହମ୍ମଦଙ୍କ ପ୍ରତି କରାଯାଇଥିବା ଆରୋପଗୁଡ଼ିକର ଖଣ୍ଡନ କରି ପୁସ୍ତକଟିଏ ଲେଖିଛନ୍ତି ଏବଂ ଏହି ପୁସ୍ତକଟି ୧୮୬୯ ମସିହାରେ ଲଣ୍ଡନରୁ ପ୍ରକାଶିତ ହୋଇଛି । ମହାମାନ୍ୟ ମୁହମ୍ମଦଙ୍କ ବ୍ୟବହାର ଓ ଚରିତ୍ର ଉପରେ ମନ୍ତବ୍ୟ ଦେଇ ସେ କୁହନ୍ତି—

''ବଡ଼ମାନଙ୍କ ପ୍ରତି ତାଙ୍କର ବିନମ୍ରତା, ବିନୀତମାନଙ୍କ ପ୍ରତି ଆନ୍ତରିକ ଭାବ ଏବଂ ଦାମ୍ଭିକମାନଙ୍କ ପ୍ରତି ଶାନ୍ତ ଓ ମର୍ଯ୍ୟାଦାପୂର୍ଣ୍ଣ ବ୍ୟବହାର ତାଙ୍କ ପାଇଁ ସମ୍ମାନ, ପ୍ରଶଂସା ଓ ସାଦର ସମର୍ଥନ ଆଣି ଦେଇଥିଲା... ସେଇଭଳି ମୁହମ୍ମଦଙ୍କ ନୀତି ସନ୍ଦେହ ଓ ଅସ୍ପଷ୍ଟତାରୁ ଊର୍ଦ୍ଧ୍ୱରେ ଥିଲା ।''[25]

ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ସମ୍ପର୍କରେ ଡାଭେନ୍‌ପୋର୍ଟ କୁହନ୍ତି—

''ଜଣେ ସାଧାରଣ ମଣିଷ ମୁହମ୍ମଦ ନିଜ ପରିବାର ଦୃଷ୍ଟିରେ ମଧ୍ୟ ଈଶ୍ୱରଦୂତ ରୂପେ ମାନ୍ୟତା ଲାଭ କରିଥିଲେ । ଜଣେ ସରଳ ଆରବୀୟ ହୋଇ ସୁଦ୍ଧା ନିଜ ଦେଶର ବିଭ୍ରାନ୍ତ, ବୁଭୁକ୍ଷିତ ଓ ନଗ୍ନ ସମ୍ପ୍ରଦାୟଗୁଡ଼ିକୁ ଗୋଟିଏ ସଂସର୍ଗ ତଥା ଅନୁଗତ ସଂଘ ମାଧ୍ୟମରେ ଏକତ୍ରିତ କରି ବିଶ୍ୱ ଜନସମାଜରେ ସେମାନଙ୍କୁ ଏକ ନୂତନ ପରିଚୟ ଓ ନୂତନ ଚରିତ୍ର ଦେଇ ଉପସ୍ଥାପିତ

---

[24] "If a man like Mohamed were to assume the dictatorship of the modern world he would succeed in solving its problems in a way that would bring it the much needed peace and happiness."("The Choice" Ahmed Deedat, KSA, 1993, Vol.I p.117 and p.25)

[25] **John Davenport, An Apology for Mohammed and the Koran, London, 1869 :** "His politeness to the great, his affability to the humble, and his dignified bearing to the presumptuous, procured him respect, admiration and applause…(p.52) Mohammed's creed was likewise free from suspicion and ambiguity….(p.73)

କରିପାରିଥିଲେ । ତିରିଶ ବର୍ଷରୁ କମ୍ ସମୟ ମଧ୍ୟରେ ଏହି ବ୍ୟବସ୍ଥା କନ୍‌ଷ୍ଟାନ୍‌ଟିନୋପଲ୍‌ର ସମ୍ରାଟମାନଙ୍କୁ ପରାଜିତ କରିଥିଲା, ପାରସ୍ୟର ସମ୍ରାଟଙ୍କୁ ଗାଦିଚ୍ୟୁତ କରିଥିଲା, ସିରିଆ, ମେସୋପଟାମିୟା ଓ ଇଜିପ୍ଟକୁ ମଧ୍ୟ ବଶୀଭୂତ କରିନେଇ ଥିଲା ।''[26]

କାର୍ଲାଇଲଙ୍କ ମତକୁ ଦୃଢ଼ ସମର୍ଥନ କରି ଡାଭେନ୍‌ପୋର୍ଟ କୁହନ୍ତି—

''ଏହି ବୀର ଈଶ୍ୱରଦୂତଙ୍କ ସମ୍ପର୍କରେ ଥୋମାସ୍ କାର୍ଲାଇଲ୍‌ଙ୍କ ଦୃଷ୍ଟିଭଙ୍ଗୀ ଏକବାର ଖାଣ୍ଟି ଆଉ ଯୁକ୍ତସଙ୍ଗତ ଏବଂ ଏଠାରେ ଉଲ୍ଲେଖଯୋଗ୍ୟ—ସେଇ ଜ୍ୟୋର୍ତିମୟ କୃଷ୍ଣ ନୟନଧାରୀ ମରୁପ୍ରାନ୍ତରର ହୃଦୟବାନ୍ ସନ୍ତାନର ସଦା ଉନ୍ମୁକ୍ତ ଥିବା ହୃଦୟ ମଧ୍ୟରେ ଉଚ୍ଚାଭିଳାଷ ନୁହେଁ, କିଛି ଅନ୍ୟ ଚିନ୍ତା ଥିଲା । ସେ ଥିଲେ ଜଣେ ଶାନ୍ତ ମହାନ ଆତ୍ମା ଏବଂ ସେଇମାନଙ୍କ ମଧ୍ୟରୁ ଜଣେ ଥିଲେ ଯେଉଁମାନେ କେବଳ ସତ୍ୟନିଷ୍ଠ ହେବାଛଡ଼ା ଆଉ କିଛି ହୋଇପାରନ୍ତି ନାହିଁ, ଯାହାଙ୍କୁ ନିଷ୍ଠାବାନ ରୂପେ ପ୍ରକୃତି ନିଯୁକ୍ତ କରିଛି ।''[27]

---

[26] "Mohammed, a private man, made himself to be looked upon as a prophet by his own family. Mohammed, a simple Arab, united the distracted, scanty, naked and hungry tribes of his country into one compact and obedient body, and presented them with new attributes and a new character among the people of the earth. In less than thirty years, this system defeated the Emperor of Constantinople, overthrew the Kings of Persia, subdued Syria, Mesopotamia, Egypt…"(Ibid.pp.54-55)

[27] "The view taken by Thomas Carlyle of this hero-prophet is too original, just and striking to be here omitted :- "The deep-hearted son of the wilderness" writes he, "with his beaming black eyes, and open, social, deep soul, had other thoughts in him than ambition. A silent, great soul, he was one of those who cannot but be in earnest; whom Nature herself has appointed to be sincere."(Ibid.pp.53-54)

## ଗଡ଼ଫ୍ରେ ହିଗିନ୍ସ୍

ଐତିହାସିକ ଗଡ଼ଫ୍ରେ ହିଗିନ୍ସ୍ (୧୭୭୨-୧୮୩୩) ଅତି ଦୁଃଖପ୍ରକାଶ କରି କୁହନ୍ତି—

''ଦୁର୍ଭାଗ୍ୟର କଥା, ଅନେକ ଧାର୍ମିକ ବ୍ୟକ୍ତି ନିଜର ପଡୋଶୀ ଧର୍ମର ପ୍ରତିଷ୍ଠାତାଙ୍କ ଚରିତ୍ରକୁ ଧକ୍କା ଦେଇ ନିଜ ଧର୍ମର ଉନ୍ନତି କରୁଛନ୍ତି ବୋଲି ମନେ କରନ୍ତି... । ପ୍ରକୃତ ଖ୍ରୀଷ୍ଟଧର୍ମ ଏଭଳି ପ୍ରତିରକ୍ଷା ଆବଶ୍ୟକ କରେନାହିଁ । ଯଦିଓ ଅନ୍ୟ ମଣିଷମାନଙ୍କ ପରି ମୁହମ୍ମଦଙ୍କର ଦୋଷତ୍ରୁଟି ଥିଲା, ତଥାପି ତାଙ୍କ ଚରିତ୍ର ବିଷୟରେ ଯେତେ ଅଧିକ ମତାମତ ସଂଗ୍ରହ କରାଯିବ, ସେତେ ସ୍ପଷ୍ଟ ରୂପେ ସେ ଜଣେ ଅତ୍ୟନ୍ତ ମହାନ୍ ପୁରୁଷ ରୂପେ ଉଭା ହେବେ, ଜଣେ ବୀର, ଜଣେ ଦାର୍ଶନିକ, ଆଉ ଜଣେ ଖ୍ରୀଷ୍ଟିୟାନ ରୂପରେ; ଏବଂ ପ୍ରକୃତରେ ସେ ଜଣେ ଖ୍ରୀଷ୍ଟିୟାନ୍ ଥିଲେ, କାରଣ ଯୀଶୁଙ୍କର ଦିବ୍ୟ ମିଶନ୍ ଓ ତାଙ୍କ ନୀତିଗୁଡ଼ିକର ସତ୍ୟତାରେ ବିଶ୍ୱାସ ରଖିବା ପାଇଁ ସେ ଶିକ୍ଷା ଦେଉଥିଲେ ।''[28]

ମହାମାନ୍ୟ ମୁହମ୍ମଦଙ୍କୁ ସମର୍ଥନ କରି ଲେଖିଥିବା ପୁସ୍ତକରେ ସେ କୁହନ୍ତି ଯେ, ସମ୍ରାଟ ନେପୋଲିୟନଙ୍କର ଇସ୍‌ଲାମ ବିଷୟରେ ଧାରଣା ତାଙ୍କ ଚିନ୍ତାଧାରା ସହିତ ସମାନ ଥିଲା—

---

[28] **GODFRAY HIGGINS Esq.** “It is unfortunate that many religious persons should imagine that they are promoting their own religion by running down the character of the founders of those of their neighbours... genuine Christianity requires no such defences,…though Mohamed was liable to faults, like every other human being, yet that the closer his character is canvassed, the clearer it will appear that he was as very great man, both considered as a hero, a philosopher and a Christian, the latter of which he really was, as he professed to believe in the divine mission of Jesus Christ, and in the truth of the doctrines taught by him. (Gentlemen’s Magazine, C[1830):112)” (Source : Clinton Bennett, Victorian Images of Islam, 1992, London, p.12)

''ମୁଁ ଭାବୁଛି ମୁହମ୍ମଦଙ୍କ ସମ୍ପର୍କରେ ମହାନ ନେପୋଲିୟନ୍ ଯେଉଁ ମତପୋଷଣ କରିଥିଲେ, ତାହା ଭାରି ଉତ୍ସାହଜନକ ଆଉ ମୁଁ ତାକୁ ଏଠାରେ ଉଲ୍ଲେଖ କରିବାର ଆଗ୍ରହକୁ ରୋକିପାରୁ ନାହିଁ । ଏହାର କାରଣ ନୁହେଁ ଯେ ତାଙ୍କ ମତ ମୋ ଚିନ୍ତାଧାରା ସହ ମେଳ ଖାଉଛି, ବରଂ ମୁଁ ଏକଥା ଜାଣିବା ପୂର୍ବରୁ ଯାହା ଲେଖିଦେଇଥିଲି ତା' ସହିତ ସମ୍ରାଟଙ୍କର ମତାମତର ସମାନତା ରହିଛି । ନେପୋଲିୟନ୍ କେଉଁ ସୂତ୍ରରୁ କୁରଆନ୍‌ର ତାରିଖ ସମ୍ପର୍କରେ ଏକ ଜଣାଶୁଣା କଥା କହିଛନ୍ତି ମୁଁ ଜାଣେନା । କିନ୍ତୁ ସମ୍ରାଟ ଇତିହାସର ସତ୍ୟକୁ ବିଜ୍ଞାପିତ କରି ମୁହମ୍ମଦଙ୍କ ପ୍ରତି କରାଯାଇଥିବା ସବୁ ଆରୋପଗୁଡ଼ିକୁ ଅବିଶ୍ୱାସ କରୁଥିବାର ଘୋଷଣା କରିଥିଲେ ।''(29)

ମହାମାନ୍ୟ ମୁହମ୍ମଦଙ୍କ ଚରିତ୍ର ଉପରେ ମନ୍ତବ୍ୟ ଦେଇ ହିଗିନ୍‌ସ୍ କୁହନ୍ତି—

''ତାଙ୍କର ଚରିତ୍ର ଅତି ଉତ୍ତମ ଥିଲା ।''(30)

## ମାନବେନ୍ଦ୍ର ନାଥ ରାୟ

ଭାରତୀୟ ଐତିହାସିକ ଏମ୍.ଏନ୍. ରାୟ (୧୮୮୭-୧୯୫୪) କୁହନ୍ତି—

''ଇସ୍‌ଲାମର ପ୍ରତିଷ୍ଠାତାଙ୍କ ଚରିତ୍ର ଚିତ୍ରଣ କରାଯାଇଛି ଯେ, ସେହି ବ୍ୟକ୍ତି ଜଣକ ମାନବଜାତିକୁ ସମସ୍ତଙ୍କ ଅପେକ୍ଷା ଅଧିକ

---

(29) **An Apology for the Life and Character of the Celebrated Prophet of Arabia called Mahomed, or the Illustrious, London, 1829 :** "I conceive that the opinion which the great Napoleon entertained of Mohamed, must be interesting; and I cannot resist the pleasure of recording it, as it not only in some measure agrees with what I thought, but with what I had written, before I saw it. I know not the authority for the date of the Koran which Napoleon seems to speak of as an acknowledged, well-known fact. "The Emperor adverting to the truth of history, expressed his disbelief of all that was attributed to Mahomet."(p.65)

(30) "His morality is allowed to be excellent." (Ibid.p.28)

ପ୍ରଭାବିତ କରିଛନ୍ତି । (ଡ୍ରାପର, ୟୁରୋପର ବୌଦ୍ଧିକ ବିକାଶର ଇତିହାସ, ପ୍ରଥମ ଖଣ୍ଡ, ପୃ-୩୨୯)''[31]

ମହାମାନ୍ୟ ମୁହମ୍ମଦ ଜଣେ ମହାନ ଈଶ୍ୱରଦୂତ ରୂପେ ମାନ୍ୟତା ପାଇବା ଉଚିତ ବୋଲି ମତଦେଇ ଐତିହାସିକ ରାୟ କୁହନ୍ତି—

''ପ୍ରତ୍ୟେକ ଈଶ୍ୱରଦୂତ ନିଜର ଯଥାର୍ଥ ଦାବୀକୁ ସିଦ୍ଧ କରିବାପାଇଁ ଚମତ୍କାରିତା ପ୍ରଦର୍ଶନ କରନ୍ତି । ସେ ଦୃଷ୍ଟିରୁ ମୁହମ୍ମଦ ଯେତେଦୂର ସମ୍ଭବ ତାଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଈଶ୍ୱରଦୂତମାନଙ୍କ ମଧ୍ୟରେ ସବୁଠାରୁ ମହାନ ରୂପେ ମାନ୍ୟତା ପାଇବା ଉଚିତ । ଇସ୍‌ଲାମର ପ୍ରସାର ହିଁ ସବୁ ଚମତ୍କାରଗୁଡ଼ିକ ଅପେକ୍ଷା ବଡ଼ ଚମତ୍କାର ।''[32]

## ମାର୍କସ୍ ଡଡ୍‌ସ୍

ମାର୍କସ୍ ଡଡ୍‌ସ୍ (୧୮୩୪-୧୯୦୦) ହେଉଛନ୍ତି ବାଇବଲ୍‌ର ଜଣେ ବିଦ୍ୱାନ୍ ଏବଂ ସେ ଏଡିନ୍‌ବର୍ଗରେ ନ୍ୟୁଟେଷ୍ଟାମେଣ୍ଟ୍‌ର ଅଧାପକ ରହିଆସିଛନ୍ତି । 'ମୁହମ୍ମଦ, ବୁଦ୍ଧ ଏଣ୍ଡ୍ କ୍ରାଏଷ୍ଟ' ନାମକ ସେ ଏକ ପୁସ୍ତକ ଲେଖିଛନ୍ତି, ଯାହା ୧୮୭୭ ମସିହାରେ ଲଣ୍ଡନରୁ ପ୍ରକାଶିତ ହୋଇଛି । ବହିଟିରେ ସେ ମହାମାନ୍ୟ ମୁହମ୍ମଦଙ୍କର ଉଜ୍ଜ୍ୱଳ ଚରିତ୍ରର ବର୍ଣ୍ଣନା କରି ଲେଖିଛନ୍ତି—

''ଦୟାଶୀଳ, ଅହଂକାରହୀନ, ଧୈର୍ଯ୍ୟବାନ ଏବଂ ସେବକମାନଙ୍କ ପ୍ରତି ସେ ଥିଲେ ଅତ୍ୟନ୍ତ ଉଦାର, ଅପରିଚିତମାନଙ୍କ ପାଇଁ ଆକର୍ଷଣୀୟ, ଯିଏ ନିଜ ଶିଷ୍ୟମାନଙ୍କଠାରୁ ଭାରି ଆଦର ପାଉଥିଲେ...... କୌଣସି ଭିକ୍ଷାକାରୀକୁ 'ନା' କହିବା ତାଙ୍କ ପକ୍ଷେ ପ୍ରାୟ ଅସମ୍ଭବ ଥିଲା ଏବଂ ଅତି ସାଧାରଣ ଲୋକଙ୍କର

---

[31] **"M. N. ROY, The Historical Role Of Islam, Bombay, 1938 :** THE founder of Islam has been characterised as "the man who, of all men, has exercised the greatest influence upon the human race. (Draper, "History of the Intellectual Development of Europe," Vol. I, p. 329). (p.57)"

[32] "Every prophet establishes his pretension by the performance of miracles. On that token, Mohammad must be recognised as by far the greatest of all prophets, before or after him: The expansion of Islam is the most miraculous of all miracles. (Ibid.p.5)

ନିମନ୍ତ୍ରଣ ବା ମାମୁଲି ଉପହାରକୁ ମଧ୍ୟ ଗ୍ରହଣ କରିବାକୁ ସେ କେବେହେଲେ କୁଣ୍ଠାବୋଧ କରୁ ନଥିଲେ ।''[33]

ତାଙ୍କ ସଚ୍ଚୋଟତାର ପ୍ରମାଣ ଉପସ୍ଥାପନ କରି ଡଡ୍‌ସ୍ କୁହନ୍ତି— ''ତାଙ୍କ ସଚ୍ଚୋଟତାର ଜ୍ୱଳନ୍ତ ପ୍ରମାଣ ହେଉଛି ଏହି ଯେ ତାଙ୍କର ପ୍ରଥମ ଓ ଅତି ବିଶ୍ୱସ୍ତ ଶିଷ୍ୟମାନେ ଥିଲେ ତାଙ୍କ ନିଜ ଘରଲୋକ ତଥା ତାଙ୍କ ପରିଚିତ ଲୋକ, ଯେଉଁମାନେ ସବୁ ଅବସ୍ଥାରେ ତାଙ୍କୁ ଟିକିନିଖି ଭାବରେ ପରୀକ୍ଷା କରିଥିଲେ । ତାଙ୍କ ପତ୍ନୀ, ସେବକ, ପୁତୁରା ଓ ଶ୍ୱଶୁର—ଏମାନେ ଚରିତ୍ରବାନ ଥିଲେ ଏବଂ ସମାଜ ମଧ୍ୟରେ ସେମାନଙ୍କର ଏକ ନିର୍ଦ୍ଦିଷ୍ଟ ସ୍ଥାନ ଥିଲା ।''[34]

## ସାମୁଏଲ ଜି. ଗୁଡ୍‌ରିଚ

ସାମୁଏଲ ଜି. ଗୁଡ୍‌ରିଚ 'ପ୍ରାଚୀନ କାଳର ପ୍ରସିଦ୍ଧ ବ୍ୟକ୍ତି' ନାମକ ତାଙ୍କ ପୁସ୍ତକରେ କନ୍‌ଫୁସିୟସ୍ ଓ ମହାମାନ୍ୟ ମୁହମ୍ମଦଙ୍କୁ ବିଶ୍ୱର ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତି ମତବ୍ୟକ୍ତ କରି କହିଛନ୍ତି—

''ବୋଧହୁଏ ଚାଇନିଜ୍ ଦାର୍ଶନିକ କନ୍‌ଫୁସିୟସ୍‌ଙ୍କୁ ଛାଡ଼ିଦେଲେ ମାନବଜଗତର ବିଚାରଧାରାକୁ ଅନ୍ୟ ଯେକୌଣସି ଲୋକ ଅପେକ୍ଷା ଏହି ବ୍ୟକ୍ତି ସର୍ବାଧିକ ପ୍ରଭାବିତ କରିଥିଲେ, ଯିଏକି ଆରବର ମକ୍କାରେ ୫୭୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ।''[35]

---

[33] **MARCUS DODS, D.D, Mohammed, Buddha And Christ, London,1877** : "He was gracious, unassuming, most patient and kindly to his slaves, adored by his followers, captivating to strangers……He found it almost impossible to say " No " to any petitioner, and he never declined the invitation or small offering even of the meanest of the people." (p.90)

[34] "It is a striking proof of his sincerity that his earliest and most devoted disciples were those of his own household, and his familiars, who had known him in all circumstances and scanned him in all moods his wife, his slave, his cousin, his father-in-law the latter themselves men of character and position." (Ibid.p.21)

[35] **Samuel G. Goodrich, Famous Men of Ancient Times, Samuel, Boston, 1852 :** "This individual, who has exercised a

## ଷ୍ଟେନ୍‌ଲି ଲେନ୍‌ପୁଲ

ଷ୍ଟେନ୍‌ଲି ଲେନ୍‌ପୁଲ (୧୮୫୪-୧୯୩୧) ଜଣେ ଐତିହାସିକ ତଥା ଡବଲିନ୍ ବିଶ୍ୱବିଦ୍ୟାଳୟର ଆରବିକ ଷ୍ଟଡିଜ୍‌ର ପ୍ରଫେସର । ମହାମାନ୍ୟ ମୁହମ୍ମଦଙ୍କର ବିନମ୍ରତା ଓ ସତ୍ୟନିଷ୍ଠା ତାଙ୍କୁ ବିସ୍ମିତ କରିଛି । ସେ କୁହନ୍ତି—

> ‘‘ଆଶ୍ଚର୍ଯ୍ୟ ! ନିଜର ଲୋଭନୀୟ କାର୍ଯ୍ୟଧାରା ସହିତ ତାଙ୍କର ବିନମ୍ରତା କେତେ ମହାନ ! ଲୋକମାନଙ୍କ ଦ୍ୱାରା ତାଙ୍କ ଉପରେ ଲଦି ଦିଆଯାଉଥିବା ଈଶ୍ୱରୀୟ ଗୁଣଗୁଡ଼ିକପାଇଁ ସେ କିଭଳି ନିଜକୁ ଅଯୋଗ୍ୟ ମନେ କରୁଥିଲେ । ତାଙ୍କର ସମ୍ପୂର୍ଣ୍ଣ ଜୀବନ ସତ୍ୟ ପ୍ରତି ଆନୁଗତ୍ୟର ଏକ ଦୀର୍ଘ ବିତର୍କ ଥିଲା । ତାଙ୍କର ଉପାସକମାନଙ୍କ ପାଇଁ ତାଙ୍କ ନିକଟରେ ସଦାବେଳେ ଗୋଟିଏ ଉତ୍ତର ଥିଲା—ମୁଁ ଜଣେ ମଣିଷ ମାତ୍ର । ଜଣେ ମଣିଷଠାରୁ ଅଧିକ କିଛି ନୁହେଁ ।
>
> ଆଇଶା ପଚାରିଲେ—କ’ଣ ଈଶ୍ୱରଙ୍କ କୃପା ବିନା କେହି ସ୍ୱର୍ଗଲାଭ କରିପାରିବ ନାହିଁ ?
>
> ସେ ଉତ୍ତର ଦେଲେ—ନା, କେହି, ନୁହେଁ ।
>
> —କ’ଣ ଆପଣ ମଧ୍ୟ ନିଜ ଯୋଗ୍ୟତା ଭିତ୍ତିରେ ବୈକୁଣ୍ଠ ପ୍ରାପ୍ତି କରିପାରିବେ ନାହିଁ ?—ପଚାରିଲେ ଆଇଶା ।
>
> —‘ଯଦି ପରମେଶ୍ୱର ମୋ ପ୍ରତି କୃପା ନକରନ୍ତି, ତେବେ ମୁଁ ମଧ୍ୟ ସ୍ୱର୍ଗରେ ପ୍ରବେଶ କରିପାରିବି ନାହିଁ ।’ ଉତ୍ତର ଦେଲେ ମୁହମ୍ମଦ ।’’[36]

---

greater influence upon the opinions of mankind than any other human being, save, perhaps, the Chinese philosopher, Confucius, was born at Mecca, in Arabia, A.D. 570.” (p.7)

[36] **STANLEY LANE-POOLE, Studies In A Mosque, London, 1883 :** It is wonderful, with his temptations, how great a humility was ever his, how little he assumed of all the god-like attributes men forced upon him. His whole life is one long argument for his loyalty to truth. He had but one answer for his worshippers, “ I am no more than a

ଥୋମାସ୍ କାର୍ଲାଇଲ ମୁହମ୍ମଦଙ୍କୁ ଜଣେ 'ବୀର ଈଶ୍ୱରଦୂତ' ରୂପେ ପସନ୍ଦ କରି ଯଥାର୍ଥରେ ଠିକ୍ କରିଛନ୍ତି ବୋଲି ମତଦେଇ ଲେନ୍‌ପୁଲ କୁହନ୍ତି—

''କାର୍ଲାଇଲ ତାଙ୍କୁ 'ହିରୋ-ଈଶ୍ୱରଦୂତ' ରୂପେ ବାଛି ଖୁବ୍ ବଢ଼ିଆ କଲେ । ମୁହମ୍ମଦଙ୍କ ଅପେକ୍ଷା ଅଧିକ ଶୁଦ୍ଧ ଓ ଅଭିଳାଷସମ୍ପନ୍ନ ବ୍ୟକ୍ତି ଥାଇପାରନ୍ତି, କିନ୍ତୁ ଏପରି କୌଣସି ବ୍ୟକ୍ତି ନିଜ ଲକ୍ଷର ଭାବଧାରାରେ ପୂରାପରି ମଜ୍ଜି ଯାଇନାହିଁ କିମ୍ବା ଏଭଳି ବୀରତ୍ୱର ସହ କେହି ନିଜ ମିଶନ୍‌କୁ କାର୍ଯ୍ୟକାରୀ କରିନାହିଁ ।''[37]

## ଜି.ଏମ୍. ଡ୍ରେକ୍‌ଟ

ଜି.ଏମ୍. ଡ୍ରେକ୍‌ଟ ଇସ୍‌ଲାମର ଜଣେ ସମାଲୋଚକ । କିନ୍ତୁ ମହାମାନ୍ୟ ମୁହମ୍ମଦଙ୍କଠାରେ ଜଣେ ଈଶ୍ୱରଦୂତଙ୍କ ଲକ୍ଷଣଗୁଡ଼ିକୁ ତାଙ୍କ ଦୃଷ୍ଟି ଧରିପାରୁଛି । ସେ କୁହନ୍ତି—

''କୌଣସି ଖ୍ରୀଷ୍ଟିଆନ ନେତା ବା ସନ୍ଥଙ୍କ ଅପେକ୍ଷା ପ୍ରାଚୀନ ହିବ୍ରୁ ଧର୍ମଦୂତମାନଙ୍କ ସହ ମୁହମ୍ମଦଙ୍କର ଅତି ନିକଟତର ସାଦୃଶ୍ୟ ରହିଛି ।''[38]

ମହାମାନ୍ୟ ମୁହମ୍ମଦଙ୍କୁ ରାଜନୈତିକ ଦୃଷ୍ଟିକୋଣରୁ ବିଚାର କରି ଡ୍ରେକ୍‌ଟ କୁହନ୍ତି—

''ଅନ୍ୟ କୌଣସି ଧାର୍ମିକ ନେତା ନିଜର ନୀତିକୁ ଏକ ନିଶ୍ଚିତ ରାଜନୈତିକ ବିଚାରଧାର ସହ ଏତେ ନିବିଡ଼ ଭାବରେ ଆବଦ୍ଧ

---

man, I am only human." " Do none enter Paradise save by the mercy of God ? " asked Aisha. " None, none, none," he answered. "Not even thou by thy own merits?" "Neither shall I enter Paradise unless God cover me with His mercy." (p.81)

[37] "Well did Carlyle choose him for his prophet-hero ! There have been purer lives and higher aspirations than Mohammad's ; but no man was ever more thoroughly filled with the sense of his mission or carried out that mission more heroically. (Ibid.p.85)

[38] **G.M. DRAYCOTT, Mahomet – Founder Of Islam, New York, 1916 :** Mahomet bears closer resemblance to the ancient Hebrew prophets than to any Christian leader or saint. (p.11)

କରିନାହାନ୍ତି । ମୁହମ୍ମଦ କେବଳ ଦୈବୀବାର୍ତ୍ତାର ଜଣେ ମାଧ୍ୟମ ନ ଥିଲେ, ବରଂ ଜୀବନର ଶେଷ ପର୍ଯ୍ୟାୟରେ ପୁଙ୍ଖାନୁପୁଙ୍ଖ ନୀତିନିୟମ ଥିବା ଏକ ଜାଗତିକ ରାଷ୍ଟ୍ରର ରାଷ୍ଟ୍ରମୁଖ୍ୟ ଥିଲେ... ଅନ୍ୟାନ୍ୟ ଦେଶର ରାଜନୈତିକ ସଙ୍ଗଠନଗୁଡ଼ିକ ତୁଳନାରେ ତାଙ୍କର ସ୍ଥିତି ଥିଲା ଅନୁପମ ।''[39]

## ଡି.ଏସ୍. ମାର୍ଗୋଲିୟଥ

ଡି.ଏସ୍. ମାର୍ଗୋଲିୟଥ (୧୮୫୮-୧୯୪୦) ଜଣେ ଐତିହାସିକ ଏବଂ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ଆରବୀ ଅଧ୍ୟାପକ ଓ ଚର୍ଚ୍ଚ ଅଫ୍ ଇଂଲଣ୍ଡର ଧର୍ମଯାଜକ ରହିଆସିଛନ୍ତି । ଇସ୍‌ଲାମର ଜଣେ ସମାଲୋଚକ ହିସାବରେ ସେ ବେଶ୍ ଜଣାଶୁଣା । ତଥାପି ମହାମାନ୍ୟ ମୁହମ୍ମଦଙ୍କୁ ନିଜ ପୁସ୍ତକ 'ମୁହମ୍ମଦ ଏଣ୍ଡ୍ ଦ ରାଇଜ୍ ଅଫ୍ ଇସ୍‌ଲାମ'ର ଭୂମିକାରେ ସେ ଜଣେ ମହାପୁରୁଷ ରୂପେ ସ୍ୱୀକାର କରିଛନ୍ତି—

''ମୁଁ ମୁହମ୍ମଦଙ୍କୁ ଜଣେ ମହାନ ବ୍ୟକ୍ତି ଭାବରେ ସମ୍ମାନ କରେ, ଯିଏ ଗୋଟିଏ ଅତି ଜଟିଳ ସମସ୍ୟାର ସମାଧାନ କରି ଆରବ ଜନଜାତିଙ୍କ ମଧ୍ୟରୁ ଗୋଟିଏ ରାଷ୍ଟ୍ର ଓ ଗୋଟିଏ ସାମ୍ରାଜ୍ୟ ଗଠନ କରିଥିଲେ । ସେ ଯେଉଁଳି ଏହି ଲକ୍ଷ ହାସଲ କଲେ ତାହା ବର୍ଣ୍ଣନା କରିବା ପାଇଁ, ତାଙ୍କ ବୌଦ୍ଧିକ ଦକ୍ଷତା ପ୍ରତି ଉଚିତ ନ୍ୟାୟ କରିବାପାଇଁ ଏବଂ ତାଙ୍କ ମହାନ ବ୍ୟକ୍ତିତ୍ୱ ଯେଉଁ ସମ୍ମାନର ସେ ଯୋଗ୍ୟ, ତାହା ପ୍ରଦର୍ଶନ କରିବାପାଇଁ ମୁଁ ପ୍ରୟାସ କରିଛି । ଅନ୍ୟଥା ଏହି ପୁସ୍ତକଟି ତାଙ୍କପ୍ରତି ସମର୍ଥନ ବା ଅଭିଯୋଗ ନୁହେଁ ।''[40]

---

[39] "No other religious leader has ever bound his creed so closely to definite political conceptions. Mahomet was not only the instrument of divine revelation, but he was also at the end of his life the head of a temporal state with minutest laws and regulations… His position with regard to the political institutions of other countries is unique. (Ibid.p.17)

[40] **D. S. MARGOLIOUTH, Mohammed And The Rise Of Islam, New York, London, 1905 :** I regard Mohammed as a great man, who solved a political problem of appalling difficulty, the construction

## ଏଚ୍.ଏ.ଆର୍. ଗୀବ୍

ଐତିହାସିକ ହାମିଲଟନ୍ ଆଲେକଜାଣ୍ଡାର୍ ରସକିନ୍ ଗୀବ୍ (୧୮୯୫-୧୯୭୧) ହାର୍ଭାର୍ଡ ବିଶ୍ୱବିଦ୍ୟାଳୟରେ ଆରବୀ ଭାଷାର ଅଧ୍ୟାପକ ରହି ଆସିଛନ୍ତି । ନିଜ ପୁସ୍ତକ 'ମହମ୍ମଡ଼ାନିଜମ୍ ଏକ ଐତିହାସିକ ସର୍ବେକ୍ଷଣ'ରେ ସେ ମତବ୍ୟକ୍ତ କରିଛନ୍ତି ଯେ, ମହାମାନ୍ୟ ମୁହମ୍ମଦଙ୍କର ସଦ୍‌ଗୁଣ ଏବଂ ବ୍ୟକ୍ତିତ୍ୱ ହିଁ ଲୋକଙ୍କର ହୃଦୟ ଜିଣି ନେଉଥିଲା—

> ''ଆମ ପାଇଁ ଏହା କହିବା ଅନାବଶ୍ୟକ ଯେ ମୁହମ୍ମଦ ତାଙ୍କ ଅନୁଗାମୀମାନଙ୍କ ହୃଦୟକୁ ନିଜ ବ୍ୟକ୍ତିତ୍ୱର ପ୍ରଭାବ ଦ୍ୱାରା ହିଁ ଜୟ କରିଥିଲେ । ଏହା ହୋଇନଥିଲେ ସେମାନେ ଈଶ୍ୱରଦୂତଙ୍କ କଥାପ୍ରତି କୌଣସି ଗୁରୁତ୍ୱ ଦେଇନଥାନ୍ତେ । ଧର୍ମପ୍ରଚାର ଯୋଗୁଁ ନୁହେଁ, ବରଂ ମୁହମ୍ମଦଙ୍କର ସଦାଚାର ଯୋଗୁଁ ମଦିନାବାସୀ ତାଙ୍କର ସହାୟତା ଭିକ୍ଷା କରିଥିଲେ ।''[41]

## ଉଇଲିୟମ୍ ମଣ୍ଟଗୋମେରୀ ୱାଟ୍

ଉଇଲିୟମ୍ ମଣ୍ଟଗୋମେରୀ ୱାଟ୍ (୧୯୦୯-୨୦୦୬) ଜଣେ ଇଂରେଜ ଐତିହାସିକ ଏବଂ ଏଡିନ୍‌ବର୍ଗ ବିଶ୍ୱବିଦ୍ୟାଳୟର ଆରବିକ ଓ ଇସ୍‌ଲାମିକ ଷ୍ଟଡିଜ୍‌ର ଅଧ୍ୟାପକ । ମହାମାନ୍ୟ ମୁହମ୍ମଦ ସମାଜରେ ଜଣେ ଉତ୍ତମ ଓ ସଚ୍ଚୋଟ ବ୍ୟକ୍ତି ରୂପେ ପରିଚିତ ଥିଲେ ବୋଲି ବର୍ଣ୍ଣନା କରି ସେ ନିଜ ପୁସ୍ତକରେ ଲେଖିଛନ୍ତି—

---

of a state and an empire out of the Arab tribes. I have endeavoured, in recounting the mode in which he accomplished this, to do justice to his intellectual ability and to observe towards him the respectful attitude which his greatness deserves ; but otherwise this book does not aim at being either an apology or an indictment. (Preface vi-vii)

[41] **H.A.R. GIBB, Mohammedanism, An Historical Survey, New York, 1962 :** "For us it goes without saying that the hold which Mohammed gained over the wills and affections of his Companions was due to the influence of his personality. Without that they would have paid little heed to the claims of the Prophet. It was because of his moral qualities, not because of his religious teaching, that the men of Medina invoked his assistance." (pp.33-34)

> ''ଉଭୟ ମକ୍କା ଓ ମଦିନା କାଳରେ ମୁହମ୍ମଦଙ୍କ ସମକାଳୀନ ଲୋକମାନେ ତାଙ୍କୁ ଜଣେ ଉତ୍ତମ ଓ ସଚ୍ଚୋଟ ବ୍ୟକ୍ତି ବୋଲି ଜାଣିଥିଲେ ଏବଂ ଇତିହାସ ଦୃଷ୍ଟିରେ ସେ ହେଉଛନ୍ତି ଜଣେ ନୈତିକ ତଥା ସାମାଜିକ ସଂସ୍କାରକ ।''[42]

ଇସ୍‌ଲାମ ସୁଦୂରପ୍ରସାରୀ ହେବାର କାରଣ ସମ୍ପର୍କରେ ସେ କୁହନ୍ତି—

> ''ସେ ଜଣେ ଏଭଳି ବ୍ୟକ୍ତି ଥିଲେ ଯାହାଙ୍କ ଭିତରେ ସୃଜନଶକ୍ତି ଅତି ଗଭୀର ସ୍ତରରେ କାର୍ଯ୍ୟ କରୁଥିଲା ଏବଂ ମାନବ ଅସ୍ତିତ୍ୱ ସମ୍ପର୍କୀୟ ପ୍ରମୁଖ ପ୍ରଶ୍ନଗୁଡ଼ିକ ବିଷୟରେ ବିଚାରମାନ ଉତ୍ପନ୍ନ କରୁଥିଲା, ଯାହା ଫଳରେ ତାଙ୍କ ଧର୍ମ କେବଳ ତାଙ୍କ ସମୟରେ ନୁହେଁ, ବରଂ ପରବର୍ତ୍ତୀ ଶତାବ୍ଦୀଗୁଡ଼ିକରେ ମଧ୍ୟ ସୁଦୂରପ୍ରସାରୀ ଆକର୍ଷଣ ଲାଭ କଲା ।''[43]

## ୱାଶିଂଟନ୍ ଇରଭିଙ୍ଗସ୍

ୱାଶିଂଟନ୍ ଇରଭିଙ୍ଗସ୍ (୧୭୮୩-୧୮୫୯) ଇସ୍‌ଲାମର ଜଣେ ସମାଲୋଚକ । ତଥାପି ତାଙ୍କର ଲେଖନୀ ମହାମାନ୍ୟ ମୁହମ୍ମଦଙ୍କର ନ୍ୟାୟ ଓ ସଦାଚାରର ପ୍ରଶଂସା କରିବାକୁ ଭୁଲିନାହିଁ ।

> ''ତାଙ୍କର ବ୍ୟକ୍ତିଗତ ଆଚାର ବ୍ୟବହାର ନ୍ୟାୟସଙ୍ଗତ ଥିଲା । ସେ ପରିଚିତ ଓ ଅପରିଚିତ, ଧନୀ ଓ ଗରିବ, ସବଳ ଓ ଦୁର୍ବଳ—ସମସ୍ତଙ୍କ ସହିତ ସମାନ ଧରଣର ବ୍ୟବହାର କରୁଥିଲେ, ଆଉ ନିଜର ଭଦ୍ରୋଚିତ ବ୍ୟବହାର ଯୋଗୁଁ ଏବଂ

---

[42] **WILLIAM MONTGOMERY WATT, Prophet And Statesman, London :** "In both Meccan and Medinan periods Muhammad's contemporaries looked on him as a good and upright man, and in the eyes of history he is a moral and social reformer." (p.234)

[43] "He was a man in whom creative imagination worked at deep levels and produced ideas relevant to the central questions of human existence, so that his religion has had a widespread appeal, not only in his own age but in succeeding centuries." (Ibid.p.240)

ଲୋକମାନଙ୍କର ଆପତ୍ତି ଅଭିଯୋଗ ଶୁଣୁଥିବା ଯୋଗୁଁ ସେ ସାଧାରଣ ଲୋକଙ୍କର ଅତି ପ୍ରିୟ ଥିଲେ ।''[44]

## ସାର୍ ଉଇଲିୟମ୍ ମୁର୍

ଇସ୍‌ଲାମର ସମାଲୋଚନା କରିଥିବା ଖ୍ରୀଷ୍ଟିୟାନ ପଣ୍ଡିତ ଉଇଲିୟମ୍ ମୁର୍ (୧୮୧୯-୧୯୦୫) ମହାମାନ୍ୟ ମୁହମ୍ମଦଙ୍କର ସାଧୁତା ଓ ନ୍ୟାୟପରାୟଣତାକୁ ସ୍ୱୀକାର କରି ଲେଖିଛନ୍ତି—

''ତାଙ୍କର ସମସ୍ତ ଆଚରଣଗୁଡ଼ିକ ଯଥାର୍ଥ ଓ ନ୍ୟାୟସଙ୍ଗତ ଥିଲା ଏବଂ ବୟସ ବଢ଼ିବା ସହିତ ତାଙ୍କର ସମ୍ମାନିତ ବ୍ୟକ୍ତିତ୍ୱ ତାଙ୍କପାଇଁ 'ଅଲ-ଅମୀନ' ଅର୍ଥାତ୍ 'ବିଶ୍ୱସନୀୟ' ଉପାଧି ଅର୍ଜନ କରିଥିଲା ।''[45]

## ମେରେଡିଥ ଟନ୍‌ସେଣ୍ଡ

ମେରେଡିଥ ଟନ୍‌ସେଣ୍ଡ ନିଜ ପୁସ୍ତକ 'ମୁହମ୍ମଦ ଦି ଗ୍ରେଟ ଆରବୀୟାନ୍'ରେ ଏହି ମହାନ ଆରବୀୟଙ୍କ ସମ୍ପର୍କରେ ଲେଖିଛନ୍ତି—

''ଜଣେ ରାଜକୁମାର ଓ ଜନନାୟକ ହିସାବରେ ତାଙ୍କ ଚରିତ୍ର ବିବାଦୀୟ ହୋଇନପାରେ । ନିଜ ଚାରିତ୍ରିକ ଛବିକୁ ଖୁବ୍ କମ୍ ଦାଗମୟ କରି ଇତିହାସରେ କୌଣସି ବ୍ୟକ୍ତି ଏତେ ଶୀର୍ଷ

---

[44] **WASHINGTON IRVINGS, Mahomet And His Successors, Vol.I, New York, 1868,** "In his private dealings, he was just. He treated friends and strangers, the rich and poor, the powerful and the weak, with equity, and was beloved by the common people for the affability with which he received them, and listened to theirs complaints." (p.331)

[45] **SIR WILLIAM MUIR, Mahomet And Islam, 1887 :** "In all his dealings he was fair and upright, and as he grew in years his honourable bearing won for him the title of Al Ameen, "the faithful." (p.19)

ପର୍ଯ୍ୟନ୍ତ ଉଠିପାରି ନାହିଁ କିମ୍ବା ତାଙ୍କ ଅପେକ୍ଷା ଅଧିକ ସ୍ଥିର, ନିର୍ମଳ ଓ ଅଟଳ ବୁଦ୍ଧିମତା ପ୍ରଦର୍ଶନ କରିନାହିଁ ।''[46]

## ପ୍ରବଞ୍ଚନାର ଆରୋପ

ଇତିହାସର ଆଲୋକରେ ଆମେ ମହାମାନ୍ୟ ମୁହମ୍ମଦଙ୍କର ସଂକ୍ଷିପ୍ତ ଜୀବନଚରିତ ଓ ବ୍ୟକ୍ତିତ୍ୱ ବିଷୟରେ ଆଲୋଚନା କଲୁ । ଯେଉଁମାନେ ତାଙ୍କର ଜୀବନଚରିତ ଅଧ୍ୟୟନ କରିଛନ୍ତି, ସେମାନେ ଏହି ମହାପୁରୁଷଙ୍କ ବ୍ୟକ୍ତିତ୍ୱ ଦ୍ୱାରା ଅବଶ୍ୟ ପ୍ରଭାବିତ ହୋଇଛନ୍ତି । **ଆନି ବେସାନ୍ତ** କହନ୍ତି—

> ''ଯିଏ ସେହି ମହାନ ଆରବୀୟ ଈଶ୍ୱରଦୂତଙ୍କ ଜୀବନୀ ଓ ଚରିତ୍ରର ଅଧ୍ୟୟନ କରିଛି, ଯିଏ ଏହା ଜାଣିଛି ଯେ ସେ କିଭଳି ଶିକ୍ଷା ଦେଇଛନ୍ତି ଏବଂ କିଭଳି ଜୀବନଯାପନ କରିଛନ୍ତି ତା' ମନରେ ସେହି ସର୍ବଶକ୍ତିମାନ ସର୍ବୋଚ୍ଚ କର୍ତ୍ତାଙ୍କର ଜଣେ ମହାନ ଈଶ୍ୱରଦୂତଙ୍କ ପ୍ରତି ଭକ୍ତିଭାବ ବ୍ୟତୀତ ଅନ୍ୟ କୌଣସି ଭାବନା ସୃଷ୍ଟି ହେବା ଅସମ୍ଭବ ।''[47]

ସେହିପରି **ମହାତ୍ମା ଗାନ୍ଧୀ** କୁହନ୍ତି—

> ''ମୁଁ ସେହି ବ୍ୟକ୍ତିଙ୍କ ଜୀବନଚରିତ ଜାଣିବା ପାଇଁ ଉତ୍ସୁକ ହେଲି ଯିଏ ଆଜି କୋଟି କୋଟି ଲୋକଙ୍କ ହୃଦୟରେ ନିଜର ଅଖଣ୍ଡ ପ୍ରଭାବ ବିସ୍ତାର କରିଛନ୍ତି... ପୂର୍ବାପେକ୍ଷା ମୋର ଅଧିକ ହୃଦ୍‌ବୋଧ ହେଲା ଯେ ଏହା ତରବାରୀ ନଥିଲା ଯାହା ତତ୍କାଳୀନ ଜୀବନଧାରାରେ ଇସ୍‌ଲାମ ପାଇଁ ସ୍ଥାନ ନିରୂପଣ କରିଥିଲା । ଏହା

---

[46] **MEREDITH TOWNSEND, Mahommad, The Great Arabian, NEW YORK,1912 :** "Upon his character as a prince, a leader of men, there can be little controversy. No man in history ever rose to dominion with fewer heavy stains upon his character; none ever exhibited more constancy, or a more serene unwavering wisdom." (pp.72-73)

[47] **ANNIE BESANT, The Life and Teachings of Muhammad, Madras, 1932, p-4 :** "It is impossible for anyone who studies the life and character of the great Prophet of Arabia, who knows how he taught and how he lived, to feel anything but reverence for that mighty Prophet, one of the great messengers of the Supreme..."

ଥିଲା ଈଶ୍ୱରଦୂତଙ୍କର ସରଳତା, ନିଜ ପ୍ରତି ନଗଣ୍ୟ ଭାବ, ବଚନ ପ୍ରତି ନିଷ୍ଠାପରତା, ମିତ୍ର ଓ ଅନୁଗତମାନଙ୍କ ପ୍ରତି ଗଭୀର ଅନୁରାଗ, ତାଙ୍କ ସାହସ ଓ ନିର୍ଭୀକତା ଏବଂ ଈଶ୍ୱରଙ୍କ ପ୍ରତି ଓ ନିଜ ମିଶନ୍ ପ୍ରତି ତାଙ୍କର ପୂର୍ଣ୍ଣ ବିଶ୍ୱାସ ।''[48]

ଦୁଃଖର କଥା ଯେଉଁ ବ୍ୟକ୍ତିଜଣକ ସାରା ଜୀବନରେ ଥରେହେଲେ ମିଛ କହିନାହାନ୍ତି, ଶତ୍ରୁ ଓ ସମାଲୋଚକମାନେ ଯାହାଙ୍କର ସତ୍ୟବାଦିତା ଓ ସଦାଚାରକୁ ସ୍ୱୀକାର କରନ୍ତି, ତାଙ୍କ ବିରୁଦ୍ଧରେ କୋଟି କୋଟି ଲୋକଙ୍କୁ ପ୍ରତାରିତ କରିବାର ଆରୋପ କରିଛନ୍ତି କେତେକ ଅସହିଷ୍ଣୁ ପାଶ୍ଚାତ୍ୟ ଲେଖକ । ସେମାନେ ତାଙ୍କୁ 'Imposter' ବା ପ୍ରବଞ୍ଚକ ରୂପେ ଅଭିହିତ କରିଛନ୍ତି, ଯାହାଫଳରେ ଅନେକଙ୍କ ମନରେ ଏହି ମହାପୁରୁଷଙ୍କ ସମ୍ପର୍କରେ ଭୁଲ ଧାରଣା ସୃଷ୍ଟି ହୋଇଛି ।

ମହାମାନ୍ୟ ମୁହମ୍ମଦଙ୍କ ସମ୍ପର୍କରେ ବିଭ୍ରାନ୍ତିକର ବିବରଣୀ ଦେଇ ସେମାନେ ତାଙ୍କ ଚରିତ୍ର ଓ ଶିକ୍ଷାକୁ ବିକୃତ କରି ଉପସ୍ଥାପନା କରିଛନ୍ତି । ତେଣୁ ତାଙ୍କର ପ୍ରକୃତ ପରିଚୟ ଲୋକଲୋଚନକୁ ଆସିବା ନିତାନ୍ତ ଆବଶ୍ୟକ । ଏହାଦ୍ୱାରା ଅନେକ ସନ୍ଦେହ ଦୂର ହୋଇପାରିବ ଏବଂ ସୁଧୀ ପାଠକମାନେ ଉପଲବ୍ଧି କରିପାରିବେ ଯେ ଆରୋପଗୁଡ଼ିକର ସତ୍ୟତା କେତେ ? ଇତିହାସର ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତିରୂପେ ମାନ୍ୟତା ଲାଭ କରିଥିବା ଜଣେ ସରଳ, ସଚ୍ଚୋଟ ଓ ଚରିତ୍ରବାନ ବ୍ୟକ୍ତି ଯଦି ନିଜକୁ ଈଶ୍ୱରଙ୍କର ଜଣେ ପ୍ରତିନିଧି ବୋଲି ଦାବି କରିଛନ୍ତି, ତେବେ ତାଙ୍କର ଦାବିକୁ ପ୍ରତ୍ୟେକ ଦିଗରୁ ପରୀକ୍ଷା କରାଯାଇପାରେ । ନିରପେକ୍ଷ ମନୋଭାବ ସହ ଈଶ୍ୱରଙ୍କ ପ୍ରତି ସମ୍ପୂର୍ଣ୍ଣ ନିଷ୍ଠାବାନ ରହି ଯଦି କେହି ବିଚାର କରେ ତେବେ ପ୍ରକୃତ ସତ୍ୟ ଅନ୍ତରରେ ପ୍ରକଟ ନ ହେବାର କୌଣସି କାରଣ ନାହିଁ ।



[48] **MAHATMA GANDHI, Young India, 1924 :** "I wanted to know the best of the life of one who holds today an undisputed sway over the millions of mankind... I became more than ever convinced that it was not the sword that won a place for Islam in those days in the scheme of life. It was the rigid simplicity, the utter self-effacement of the Prophet, the scrupulous regard for pledges, his intense devotion to his friends and followers, his intrepidity, his fearlessness, his absolute trust in God and in his own mission."

## ଦ୍ୱିତୀୟ ଅଧ୍ୟାୟ

# ଈଶ୍ୱରଙ୍କ ପ୍ରତିନିଧିତ୍ୱ - ଏକ ଦିବ୍ୟ ପରମ୍ପରା

ଧର୍ମ ସଂସ୍ଥାପନା ପାଇଁ ଯୁଗେ ଯୁଗେ ଦିବ୍ୟପୁରୁଷମାନଙ୍କର ଆବିର୍ଭାବ ଘଟିଛି । ଶାନ୍ତି ପ୍ରତିଷ୍ଠା ଏବଂ ଅନ୍ୟାୟ ଅତ୍ୟାଚାରର ବିଲୋପ ପାଇଁ ବିଶ୍ୱର ବିଭିନ୍ନ ସ୍ଥାନରେ ଏହି ମହାପୁରୁଷଗଣ ପ୍ରକଟିତ ହୋଇଛନ୍ତି । ସାଧାରଣ ସାଧୁସନ୍ଥ ବା ମୁନିଋଷିମାନଙ୍କଠାରୁ ଏମାନେ ଭିନ୍ନ । ଏମାନେ ଧରାପୃଷ୍ଠରେ ସ୍ୱୟଂ ଈଶ୍ୱରଙ୍କର ପ୍ରତିନିଧିତ୍ୱ କରନ୍ତି ଏବଂ ଏଇମାନଙ୍କ ମାଧ୍ୟମରେ ମନୁଷ୍ୟ ପାଇଁ ସ୍ରଷ୍ଟାଙ୍କର ବିଧାନ ଦିଆଯାଏ, ଯାହାକୁ ଆମେ ଧର୍ମ କହୁ । ମନୁଷ୍ୟର ପଥପ୍ରଦର୍ଶନ ପାଇଁ ଏହା ଏକ ଦିବ୍ୟ ପରମ୍ପରା ।

ନାନା ଦେଶରେ ଭିନ୍ନ ଭିନ୍ନ ଭାଷାରେ ଧର୍ମର ପ୍ରଚାର କରୁଥିଲେ ମଧ୍ୟ ଏହି ମାର୍ଗଦର୍ଶକମାନଙ୍କର ମୌଳିକ ଶିକ୍ଷା ଓ ସିଦ୍ଧାନ୍ତ ସମାନ ଥାଏ, କାରଣ ସେମାନେ ସମସ୍ତେ ଏକ ଈଶ୍ୱରଙ୍କର ପ୍ରତିନିଧି ଏବଂ ଗୋଟିଏ ଦୀପର ଜ୍ୟୋତି । ଯେଉଁ ଶିକ୍ଷା ସେମାନେ ମନୁଷ୍ୟକୁ ଦିଅନ୍ତି, ତାହା ସେମାନେ କୌଣସି ପାଠଶାଳାରୁ ପଢ଼ି ନଥାନ୍ତି, ବରଂ ଦୈବବାଣୀ ହିଁ ସେମାନଙ୍କ ଜ୍ଞାନର ମୁଖ୍ୟ ମାଧ୍ୟମ । ଭାଷା ଅନୁସାରେ ସେମାନେ ପ୍ରଫେଟ, ନବୀ, ରସୁଲ, ଅବତାର ବା ଋଷି ଆଦି ବିଭିନ୍ନ ନାମରେ ପରିଚିତ । କିନ୍ତୁ ସମସ୍ତଙ୍କର ଏକା ମିଶନ୍ ଏବଂ ଏକା ଲକ୍ଷ୍ୟ । ଯେଉଁ ପୁରୁଷୋତ୍ତମମାନଙ୍କ ଦ୍ୱାରା ଦୈବବାଣୀ ମାଧ୍ୟମରେ ସ୍ରଷ୍ଟା ମନୁଷ୍ୟର ମାର୍ଗଦର୍ଶନ କରନ୍ତି, ସେମାନଙ୍କୁ ଆରବୀ ଭାଷାରେ 'ନବୀ' ବା 'ରସୁଲ' ଏବଂ ଇଂରାଜୀରେ 'Prophet' ବା 'Messenger' କୁହାଯାଏ । ବେଦରେ ସେମାନଙ୍କୁ 'ଋଷି' ଏବଂ ବାଇବଲରେ 'ପ୍ରଫେଟ' କୁହାଯାଇଛି । ଅକ୍ସଫୋର୍ଡ ଡିକ୍ସନାରୀ ଅନୁସାରେ ପ୍ରଫେଟ ଅର୍ଥ 'ଈଶ୍ୱରଙ୍କ ଇଚ୍ଛାର ବ୍ୟାଖ୍ୟା କରୁଥିବା ବ୍ୟକ୍ତି' ।

ବୈଦିକ ଋଷିମାନଙ୍କ ଅନ୍ତରରେ ବ୍ରହ୍ମାଙ୍କ ଦ୍ୱାରା ବେଦ ପ୍ରକଟ ହୋଇଥିଲା । ବେଦ ବିଶାରଦମାନେ କୁହନ୍ତି ଯେ, ସୃଷ୍ଟିର ପ୍ରାରମ୍ଭରେ ମନୁଷ୍ୟର କଲ୍ୟାଣ ପାଇଁ ମହର୍ଷି ଅଗ୍ନି, ମହର୍ଷି ବାୟୁ, ମହର୍ଷି ଆଦିତ୍ୟ ଏବଂ ମହର୍ଷି

ଅଙ୍ଗୀରା ଆଦି ଋଷିମାନଙ୍କ ଅନ୍ତରରେ ଈଶ୍ୱର ଯେଉଁ ଜ୍ଞାନ ପ୍ରକଟ କରିଥିଲେ, ତାହାହିଁ 'ଶ୍ରୁତି' ବା 'ବେଦ' । ସଂସ୍କୃତର ଏହି 'ଋଷି' ଶବ୍ଦର ଅନୁରୂପ ଶବ୍ଦଟି ଆରବୀ ଭାଷାରେ ହେଉଛି 'ନବୀ' । ଓଡ଼ିଆ ଭାଷାରେ ସେମାନଙ୍କୁ ଈଶ୍ୱରଦୂତ, ଧର୍ମଦୂତ ବା ବାର୍ତ୍ତାବହ ମଧ୍ୟ କୁହାଯାଇପାରେ ।

ସଂସ୍କୃତର 'ଅବତାର' ଶବ୍ଦ ମଧ୍ୟ 'ନବୀ'ର ଅନୁରୂପ ହୋଇପାରେ ବୋଲି କେତେକ ହିନ୍ଦୁ ବିଦ୍ୱାନ୍ ମତ ଦିଅନ୍ତି । ପଣ୍ଡିତ ଶ୍ରୀରାମ ଶର୍ମା 'ଅବତାର' ଶବ୍ଦର ପରିଭାଷା ବର୍ଣ୍ଣନା କରି କୁହନ୍ତି—

> ''ସମାଜକୁ ପତିତ ଅବସ୍ଥାରୁ ଉନ୍ନତି ଆଡ଼କୁ ନେଉଥିବା ମହାମାନବ ନେତା ବୋଲି 'ଅବତାର' ଶବ୍ଦର ବ୍ୟାଖ୍ୟା କଲେ ଅନୁଚିତ ହେବନାହିଁ ।''[1]

ପଣ୍ଡିତ ବେଦପ୍ରକାଶ ଉପାଧ୍ୟାୟ କୁହନ୍ତି—

> ''ମୁଁ ସ୍ପଷ୍ଟ କରିଦେବାକୁ ଚାହେଁ ଯେ ସଂସ୍କୃତ ଶବ୍ଦ 'ଅବତାର' ଇଂରାଜୀରେ Prophet ଏବଂ ଆରବୀରେ 'ନବୀ'ର ଅନୁରୂପ ।''[2]

ଶ୍ରୀ ଉପାଧ୍ୟାୟ ଅବତାର ଶବ୍ଦର ବ୍ୟାଖ୍ୟା କରି କୁହନ୍ତି—

> ''ମୂଳ ଶବ୍ଦ 'ଅବ' ଏବଂ 'ତୁ'ର ସଂଯୋଗ ଦ୍ୱାରା ଅବତାର ଶବ୍ଦ ଗଠିତ, ଯାହାର ଅର୍ଥ ହେଉଛି 'ଈଶ୍ୱରଙ୍କ ଦ୍ୱାରା ପ୍ରକଟିତ ହୋଇଥିବା ବାର୍ତ୍ତାର ବିଶ୍ୱରେ ପ୍ରଚାର ପାଇଁ ଜଣେ ମହାପୁରୁଷଙ୍କ ଆବିର୍ଭାବ ।''[3]

ବିଶ୍ୱର ବିଭିନ୍ନ ଭାଗରେ ଲକ୍ଷାଧିକ ମାର୍ଗଦର୍ଶକଙ୍କର ଆବିର୍ଭାବ ଘଟିଛି । ସେମାନଙ୍କ ମଧ୍ୟରୁ କେତେକଙ୍କର ବିଷୟରେ କୁରଆନ, ବାଇବଲ ଏବଂ ବିଭିନ୍ନ ହିନ୍ଦୁ ଶାସ୍ତ୍ରରେ ମଧ୍ୟ ବର୍ଣ୍ଣନା କରାଯାଇଛି ।

---

(1) ଅନ୍ତିମ ସନ୍ଦେଷ୍ଟା, ପୃ-୩୫

(2) କଲ୍କୀ ଅବତାର ଓ ମୁହମ୍ମଦ, ଦ୍ୱିତୀୟ ଅଧ୍ୟାୟ

(3) Muhammed in the Hindu Scriptures, P-50.

ଧରିତ୍ରୀର ପ୍ରଥମ ପୁରୁଷ ଆଦମ୍ ଓ ତାଙ୍କ ପତ୍ନୀ ଇଭ୍‌ଙ୍କ (ଆରବୀରେ ହଓ୍ୱା) ବର୍ଣ୍ଣନା କୁର୍‌ଆନ ଓ ବାଇବଲ କରିଛନ୍ତି । ପୁରାଣରେ ମଧ୍ୟ ଏମାନଙ୍କ ବିଷୟରେ ଉଲ୍ଲେଖ ରହିଛି । ଭବିଷ୍ୟ ପୁରାଣରେ (ପ୍ରଥମ ଖଣ୍ଡ, ଚତୁର୍ଥ ଅଧ୍ୟାୟ, ସୃଷ୍ଟିପର୍ବ) ଏମାନଙ୍କ ବିଷୟରେ ଅନେକ ତଥ୍ୟ ଦିଆଯାଇଛି, ଯଥା— ବିଷ୍ଣୁଙ୍କ ଦ୍ୱାରା ଆଦମ୍ ଓ ତାଙ୍କ ପତ୍ନୀ 'ହଓ୍ୱବତୀ' (Eve)ଙ୍କର କୋମଳ ମୃତ୍ତିକାରୁ ସୃଷ୍ଟି ହେବା, ବିଷ୍ଣୁଙ୍କର ଆଦେଶ ଉଲ୍ଲଘଂନ କରି ସେମାନଙ୍କ ଦ୍ୱାରା ପାପବୃକ୍ଷର ଫଳ ଖାଇବା, ସଇତାନ୍ (Devil)ର ସାପ ରୂପରେ ଆସି ବିଷ୍ଣୁଙ୍କର ଆଦେଶ ଉଲ୍ଲଘଂନ କରିବାପାଇଁ ସେମାନଙ୍କୁ ପ୍ରବର୍ତ୍ତାଇବା ଏବଂ ପରେ ବିଷ୍ଣୁଙ୍କ ଦ୍ୱାରା ସେ ଦୁଇଜଣଙ୍କୁ ସଂସାରକୁ ପଠାଇ ଦିଆଯିବା ଭଳି ଅନେକ ତଥ୍ୟର ଉଲ୍ଲେଖ ଅଛି, ଯାହାକି କୁର୍‌ଆନ ଓ ବାଇବଲର ବର୍ଣ୍ଣିତ ତଥ୍ୟ ସହ ପ୍ରାୟ ସମାନ । ଏହାଛଡ଼ା ଉକ୍ତ ପୁରାଣରେ ମହାମାନ୍ୟ ଧର୍ମଦୂତ ନୂହ (ସଂସ୍କୃତରେ ନ୍ୟୂହ-न्युह) ତାଙ୍କ ପୁତ୍ର ଶାମ (ସଂସ୍କୃତରେ ସିମ-सिम), ମହାମାନ୍ୟ ଇବ୍ରାହିମ (ସଂସ୍କୃତରେ ଅବିରାମ-अविराम) ଆଦି ଆହୁରି ଅନେକ ଋଷିଙ୍କର ନାମର ଉଲ୍ଲେଖ ଅଛି, ଯେଉଁମାନଙ୍କୁ ବାଇବଲ୍ ପ୍ରଫେଟ ଏବଂ କୁର୍‌ଆନ ନବୀ ବା ରସୁଲ କହିଛି ।

ଏହା ବ୍ୟତୀତ ଏହି ପୁରାଣରେ ବିଷ୍ଣୁଙ୍କ ଦ୍ୱାରା ମହର୍ଷି ମନୁଙ୍କୁ (କୁର୍‌ଆନ ଓ ବାଇବଲ୍‌ର ମହାମାନ୍ୟ ନୂହ) ଏକ ମହାବାତ୍ୟାର ଖବର ଦିଆଯିବା, ଗୋଟିଏ ଡଙ୍ଗା ତିଆରି କରି ବନ୍ୟାବେଳେ ସେଥିରେ ନିଜ ଲୋକଙ୍କ ସହ ପ୍ରତ୍ୟେକ ପଶୁପକ୍ଷୀଙ୍କ ମଧ୍ୟରୁ ହଳେ ଲେଖାଏଁ ରଖିବାର ଆଦେଶ ଦିଆଯିବା, ସ୍ୱପ୍ନାଦେଶ ଅନୁସାରେ ମହର୍ଷି ମନୁଙ୍କ ଦ୍ୱାରା ୩୦୦ଫୁଟ ଲମ୍ବ ଓ ୫୦ଫୁଟ ଓସାରର ଗୋଟିଏ ଡଙ୍ଗା ତିଆରି କରାଯିବା କଥାର ଉଲ୍ଲେଖ ଅଛି । ଏହି ପ୍ରଳୟଙ୍କରୀ ବନ୍ୟା ୪୦ଦିନ ଧରି ଲାଗି ରହିଥିବା, ପ୍ରବଳ ବର୍ଷା ଯୋଗୁଁ ଚାରୋଟି ସମୁଦ୍ର ସମାନ ଭାବେ ମିଶିଯିବା ଏବଂ ଭାରତବର୍ଷ ବୁଡ଼ି ଯାଇଥିବାର ମଧ୍ୟ ଉଲ୍ଲେଖ ଅଛି । ଏହି ଘଟଣାଟି ଉଭୟ କୁର୍‌ଆନ ଓ ବାଇବଲ୍‌ରେ ମଧ୍ୟ ସାମାନ୍ୟ ପରିବର୍ତ୍ତନ ସହ ବର୍ଣ୍ଣନା କରାଯାଇଛି ।

ମହାମାନ୍ୟ ଯୀଶୁଖ୍ରୀଷ୍ଟଙ୍କ ବିଷୟରେ ମଧ୍ୟ ପୁରାଣରେ ବର୍ଣ୍ଣନା କରାଯାଇଥିବା ଦେଖିବାକୁ ମିଳେ ।[4] ସେଥିରେ ତାଙ୍କର ନାମ 'ଇସା ମସିହ'

---

(4) ଭବିଷ୍ୟ ପୁରାଣ, ସୃଷ୍ଟିପର୍ବ, ୩ୟ ଖଣ୍ଡ, ଦ୍ୱିତୀୟ ଅଧ୍ୟାୟ ।

ବୋଲି ଉଲ୍ଲେଖ ଅଛି । ସେ କୁମାରୀ ମାଆଙ୍କଠାରୁ ଜନ୍ମ ହୋଇଥିବା ଜଣେ ଈଶ୍ୱରଦୂତ ଯିଏ କି ସତ୍ୟର ପ୍ରଚାର କରିବାପାଇଁ ପ୍ରେରିତ ବୋଲି ବର୍ଣ୍ଣନା କରାଯାଇଛି । ମହାମାନ୍ୟ 'ଈସା' (ଯୀଶୁ) ମହାମାନ୍ୟ ମୁହମ୍ମଦଙ୍କ ଆବିର୍ଭାବର ଭବିଷ୍ୟବାଣୀ କରିଥିବା ବିଷୟ ଏବଂ ତାଙ୍କର କେତେକ ଉପଦେଶର ମଧ୍ୟ ଏହି ପୁରାଣରେ ବର୍ଣ୍ଣନା ରହିଛି । ଡକ୍ଟର ବେଦପ୍ରକାଶ ଉପାଧ୍ୟାୟ 'ରିଲିଜିଅସ୍ ୟୁନିଟି ଇନ୍ ଦି ଲାଇଟ୍ ଅଫ୍ ଦି ବେଦଜ୍' ପୁସ୍ତକରେ ଏ ବିଷୟରେ ଅନେକ ତଥ୍ୟ ଦେଇଛନ୍ତି ।[5]

ଯଦିଓ ପ୍ରାୟ ଏକଲକ୍ଷ ଚବିଶ ହଜାର ଈଶ୍ୱରଦୂତ ଆସିଥିବା କଥା ଇସ୍‌ଲାମ କହିଛି, କିନ୍ତୁ ସେମାନଙ୍କ ମଧ୍ୟରୁ କେବଳ ଅଳ୍ପ କେଇଜଣଙ୍କର ନାମ ବର୍ଣ୍ଣନା ଦେଖିବାକୁ ମିଳେ । ଇସ୍‌ଲାମ କିନ୍ତୁ ମୁସଲମାନ ହେବା ପାଇଁ ଏକ ମୌଳିକ ସର୍ତ୍ତ ରଖିଛି ଯେ, ପୃଥିବୀପୃଷ୍ଠରେ ଆସିଥିବା ସମସ୍ତ ଈଶ୍ୱରଦୂତଙ୍କୁ ଈଶ୍ୱରଙ୍କ ପ୍ରତିନିଧି ବୋଲି ବିଶ୍ୱାସ କରିବାକୁ ହେବ, ସେମାନଙ୍କ ମଧ୍ୟରେ ଛୋଟବଡ଼ର କୌଣସି ପ୍ରଭେଦ କରାଯିବ ନାହିଁ ଏବଂ କାହାରି ପ୍ରତି ଅସମ୍ମାନ କରାଯିବ ନାହିଁ । ଏହା ବ୍ୟତୀତ କେବଳ କୁର୍‌ଆନ ନୁହେଁ, ପୃଥିବୀରେ ପ୍ରକଟିତ ସବୁ ଦିବ୍ୟଗ୍ରନ୍ଥଗୁଡ଼ିକ ଯେ ଜଣେ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ, ଏହା ମଧ୍ୟ ଜଣେ ମୁସଲମାନ ବିଶ୍ୱାସ ରଖିବ । ଏହି ଦୁଇଟି ମୌଳିକ ବିଶ୍ୱାସ ବିନା ଜଣେ ବ୍ୟକ୍ତି ମୁସଲମାନ ଭାବେ ପରିଗଣ୍ୟ ନୁହେଁ ।

କୁର୍‌ଆନ ଆମକୁ କହେ ଯେ, ବିଶ୍ୱର ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ଜଣେ ଈଶ୍ୱରଦୂତ ଆସିଛନ୍ତି—

> ''ଏପରି କୌଣସି ସମ୍ପ୍ରଦାୟ ନାହିଁ, ଯାହା ନିକଟକୁ କୌଣସି ସଚେତକ (ଈଶ୍ୱରଦୂତ) ଆସିନାହାନ୍ତି ।''

**କୁର୍‌ଆନ, ୩୫ : ୨୪**

ତେଣୁ, ମନୁଷ୍ୟର ମାର୍ଗଦର୍ଶନ ପାଇଁ ନିଜର ପ୍ରତିନିଧି ପଠାଇବା ଈଶ୍ୱରଙ୍କର ଏକ ପରମ୍ପରା ରହିଆସିଛି ।



[5] Mahammed in the Hindu Scriptures, P.-85-87

# ମାର୍ଗଦର୍ଶନ କାହିଁକି ?

ମନୁଷ୍ୟ ଏକ ବୁଦ୍ଧି-ବିବେକ ସମ୍ପନ୍ନ ଜୀବ । ନିଜର ବୁଦ୍ଧି, ବିଷୟଜ୍ଞାନ ଓ ଅଭିଜ୍ଞତା ବଳରେ ସେ ଠିକ୍-ଭୁଲ୍ ବା ନ୍ୟାୟ-ଅନ୍ୟାୟ ମଧ୍ୟରେ ଅନେକାଂଶରେ ତଫାତ୍ ବୁଝିପାରେ । ପୁଣି ତା'ର ମାର୍ଗଦର୍ଶନ କରିବାର ଆବଶ୍ୟକତା କ'ଣ ? କାହିଁକି ମହାମାନ୍ୟ ଈଶ୍ୱରଦୂତଗଣ ଆସନ୍ତି ଏବଂ କାହିଁକି ମନୁଷ୍ୟକୁ ଦିବ୍ୟବିଧାନ ଦିଆଯାଏ ?

ଆମେ ଜାଣୁ ଯେ, ବଜାରରୁ ଫ୍ରିଜ୍, କାର୍ ବା ମୋବାଇଲ ଫୋନ୍‌ଟିଏ କିଣିଲେ ନିର୍ମାତାଙ୍କ ତରଫରୁ ତା' ସହିତ ଗୋଟିଏ ଇନ୍‌ଷ୍ଟ୍ରକ୍‌ସନ୍ ମାନୁଆଲ୍ ବା ଗାଇଡ୍ ବହି ଦିଆଯାଇଥାଏ । ସେ ବହିଟିରେ ସେହି ଉପକରଣଟିର ସଠିକ୍ ବ୍ୟବହାର ସମ୍ପର୍କରେ ଉପଦେଶମାନ ରହିଥାଏ । ନିର୍ମାତା ଜାଣନ୍ତି ଯେ, ତାଙ୍କର ସବୁ ଗ୍ରାହକ ଅଶିକ୍ଷିତ ନୁହଁନ୍ତି । ସେମାନଙ୍କ ମଧ୍ୟରେ ବଡ଼ ବଡ଼ ଶିକ୍ଷାବିତ୍, ଡାକ୍ତର, ଇଞ୍ଜିନିୟର, ପ୍ରଫେସର ଓ ବୈଜ୍ଞାନିକ ମଧ୍ୟ ଅଛନ୍ତି । ତଥାପି ନିର୍ମାତା କାହିଁକି ମାର୍ଗଦର୍ଶନ କରନ୍ତି ?

ଏହାର କାରଣ ହେଉଛି ଯେ, ବସ୍ତୁର ନିର୍ମାତା ହିଁ ନିଜ ବସ୍ତୁ ସମ୍ପର୍କରେ ସଠିକ୍ ଭାବେ ଜାଣିଥାଆନ୍ତି । ଯେହେତୁ ସେ ବସ୍ତୁଟିକୁ ଗଢ଼ିଛନ୍ତି, ତାର ପ୍ରତିଟି ଯନ୍ତ୍ରାଂଶର ଗୁଣ ଓ କାର୍ଯ୍ୟପ୍ରଣାଳୀ ସମ୍ପର୍କରେ ସେ ଭଲରୂପେ ଅବଗତ ଥାଆନ୍ତି ଏବଂ ବସ୍ତୁଟିର ବ୍ୟବହାର କିଭଳି ଲାଭଦାୟକ ବା କ୍ଷତିକାରକ ହେବ ତାହା ସେ ଜାଣନ୍ତି । ବସ୍ତୁଟିକୁ ଗଢ଼ିନଥିବା ଲୋକଙ୍କର ସେହି ଜ୍ଞାନ ନଥାଏ । ତେଣୁ, ତାକୁ ଠିକ୍ ରୂପେ ବ୍ୟବହାର ନକରି ଗ୍ରାହକମାନେ କ୍ଷତିଗ୍ରସ୍ତ ହେବାର ଆଶଙ୍କା ଥାଏ । ଏହି କାରଣ ଯୋଗୁଁ ବସ୍ତୁର ଉପଯୋଗ ସମ୍ପର୍କରେ ନିର୍ମାତା ମାର୍ଗଦର୍ଶନ କରିଥାଆନ୍ତି । ଏହା ତାଙ୍କର ପ୍ରାଥମିକ କର୍ତ୍ତବ୍ୟ ।

ଯଦି ବସ୍ତୁଟି କୌଣସି ଜଟିଳ ଧରଣର ହୋଇଥାଏ, ଯଥା କୌଣସି ମିଲ୍ ବା କଳକାରଖାନା ଇତ୍ୟାଦି, ତେବେ କେବଳ ଗାଇଡ୍ ବହିଟି ଗ୍ରାହକମାନଙ୍କ ପାଇଁ ଯଥେଷ୍ଟ ହୁଏନାହିଁ । ଏହା ସହିତ କମ୍ପାନୀ ତରଫରୁ

ଜଣେ ଗାଇଡ୍ ବା ପ୍ରତିନିଧି ନିଯୁକ୍ତ କରାଯାଏ, ଯିଏ ମେସିନ୍‌ଟିର ବ୍ୟବହାର ସମ୍ପର୍କରେ ଗ୍ରାହକଙ୍କୁ ମୌଖିକ ରୂପେ ବୁଝାଇବା ସହ ଏହାର ବ୍ୟବହାରିକ ଜ୍ଞାନ ସମ୍ପର୍କରେ ସୂଚନା ଦେଇଥାନ୍ତି ।

ଅବଶ୍ୟ ମନୁଷ୍ୟ କୌଣସି ଯନ୍ତ୍ର ନୁହେଁ, ସେ ରକ୍ତ-ମାଂସରେ ଗଢ଼ା ମଣିଷ । କିନ୍ତୁ ତା'ର ନିର୍ମାତା ତାକୁ ଯେଉଁଭଳି ଉନ୍ନତମାନର କାରିଗରୀ କୌଶଳରେ ଗଢ଼ିଛନ୍ତି, ସଂସାରରେ ତା'ର ତୁଳନା ନାହିଁ । ମନୁଷ୍ୟ ହେଉଛି ସଂସାରର ସବୁଠାରୁ ଶ୍ରେଷ୍ଠ ଏବଂ ଜଟିଳତମ ସୃଷ୍ଟି । ସେ ସତ୍ ଓ ଅସତ୍ ଉଭୟ କାର୍ଯ୍ୟ କରିପାରେ । ପୁଣ୍ୟକାର୍ଯ୍ୟ କରି ସେ ଦେବଦୂତଙ୍କୁ ମଧ୍ୟ ବଳିଯାଇପାରେ ଏବଂ ପାପ କରି ସେ ରାକ୍ଷସମାନଙ୍କୁ ମଧ୍ୟ ପଛରେ ପକାଇଦେଇପାରେ । ବିଭିନ୍ନ ସଦ୍‌ଗୁଣ ଧାରଣ କରିଥିବା ମଣିଷ ଭିତରେ ମିଥ୍ୟା-କପଟ, ଲୋଭ-ମୋହ, କାମନା-ବାସନା, କ୍ରୋଧ-ଈର୍ଷା, ଗର୍ବ-ଅହଂକାର ଆଦି ଅନେକ ଦୁର୍ଗୁଣ ମଧ୍ୟ ରହିଛି । ଯେମିତି ସେ ଦୟା, ପ୍ରେମ ଓ ପରୋପକାର କରିପାରେ, ସେହିପରି ସେ ହତ୍ୟା, ଲୁଣ୍ଠନ ଆଦି ଯାବତୀୟ ଅନ୍ୟାୟ, ଅତ୍ୟାଚାର ମଧ୍ୟ କରିପାରେ । ତାକୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଈଶ୍ୱର ମନୁଷ୍ୟକୁ ସତ୍ ଓ ଅସତ୍ ଉଭୟ କର୍ମ କରିବାର ସାମର୍ଥ୍ୟ ପ୍ରଦାନ କରିଛନ୍ତି ।

ଜଣେ ସାମାଜିକ ପ୍ରାଣୀ ଭାବରେ ପାରିବାରିକ ଜୀବନଠାରୁ ଆରମ୍ଭ କରି ରାଷ୍ଟ୍ରୀୟ ତଥା ଅନ୍ତଃରାଷ୍ଟ୍ରୀୟ ସ୍ତର ପର୍ଯ୍ୟନ୍ତ ଅଗଣିତ ଜନତାଙ୍କ ସହ ମନୁଷ୍ୟ ସଂଶ୍ଳିଷ୍ଟ ଥାଏ । ହଜାର ହଜାର ନର-ନାରୀଙ୍କ ଉପରେ ତା' କର୍ମର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ପଡ଼ିଥାଏ ଏବଂ ତା'ର ପ୍ରତିଟି ସତ୍ ବା ଅସତ୍ କର୍ମ ତାକୁ ପ୍ରଭାବିତ କରିବା ସହ ସମାଜର ବିଭିନ୍ନ କ୍ଷେତ୍ରକୁ ମଧ୍ୟ ପ୍ରଭାବିତ କରେ । ଯେମିତି ସତ୍‌କର୍ମ ଦ୍ୱାରା ଜୀବନ ଶୁଦ୍ଧ ହୁଏ ଓ ସମାଜର କଲ୍ୟାଣ ହୁଏ, ସେହିପରି ଅସତ୍‌କର୍ମ ଦ୍ୱାରା ସମାଜ କ୍ଷତିଗ୍ରସ୍ତ ହୁଏ । ଯଦି ମନୁଷ୍ୟ ତା'ର କର୍ତ୍ତବ୍ୟ ଠିକ୍ ଠିକ୍ ପାଳନ ନ କରେ, ତେବେ ସେ ନିଜର ତଥା ସମାଜର ଘୋର ଅନିଷ୍ଟ କରିବ ଏବଂ ସ୍ରଷ୍ଟା ଓ ସୃଷ୍ଟିପ୍ରତି ଅନ୍ୟାୟ ଅତ୍ୟାଚାର କରି ଦଣ୍ଡନୀୟ ହେବ । କିନ୍ତୁ ମଣିଷର କର୍ତ୍ତବ୍ୟ କ'ଣ ସେ କିପରି ଜାଣିବ ? ସେ କିପରି ଜାଣିବ ଯେ କେଉଁ କାର୍ଯ୍ୟଟି ଠିକ୍ ଏବଂ କେଉଁଟି ଭୁଲ ? ସେ କାହିଁକି ସଂସାରକୁ ଆସିଛି, କିଏ ତାକୁ ସୃଷ୍ଟି କରିଛି, ଏଠାରେ ତା'ର

କର୍ତ୍ତବ୍ୟ କ'ଣ—ଏଗୁଡ଼ିକ ଜାଣିବା ପାଇଁ 'ଜ୍ଞାନ' ଆବଶ୍ୟକ । ଏହି ଜ୍ଞାନ ମଣିଷକୁ ତିନୋଟି ଉପାୟରେ ମିଳେ । ପ୍ରଥମଟି ହେଉଛି ପ୍ରାକୃତିକ ଉପାୟ । ଈଶ୍ୱର ମଣିଷକୁ ଏଥିପାଇଁ ଆଖି, କାନ, ପାଟି, ନାକ ଆଦି ଇନ୍ଦ୍ରିୟ ଦେଇଛନ୍ତି, ଯାହାଦ୍ୱାରା ସେ ଅନେକ ଭଲ-ମନ୍ଦ ବିଷୟରେ ଜାଣିପାରିବ । ଏଗୁଡ଼ିକ ତା' ଜ୍ଞାନ ଓ ଅଭିଜ୍ଞତା ବୃଦ୍ଧିରେ ସାହାଯ୍ୟ କରନ୍ତି । ଏହି ଇନ୍ଦ୍ରିୟଗୁଡ଼ିକ ମନୁଷ୍ୟ ବ୍ୟତୀତ ପଶୁପକ୍ଷୀ ଓ ଜୀବଜନ୍ତୁ ଆଦିଙ୍କୁ ମଧ୍ୟ ଦିଆଯାଇଛି, ଯାହା ସେମାନଙ୍କୁ ଜୀବନ ନିର୍ବାହ କରିବାରେ ସାହାଯ୍ୟ କରେ ।

କିନ୍ତୁ ମଣିଷର ଏହି ଇନ୍ଦ୍ରିୟଗୁଡ଼ିକ ଠିକ୍ ରୂପେ କାର୍ଯ୍ୟ କରୁଥିବା ସତ୍ତ୍ୱେ ସେ ଅନେକ କଥା ଜାଣିପାରେ ନାହିଁ । ଏଗୁଡ଼ିକ ତା'ର ମାର୍ଗଦର୍ଶନ କରିବାକୁ ସମ୍ପୂର୍ଣ୍ଣ ଅସମର୍ଥ ହୁଅନ୍ତି । ତେଣୁ ମଣିଷକୁ 'ଜ୍ଞାନ'ର ଆଉ ଗୋଟିଏ ମାଧ୍ୟମ ଦିଆଯାଇଛି, ଯାହାକୁ 'ବୁଦ୍ଧି' କହନ୍ତି । ବୁଦ୍ଧି ଆମ ନିକଟରେ ଉପଲବ୍ଧ ଥିବା ତଥ୍ୟଗୁଡ଼ିକୁ ବିଶ୍ଳେଷଣ କରି ଆମର ମାର୍ଗଦର୍ଶନ କରେ । ଯେଉଁ କ୍ଷେତ୍ରରେ ଇନ୍ଦ୍ରିୟଗୁଡ଼ିକ କାର୍ଯ୍ୟ କରିବା ପାଇଁ ଅସମର୍ଥ, ସେଠାରେ ବୁଦ୍ଧି ଆମକୁ ବାଟ ବତାଏ । କିନ୍ତୁ ବୁଦ୍ଧିର ସାମର୍ଥ୍ୟ ମଧ୍ୟ ସୀମିତ । ଅନେକ କ୍ଷେତ୍ରରେ ବୁଦ୍ଧି ମଧ୍ୟ କାମ କରେନାହିଁ । ଆସନ୍ତୁ, ଗୋଟିଏ ଉଦାହରଣରୁ ଏହା ବୁଝିବାକୁ ଚେଷ୍ଟା କରିବା ।

ମନେକରନ୍ତୁ, କେହି ଜଣେ ଆମକୁ ଔଷଧ ବଟିକାଟିଏ ଦେଖାଇ ପ୍ରଶ୍ନ କଲା ଯେ 'ଏଇଟା କଣ ?' ଆମେ ଅତି ସହଜରେ ଏହାର ଉତ୍ତର ଦେଇପାରିବା । ଆଖିରେ ଦେଖି କହିପାରିବା ଯେ ଏହାର ରଙ୍ଗ ଧଳା, ହାତରେ ସ୍ପର୍ଶ କରି କହିପାରିବା ଯେ ଏହା ଚିକ୍କଣ ଏବଂ ନାକରେ ଶୁଙ୍ଘି ତା' ଗନ୍ଧ ମଧ୍ୟ କହିଦେଇ ପାରିବା । ଯଦି ଆମକୁ ଆଉ ଗୋଟିଏ ପ୍ରଶ୍ନ ପଚରାଯାଏ ଯେ, ଏହି ବଟିକାଟି ଆପେ ଆପେ ତିଆରି ହୋଇଛି ବା ଏହାର କେହି ନିର୍ମାତା ଅଛି ? ତେବେ ଏଠାରେ ଆମ ଆଖି, କାନ, ନାକ, ହାତ କିଛି କାମ କରିବ ନାହିଁ । କାରଣ ଔଷଧଟି ଆପେ ଆପେ ତିଆରି ହୋଇଗଲା ବା କୌଣସି କାରଖାନାରେ ତାକୁ ତିଆରି କରାଗଲା, ତାହା ଆମ ଆଖି ଦେଖିନାହିଁ । ଏ ସ୍ଥାନରେ ଆମେ ଜ୍ଞାନର ଦ୍ୱିତୀୟ ମାଧ୍ୟମ 'ବୁଦ୍ଧି' ପ୍ରୟୋଗ କରି ଉତ୍ତର ଦେଉ ଯେ, କୌଣସି ରୋଗର ଉପଚାର ପାଇଁ ସୁନ୍ଦର ଡିଜାଇନ୍‌ରେ ଗଢ଼ାଯାଇଥିବା ବଟିକାଟି କଦାପି ଆପେ ଆପେ ତିଆରି ହୋଇନଥିବ । ନିଶ୍ଚୟ ଏହାର କେହି ନିର୍ମାତା ଅଛି ।

କିନ୍ତୁ ଏହାପରେ ଯଦି ଆମକୁ ଆଉ ଗୋଟିଏ ପ୍ରଶ୍ନ ପଚରାଯାଏ ଯେ, ଏଇ ବଟିକାଟିର ଉପଯୋଗୀତା କ'ଣ ବା ଏହାକୁ କେଉଁ ରୋଗ ପାଇଁ କିପରି ବ୍ୟବହାର କରାଯିବ, ତେବେ ଏଠାରେ ଆମ ବୁଦ୍ଧି କାମ କରିବ ନାହିଁ । ଆମେ ଘଣ୍ଟା ଘଣ୍ଟା ଧରି ଚିନ୍ତାକଲେ ମଧ୍ୟ ତା'ର ବ୍ୟବହାର ସମ୍ପର୍କରେ ଜାଣିପାରିବା ନାହିଁ । ଏହି ସ୍ଥାନରେ ଆମକୁ ଔଷଧ ନିର୍ମାତାଙ୍କ ଦିଗ୍‌ଦର୍ଶନର ଆବଶ୍ୟକତା ପଡ଼େ । ଜଣେ ଚିକିତ୍ସକ, ଯାହାଙ୍କୁ ଔଷଧ ନିର୍ମାତା ଔଷଧର କମ୍ପୋଜିସନ୍ ଓ ବ୍ୟବହାର ସମ୍ପର୍କରେ ସୂଚନା ଦେଇଥାନ୍ତି, ଆମକୁ କୁହନ୍ତି ଯେ, ଏହା କେଉଁ ରୋଗର ଉପଚାର ପାଇଁ ଉଦ୍ଦିଷ୍ଟ ଏବଂ ଏହାର ବ୍ୟବହାର ବିଧି କ'ଣ ।

## ବୁଦ୍ଧି ଯଥେଷ୍ଟ ନୁହେଁ

ମଣିଷ ଜୀବନର ଅନେକ ବଡ଼ ବଡ଼ ପ୍ରଶ୍ନ ରହିଛି ଯାହାର ଉତ୍ତର ବୁଦ୍ଧି ଦେଇପାରିବ ନାହିଁ । ଉଦାହରଣସ୍ୱରୂପ, ବୁଦ୍ଧି ଦ୍ୱାରା ବ୍ରହ୍ମଙ୍କ ସତ୍ତା ଉପଲବ୍ଧି କରିହେବ; କିନ୍ତୁ ତାଙ୍କର ସ୍ୱରୂପ କ'ଣ ଜାଣିହେବ ନାହିଁ । ଈଶ୍ୱର ଦେଖିବାକୁ କିପରି ବା ତାଙ୍କର ବିଶେଷତ୍ୱଗୁଡ଼ିକ କ'ଣ, ଏହା ଜାଣିହେବ ନାହିଁ । ବୁଦ୍ଧିଦ୍ୱାରା ବ୍ରହ୍ମଜ୍ଞାନ ସମ୍ଭବ ନୁହେଁ ।

ବୁଦ୍ଧି ଈଶ୍ୱରଙ୍କର ସେବା-ଉପାସନାର ଯଥାର୍ଥତା ପ୍ରତିପାଦନ କରିପାରେ; କିନ୍ତୁ ଏହି ସେବା-ଉପାସନା କିପରି କରାଯିବ ତାହା ଜାଣିପାରିବ ନାହିଁ ।

ସେହିପରି ମଣିଷର କର୍ତ୍ତବ୍ୟ ବା ସ୍ରଷ୍ଟାଙ୍କର ବିଧିବିଧାନ, ସ୍ୱର୍ଗ, ନର୍କ, ଦେବଦୂତ, ପରଲୋକ, ପୁନର୍ଜୀବନ ଆଦି ଅନେକ ପ୍ରମୁଖ ପ୍ରଶ୍ନର ଉତ୍ତର ବୁଦ୍ଧି ଦେଇପାରିବ ନାହିଁ ।

ନ୍ୟାୟ ପୁଣ୍ୟ ଓ ଅନ୍ୟାୟ ପାପ ବୋଲି ମୋଟାମୋଟି ଭାବେ ମଣିଷ ଜାଣିପାରିବ; କିନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ କର୍ମ ନ୍ୟାୟ ବା ଅନ୍ୟାୟ ସବୁ କ୍ଷେତ୍ରରେ ଏହା ଜାଣିପାରିବ ନାହିଁ । ଉଦାହରଣସ୍ୱରୂପ, ମଣିଷ ହୁଅନ୍ତୁ ବା ଅନ୍ୟ ଜୀବଜନ୍ତୁ, ଜୀବହତ୍ୟା ଯେ 'ଅନ୍ୟାୟ' ଏହା ଆମେ ଜାଣିପାରିବା । କିନ୍ତୁ କେଉଁ ପରିସ୍ଥିତିରେ ଏହା 'ନ୍ୟାୟ', ତାହା କେବଳ ବୁଦ୍ଧି ଦ୍ୱାରା ଆମେ ଜାଣିପାରିବା ନାହିଁ ।

ଏହାଛଡ଼ା, ଯେଉଁ କର୍ମରେ ଲାଭ ଓ କ୍ଷତିର ଉଭୟ ଦିଗ ରହିଥାଏ, କିମ୍ବା କର୍ମଟି ଜଣକ ପାଇଁ ଲାଭଦାୟକ ହେଉଥିବାବେଳେ ଅନ୍ୟ କାହାରି ପାଇଁ କ୍ଷତିକାରକ ହୁଏ, ସେଭଳି କର୍ମ ନ୍ୟାୟ ବା ଅନ୍ୟାୟ, ତାହା ମଣିଷ ନିଷ୍ପତ୍ତି କରିପାରିବ ନାହିଁ । ସେ ଦ୍ୱନ୍ଦ୍ୱରେ ପଡ଼ିଯିବ । ଏଭଳି କ୍ଷେତ୍ରରେ ମଧ୍ୟ ବୁଦ୍ଧି ମାର୍ଗଦର୍ଶନ କରିବାକୁ ସମର୍ଥ ହେବନାହିଁ ।

ଏହାବ୍ୟତୀତ ବୁଦ୍ଧି ଆମ ଇନ୍ଦ୍ରିୟ ନିୟନ୍ତ୍ରଣରେ ଥାଏ, ତେଣୁ ପକ୍ଷପାତିତା ମଧ୍ୟ କରେ ।

ତେଣୁ ଯେଉଁ କ୍ଷେତ୍ରରେ ବୁଦ୍ଧି କାର୍ଯ୍ୟ କରିବାକୁ ସମର୍ଥ ନୁହେଁ, ସେ କ୍ଷେତ୍ରରେ ବାଟ ଦେଖାଇବା ପାଇଁ ସ୍ରଷ୍ଟା ମଣିଷକୁ ଜ୍ଞାନର ତୃତୀୟ ମାଧ୍ୟମ ମଧ୍ୟ ଦେଇଛନ୍ତି, ଯାହାକୁ 'ଦୈବବାଣୀ' କୁହନ୍ତି । ଆରବୀ ଭାଷାରେ ଏହାକୁ 'ୱ୍ହୀ' ଏବଂ ଇଂରାଜୀରେ 'Revelations' କୁହାଯାଏ । ଏହା ହେଉଛି ଜ୍ଞାନର ସର୍ବୋଚ୍ଚ ମାଧ୍ୟମ ଏବଂ ଏହା ସ୍ରଷ୍ଟାଙ୍କର ସ୍ୱତନ୍ତ୍ର ପ୍ରତିନିଧି ବା ବାର୍ତ୍ତାବହଙ୍କ ମାଧ୍ୟମରେ ଆସେ ।

ଯଦି ମଣିଷ କେବଳ ବୁଦ୍ଧି ବଳରେ ସଦ୍ ଜୀବନଯାପନର ମାର୍ଗ ଜାଣିପାରନ୍ତା, ତେବେ ପୃଥିବୀରେ କୌଣସି ଦିବ୍ୟଗ୍ରନ୍ଥ ବା ଦିବ୍ୟପୁରୁଷଙ୍କର ଆବିର୍ଭାବ ହୋଇ ନଥାଆନ୍ତା । ମାର୍ଗଦର୍ଶନ ଏଇଥିପାଇଁ କରାଯାଏ ଯେ, ମନୁଷ୍ୟ ପାଖରେ ସତ୍ ଓ ଅସତ୍ ମଧ୍ୟରେ ଥିବା ପାର୍ଥକ୍ୟ ସ୍ପଷ୍ଟ ହୋଇଯାଉ ଏବଂ ଅସତ୍‌କର୍ମ କରି ପରଲୋକରେ ସେ ନର୍କ ଯନ୍ତ୍ରଣା ନ ଭୋଗୁ ।

## ନିୟମ ନିର୍ଦ୍ଧାରଣ ସ୍ରଷ୍ଟାଙ୍କର ଅଧିକାର

ମଣିଷ ସାମାଜିକ ପ୍ରାଣୀ । ସମାଜରେ ତା'ର ଅନେକ ଆବଶ୍ୟକତା ଅଛି । ତାର ଖାଦ୍ୟ ଦରକାର, ବସ୍ତ୍ର ଦରକାର ଏବଂ ଚଳିବା ପାଇଁ ଉପାର୍ଜନର ଏକ ପନ୍ଥା ଦରକାର । ତାକୁ ବ୍ୟବସାୟ ବା ଚାକିରି କରିବାକୁ ପଡ଼େ, ବିବାହ କରିବାକୁ ପଡ଼େ ଏବଂ ସନ୍ତାନସନ୍ତତିଙ୍କର ପ୍ରତିପୋଷଣ କରିବାକୁ ପଡ଼େ । ତାକୁ ପାରିବାରିକ ଓ ସାମାଜିକ ସମ୍ପର୍କ ମଧ୍ୟ ରକ୍ଷା କରିବାକୁ ପଡ଼େ । କାର୍ଯ୍ୟ ସିଦ୍ଧି ଓ ମୋକ୍ଷପ୍ରାପ୍ତି ପାଇଁ ତାକୁ ସ୍ରଷ୍ଟାଙ୍କ ସହ ସମ୍ପର୍କ ମଧ୍ୟ ରକ୍ଷା କରିବାକୁ ପଡ଼େ । ଏଗୁଡ଼ିକ ମଣିଷର ସ୍ୱାଭାବିକ ଆବଶ୍ୟକତା ଏବଂ ଏହାକୁ ପୂରଣ କରିବାର ଏକାଧିକ ବାଟ ରହିଛି । କିଛି ଲୋକ ଗୋଟିଏ ନିର୍ଦ୍ଦିଷ୍ଟ ବାଟକୁ ଠିକ୍ ବୋଲି

କହୁଥିବାବେଳେ ଅନ୍ୟ କେତେକ ତାକୁ ଭୁଲ୍ ମଧ୍ୟ କହନ୍ତି । ପୂଜା ଉପାସନାର ଗୋଟିଏ ପଦ୍ଧତିକୁ ଜଣେ ଠିକ୍ କହେ ତ ତାକୁ ଆଉ ଜଣେ ଭୁଲ୍ କହେ । ଗୋଟିଏ ଖାଦ୍ୟକୁ ଜଣେ ବିଧିସମ୍ମତ ଭାବୁଥିବାବେଳେ ଆଉ ଜଣେ ତାକୁ ନିଷିଦ୍ଧ ମଣେ । ପରିଧାନର ଗୋଟିଏ ଶୈଳୀକୁ କିଛି ଲୋକ ଅଶାଳୀନ ମନେ କରୁଥିବାବେଳେ ଆଉ କିଛି ଲୋକ ତାକୁ ଆଧୁନିକତା ଭାବନ୍ତି । ସେହିପରି ଉପାର୍ଜନର ଗୋଟିଏ ପନ୍ଥାକୁ ଜଣେ ସତ୍‌ପନ୍ଥା କହେ ତ ଆଉ ଜଣେ ତାକୁ ଅସତ୍ ମନେକରେ । ଏହିପରି ପ୍ରତ୍ୟେକ କ୍ଷେତ୍ରରେ ମତଭେଦ ରହିଛି । ଅବଶ୍ୟ ଉଭୟ ବାଟରେ ମଣିଷର ଆବଶ୍ୟକତା ପୂରଣ ହୋଇଯିବ । ଚୋରି ପଇସାରେ ଆସିଥିବା ରୁଟି ଖଣ୍ଡକ ଭୋକ ମେଣ୍ଟାଇବାକୁ ମନା କରିବ ନାହିଁ କିମ୍ବା ଭଉଣୀକୁ ବାହା ହୋଇପଡ଼ିଲେ ସନ୍ତାନ ପ୍ରାପ୍ତିରେ କୌଣସି ବାଧା ସୃଷ୍ଟି ହେବନାହିଁ । କିନ୍ତୁ ଏହା ମଣିଷ ଓ ତା' ସମାଜର ଘୋର ଅନିଷ୍ଟ ସାଧନ କରିବ ।

ତେଣୁ ଠିକ୍ ବାଟ କେଉଁଟି ଆଉ ଭୁଲ ବାଟ କେଉଁଟି, ତାହା କିଏ ନିଷ୍ପତ୍ତି କରିବ ? ସତ୍ ଓ ଅସତ୍ ମଧ୍ୟରେ ପାର୍ଥକ୍ୟ ତାକୁ କିଏ କହିବ ? କିଏ ପୃଥିବୀର କୋଟି କୋଟି ନର-ନାରୀଙ୍କୁ ସଦ୍ ଜୀବନଯାପନ ପାଇଁ ମାର୍ଗଦର୍ଶନ କରିବ ଏବଂ ସେମାନଙ୍କର ଆଧ୍ୟାତ୍ମିକ, ନୈତିକ, ସାମାଜିକ, ଅର୍ଥନୈତିକ ଓ ନାଗରିକ ଜୀବନ ପାଇଁ ବିଧିବିଧାନ ଦେବ ?

କ'ଣ ମଣିଷ ଦେଇପାରିବ ? ଯିଏ ଭୁଲ କରେ ?

ଭୁଲିଯିବା ଯାହାର ସ୍ୱଭାବ ?

ଯିଏ ଇନ୍ଦ୍ରିୟ ବନ୍ଧନରୁ ମୁକ୍ତ ନୁହେଁ ?

ଯାହାର ମାନବୀୟ ଦୁର୍ବଳତା ରହିଛି ?

ଯିଏ ଆପଣା ଓ ପର ମଧ୍ୟରେ ପ୍ରଭେଦ ବିଚାରି ପାତର-ଅନ୍ତର କରେ ?

ଯାହାର ଜ୍ଞାନ ସୀମିତ ?

ଯିଏ ନିଜର ଭଲ-ମନ୍ଦ ମଧ୍ୟ ଜାଣିପାରେ ନାହିଁ ?

ଯିଏ ଦ୍ୱନ୍ଦ୍ୱରେ ପଡ଼ିଯାଏ ଏବଂ ନିଜେ ବାଟବଣା ହୋଇଯାଏ ? ସେ ଦୁର୍ବଳ ମନୁଷ୍ୟ କ'ଣ ବିଶ୍ୱର କୋଟି କୋଟି ନର-ନାରୀଙ୍କୁ ସତ୍‌ମାର୍ଗ

ଦେଖାଇପାରିବ ଏବଂ ସେମାନଙ୍କ ଜୀବନର ପ୍ରତ୍ୟେକ କ୍ଷେତ୍ର ପାଇଁ ନିର୍ଭୁଲ ନୀତିନିୟମ ଦେଇପାରିବ ?

ନିଶ୍ଚିତ ଭାବରେ ନୁହେଁ । କେବଳ ସମାଜକୁ ଶୃଙ୍ଖଳିତ ରଖିବା ପାଇଁ ବା ଅପରାଧ ନିରାକରଣ ପାଇଁ ମଣିଷ କିଛି ନିୟମ ଗଢ଼ିଥାଏ । ଯେହେତୁ ଏହି ନୀତିନିୟମଗୁଡ଼ିକ ସୀମିତ ଜ୍ଞାନ ଓ ଅଭିଜ୍ଞତା ଆଧାରରେ ଗଢ଼ା ଯାଇଥାଏ, ସେଥିରେ ମାନବୀୟ ଦୁର୍ବଳତାର ପ୍ରଭାବ ଥାଏ, ଯେଉଁଥିପାଇଁ ଏହି ଆଇନ୍ କାନୁନ୍‌ଗୁଡ଼ିକୁ ବାରମ୍ବାର ସଂଶୋଧନ କରିବାର ଆବଶ୍ୟକତା ପଡ଼େ । ଏହି ନୀତିନିୟମଗୁଡ଼ିକ ସାଧାରଣତଃ ସମାଜ ବା ଦେଶର ଅନୁଶାସନ ପାଇଁ ଉଦ୍ଦିଷ୍ଟ ଥାଏ । ଏଗୁଡ଼ିକ ମଣିଷର ଆଧାତ୍ମିକ ବା ନୈତିକ ଦିଗ୍‌ଦର୍ଶନ କରିପାରେ ନାହିଁ ।

ନିର୍ଭୁଲ ମାର୍ଗଦର୍ଶନ କେବଳ ସ୍ରଷ୍ଟା ହିଁ କରିପାରିବେ । କାରଣ ସେଇ ହିଁ ବର୍ତ୍ତମାନ, ଭୂତ ଓ ଭବିଷ୍ୟତର ଜ୍ଞାତା । ତାଙ୍କରି ଜ୍ଞାନ ଅନନ୍ତ । ସେଇ ହିଁ ଦୋଷଶୂନ୍ୟ, ତାଙ୍କର ଦୃଷ୍ଟି ସମସ୍ତଙ୍କୁ ସମାନ ଭାବରେ ଦେଖେ ଏବଂ ସେଇ ହିଁ ସମଗ୍ର ମାନବ ଜାତିର କଲ୍ୟାଣ କାମନା କରନ୍ତି । ଏହା ବ୍ୟତୀତ ଯେହେତୁ ସେ ମଣିଷର ସ୍ରଷ୍ଟା ଏବଂ ତାଙ୍କରି କୃପା ବଳରେ ମଣିଷ ଜୀବିତ ରହେ, ତା' ପାଇଁ ଜୀବନଶୈଳୀ ନିର୍ଦ୍ଧାରଣ କରିବା ତାଙ୍କର ଅଧିକାର ମଧ୍ୟ । ନିର୍ମାତା ଯେପରି ନିଜ ନିର୍ମିତ ବସ୍ତୁ ପାଇଁ ନିୟମ ଗଢ଼ନ୍ତି, ସେହିପରି ସ୍ରଷ୍ଟା ମଣିଷ ପାଇଁ ବିଧାନ ଗଢ଼ନ୍ତି । ତାଙ୍କ ଦ୍ୱାରା ପ୍ରକାଶିତ ନିର୍ଦ୍ଦେଶନାମାକୁ 'ଦିବ୍ୟଗ୍ରନ୍ଥ' ଏବଂ ତାଙ୍କ ଦ୍ୱାରା ନିଯୁକ୍ତ ପ୍ରତିନିଧିକୁ 'ଈଶ୍ୱରଦୂତ' ବା ଆରବୀରେ 'ନବୀ' କୁହାଯାଏ । ଯେପରି ନିର୍ମାତାଙ୍କ ନିର୍ଦ୍ଦେଶକୁ ଉପେକ୍ଷା କରି ଔଷଧର ବ୍ୟବହାର କ୍ଷତିକାରକ ହୁଏ, ସେହିପରି ସ୍ରଷ୍ଟାଙ୍କ ଆଜ୍ଞାବିରୋଧି ଆଚରଣଗୁଡ଼ିକ ମଣିଷ ପାଇଁ ଅବଶ୍ୟ ଅନିଷ୍ଟକର ହେବ, ଏଥିରେ ସନ୍ଦେହ ନାହିଁ ।

ଯଦି ଈଶ୍ୱର ମାର୍ଗଦର୍ଶନ ନକରନ୍ତି, ମଣିଷ ନିଜ କର୍ତ୍ତବ୍ୟ ପାଳନରେ ଭୁଲ କରନ୍ତା ଏବଂ ପରଲୋକରେ ବିଚାର ସମୟରେ ଯୁକ୍ତି ବାଢ଼ନ୍ତା ଯେ ତା'ର ଭୁଲ କ'ଣ ? ଈଶ୍ୱର ତ ତା' ପାଇଁ କୌଣସି ମାର୍ଗଦର୍ଶକ ପଠାଇ ନଥିଲେ ବା କୌଣସି ନିତୀ-ନିୟମ ଦେଇ ନଥିଲେ । ତେଣୁ ନିଜ ବୁଦ୍ଧି-ବିଚାର ଅନୁସାରେ ସେ ଯାହା ଠିକ୍ ଭାବିଲା, କଲା । ତେଣୁ ସେ ଦଣ୍ଡ କାହିଁକି ପାଇବ ? କୁର୍‌ଆନ ଏହାକୁ ସ୍ପଷ୍ଟ କରି କହିଛି—

''ଈଶ୍ୱରଦୂତମାନେ (ସତ୍‌କର୍ମ ପାଇଁ ସ୍ୱର୍ଗସୁଖର) ଶୁଭସମ୍ବାଦ ଦିଅନ୍ତି ଏବଂ (କୁକର୍ମ ପାଇଁ ନର୍କଯନ୍ତ୍ରଣା ବିଷୟରେ) ସତର୍କ କରନ୍ତି, ଯେପରିକି ଈଶ୍ୱରଦୂତମାନଙ୍କର ଆସିଯିବା ପରେ ଅଲ୍ଲାହଙ୍କ ନିକଟରେ ଲୋକମାନଙ୍କର କୌଣସି ବାହାନା ନ ରହୁ ।''

**କୁର୍‌ଆନ, ୪ : ୧୬୫**

ଏହି କାରଣ ଯୋଗୁଁ ଈଶ୍ୱର ନିଜ ପ୍ରତିନିଧିଙ୍କ ମାଧ୍ୟମରେ ସ୍ପଷ୍ଟ ନୀତି-ନିୟମ ଦିଅନ୍ତି । ତେଣୁ ପ୍ରତ୍ୟେକଙ୍କ ପାଇଁ ସତ୍‌ମାର୍ଗର ଅନୁସନ୍ଧାନ କରିବା ଅପରିହାର୍ଯ୍ୟ । ଯେଉଁ ରାଜ୍ୟରେ ମଣିଷ ରହେ, ସେ ରାଜ୍ୟର ଶାସନକର୍ତ୍ତାଙ୍କ ନିୟମ-କାନୁନ ନ ଜାଣିବା ତାକୁ ନିର୍ଦ୍ଦୋଷ ପ୍ରମାଣିତ କରିପାରିବ ନାହିଁ । ସେହିପରି ଏହି ଜଗତ ମଧ୍ୟରେ ବାସ କରି ଜଗତକର୍ତ୍ତାଙ୍କ ନିୟମ ନ ଜାଣିବା ଗୋଟିଏ ବଡ଼ ଅପରାଧ । ଯେମିତି ଆମେ ଚିକିତ୍ସା ବିଷୟରେ ଭଲରୂପେ ଅନୁସନ୍ଧାନ କରି ଉପଯୁକ୍ତ ଡାକ୍ତର ପସନ୍ଦ କରୁ, ମାଲିମକଦ୍ଦମା ବିଷୟରେ ଉପଯୁକ୍ତ ଓକିଲ ବାଛିଥାଉ, ଧର୍ମ ସଂକ୍ରାନ୍ତରେ ମଧ୍ୟ ସେହି ସୂତ୍ର ପ୍ରୟୋଗ କରାଯିବା ଉଚିତ ।



# ମାର୍ଗଦର୍ଶନ ପଦ୍ଧତି

ବୃକ୍ଷଲତା ଗତିଶୀଳ ନୁହଁନ୍ତି, ତେଣୁ ସେମାନଙ୍କର ଆହାର ପାଦତଳେ ମିଳିଯାଏ । ପଶୁପକ୍ଷୀ ଚାଲବୁଲ କରିପାରନ୍ତି, ତେଣୁ ସେମାନଙ୍କ ଆହାର ଧରାପୃଷ୍ଠରେ ବିକ୍ଷିପ୍ତ ଭାବରେ ଥାଏ, ଯାହାକୁ ସେମାନେ ସଂଗ୍ରହ କରନ୍ତି । ନିଜର ଯତ୍ନ ଓ ସୁରକ୍ଷା ବିଷୟରେ ମଧ୍ୟ ସେମାନଙ୍କୁ ଶିକ୍ଷା ଦିଆଯାଇଥାଏ ।

ମାନବଶିଶୁ ଜନ୍ମପରେ ନିଜ ଖାଦ୍ୟପେୟ ବା ଭଲମନ୍ଦ ବିଷୟରେ ପଶୁପକ୍ଷୀଙ୍କ ପିଲାଙ୍କଠାରୁ ମଧ୍ୟ ଆହୁରି ଅଧିକ ଅସହାୟ ଅବସ୍ଥାରେ ଥାଏ । ତେଣୁ ତା' ଲାଳନ-ପାଳନ ବାପା-ମାଆଙ୍କ ଦ୍ୱାରା କରାଯାଏ । ମା' ମନରେ ମମତା ଭରି ଦିଆଯାଏ । ସେ ନିଜେ ନ ଖାଇ ପିଲାକୁ ଖୁଆଏ, ନିଜେ ନ ପିନ୍ଧି ପିଲାକୁ ପିନ୍ଧାଏ । ରାତି ଉଜାଗର ରହି ତା' ସେବା କରିଥାଏ । ପିଲା ଖଟରୁ ଖସିପଡୁଥିଲେ ମା' ତାକୁ ଖସିବାକୁ ଦିଏନାହିଁ କିମ୍ବା ସେ ନିଆଁକୁ ଧରିବାକୁ ଯାଉଥିଲେ ମା' ତା' ହାତ ଧରିପକାଏ । ସଦାବେଳେ ସେ ତା' ଯତ୍ନ ନେଉଥାଏ ।

ଧିରେ ଧିରେ ଶିଶୁଟି ଯେତେବେଳେ ବଡ଼ ହୋଇ ନିଜ ଭଲ-ମନ୍ଦ ବୁଝିପାରେ, ତା' ଯତ୍ନର ବ୍ୟବସ୍ଥା ବଦଳିଯାଏ । ଆପଣ ଲକ୍ଷ କରିବେ, ଯେଉଁ ମା' ନିଜ ହାତରେ ପିଲାର ସେବାଯତ୍ନ କରୁଥିଲା, ସେ ତାହା କରିବା ଛାଡ଼ିଦିଏ । ନିଜ ହାତରେ ଖୁଆଇଦେବା, ଗାଧୋଇଦେବା ବା ପିଠି ଥାପୁଡ଼େଇ ଶୁଆଇଦେବା ଛାଡ଼ିଦିଏ । ଏବେ ସେ ତାକୁ କେବଳ ମୌଖିକ ଉପଦେଶ ଦିଏ ।

ପିଲାଟି ଯେତେବେଳେ ପ୍ରାପ୍ତ ବୟସ୍କ ହୋଇଯାଏ, ପୁଣି ଏହି ଐଶ୍ୱରୀୟ ବ୍ୟବସ୍ଥାରେ ପରିବର୍ତ୍ତନ ହୁଏ । ପ୍ରତିପୋଷଣର ଦାୟିତ୍ୱ ବଦଳେ । ନିଜ ଆହାର ସେ ନିଜେ ସଂଗ୍ରହ କରେ । ନିଜ ସୁରକ୍ଷା ଦାୟିତ୍ୱ ନିଜେ ବହନ କରେ ଏବଂ ନିଜ ଭଲ-ମନ୍ଦ ବିଷୟରେ ନିଜେ ନିଷ୍ପତ୍ତି ନେଇଥାଏ । ଏହିଠାରେ

ମନୁଷ୍ୟକୁ ଜୀବନଯାପନ କରିବାପାଇଁ ବିକ୍ଷିପ୍ତ ଭାବରେ ପଡ଼ିଥିବା ଅନେକ ଚଲାପଥର ସମ୍ମୁଖୀନ ହେବାକୁ ପଡ଼େ, ଆଉ ବାଟବଣା ହେବାର ସମ୍ଭାବନା ଥାଏ । ନିଜର ଶ୍ରେଷ୍ଠତମ ସୃଷ୍ଟିର ଦିଗ୍‌ଦର୍ଶନ ପାଇଁ ପରମେଶ୍ୱର ଏ କ୍ଷେତ୍ରରେ ଅନ୍ୟ ବ୍ୟବସ୍ଥା କରନ୍ତି । ସେ ମନୁଷ୍ୟ ନିକଟକୁ ବାର୍ତ୍ତାବହ ପଠାନ୍ତି ଯିଏ କି ତାଙ୍କର ପ୍ରତିନିଧିତ୍ୱ କରନ୍ତି । ତାଙ୍କରି ମାଧ୍ୟମରେ ଦିବ୍ୟଗ୍ରନ୍ଥ ଆସେ ଏବଂ ସେ ହିଁ ତା'ର ବ୍ୟାଖ୍ୟା କରନ୍ତି । ଯେଉଁ ମାଧ୍ୟମରେ ସେମାନଙ୍କୁ ନିର୍ଦ୍ଦେଶ ଦିଆଯାଏ, ତାକୁ ଦୈବବାଣୀ କୁହାଯାଏ । ବର୍ତ୍ତମାନ ଈଶ୍ୱରଙ୍କ 'ଧର୍ମଦୂତ' ଏବଂ 'ଦିବ୍ୟଗ୍ରନ୍ଥ' ପିତାମାତାଙ୍କର ଭୂମିକା ଗ୍ରହଣ କରନ୍ତି । ଲିଖିତ ଓ ମୌଖିକ ଉଭୟ ଉପାୟରେ ମନୁଷ୍ୟର ମାର୍ଗଦର୍ଶନ କରାଯାଇଥାଏ । ଏହା ପ୍ରାୟ ସେହିପରି, ଯେପରି ବରିଷ୍ଠ ଅଧିକାରୀଙ୍କ ଦ୍ୱାରା ସରକାରୀ ନିର୍ଦ୍ଦେଶ ଦିଆଯାଇଥାଏ, କିମ୍ବା ରାଜଦୂତମାନଙ୍କ ଦ୍ୱାରା ପ୍ରଜାମାନଙ୍କୁ ରାଜାଙ୍କ ଆଦେଶ ପ୍ରଦାନ କରାଯାଇଥାଏ । ଏହି ଅବସ୍ଥାରେ ମନୁଷ୍ୟ ତା'ର ମନୋନୀତ ମାର୍ଗ ପାଇଁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ ରହେ ।



# ଦୈବବାଣୀ

ମହାମାନ୍ୟ ଈଶ୍ୱରଦୂତଗଣ ଯେଉଁ ଉପଦେଶ ଦିଅନ୍ତି, ଯାହା କରିବାର ଆଦେଶ ଦିଅନ୍ତି ବା ଯାହା ବାରଣ କରନ୍ତି, ଈଶ୍ୱରଙ୍କ ନିର୍ଦ୍ଦେଶ ଅନୁଯାୟୀ କରନ୍ତି । ଏହି ନିର୍ଦ୍ଦେଶ ସେମାନଙ୍କୁ ଯେଉଁ ମାଧ୍ୟମରେ ଦିଆଯାଏ, ତାକୁ 'ଦୈବବାଣୀ' ବା ଆରବୀ ଭାଷାରେ 'ଓ୍ୱହୀ' କୁହାଯାଏ । ଏହା ତିନୋଟି ଉପାୟରେ ହୋଇଥାଏ ।[1]

ପ୍ରଥମତଃ, ଈଶ୍ୱରଦୂତଙ୍କ ଅନ୍ତରରେ ସିଧାସଳଖ ଦୈବବାଣୀ ପ୍ରକଟ ହୁଏ, ଯାହାକୁ ସେ ସ୍ପଷ୍ଟ ଶୁଣନ୍ତି ।

ଦ୍ୱିତୀୟତଃ, ସ୍ରଷ୍ଟା ଆଢୁଆଳରେ ରହି ନିଜ ଧର୍ମଦୂତଙ୍କ ସହ ବାର୍ତ୍ତାଳାପ କରନ୍ତି । ଧର୍ମଦୂତ ଶୂନ୍ୟରୁ ଶବ୍ଦ ଶୁଣନ୍ତି; କିନ୍ତୁ କିଏ କହୁଛି, ଦେଖାଯାଏ ନାହିଁ । ଏହାକୁ ଶୂନ୍ୟବାଣୀ ବା ଆକାଶବାଣୀ କୁହାଯାଏ ।

ତୃତୀୟ ମାଧ୍ୟମଟି ହେଉଛି ଦେବଦୂତଙ୍କ ମାଧ୍ୟମ । ଦେବଦୂତଙ୍କୁ ଇଂରାଜୀରେ 'Angel' ଏବଂ ଉର୍ଦ୍ଦୁରେ 'ଫରିସ୍ତା' କୁହାଯାଏ । ମହାମାନ୍ୟ ଦେବଦୂତ ଧର୍ମଦୂତଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ ଈଶ୍ୱରଙ୍କ ବାର୍ତ୍ତା ପ୍ରଦାନ କରନ୍ତି ।

କେତେକଙ୍କୁ ଦୈବବାଣୀ ମାଧ୍ୟମରେ 'ଦିବ୍ୟଗ୍ରନ୍ଥ' ମଧ୍ୟ ପ୍ରଦାନ କରାଯାଇଛି, ଯାହା ବିଶୁଦ୍ଧ ବ୍ରହ୍ମବାଣୀ ଏବଂ ସେଥିରେ ଧର୍ମଦୂତଙ୍କ କଥା ମିଶି ନଥାଏ । ବ୍ରହ୍ମବାଣୀର ସଂକଳନକୁ ଦିବ୍ୟଗ୍ରନ୍ଥ ବା ଆରବୀରେ 'କିତାବ୍' କୁହାଯାଏ ଏବଂ ଈଶ୍ୱରଦୂତଙ୍କ ବାଣୀଗୁଡ଼ିକୁ 'କଥା' ବା ଆରବୀରେ 'ହଦିସ୍' କୁହାଯାଏ । ଏଠାରେ ଧ୍ୟାନଦେବା ଉଚିତ ଯେ ବ୍ରହ୍ମବାଣୀ (କିତାବ) ଏବଂ ଈଶ୍ୱରଦୂତଙ୍କ ବାଣୀ (ହଦିସ୍) ଉଭୟ ଦୈବବାଣୀ; କିନ୍ତୁ ପାର୍ଥକ୍ୟ ଏତିକି ଯେ, ପ୍ରଥମଟି ଅବିକଳ ଈଶ୍ୱରବାଣୀ ଯାହା କେବଳ ଈଶ୍ୱରଦୂତଙ୍କ ମୁଖରୁ

[1] କୁରଆନ ୪୨ : ୫୧

ନିଃସୃତ ହୁଏ । ଏହାର ପ୍ରତିଟି ଶବ୍ଦ ଓ ଭାବ ଉଭୟ ସ୍ୱୟଂ ଇଶ୍ୱରଙ୍କର । ଅନ୍ୟ ପକ୍ଷରେ ଇଶ୍ୱରଦୂତଙ୍କର ବାଣୀ ବା 'ହଦିସ୍' ଇଶ୍ୱରଙ୍କ ଆଜ୍ଞା; କିନ୍ତୁ ଇଶ୍ୱରବାଣୀ ନୁହେଁ । ଦୈବବାଣୀ ଦ୍ୱାରା ନିଜ ପ୍ରତି ପ୍ରକଟ ହୋଇଥିବା ନିର୍ଦ୍ଦେଶଗୁଡ଼ିକର ଭାବକୁ ଇଶ୍ୱରଦୂତ ନିଜ ଶବ୍ଦରେ ପ୍ରକାଶ କରିଥାଆନ୍ତି । ଅର୍ଥାତ୍, ହଦିସ୍‌ର ଭାବାର୍ଥ ଇଶ୍ୱରଙ୍କର; କିନ୍ତୁ ଶବ୍ଦରୂପ ଇଶ୍ୱରଦୂତଙ୍କର । ଆଉ ଗୋଟିଏ କଥା ଏଠାରେ ଜାଣିରଖିବା ଉଚିତ ଯେ, ଧର୍ମଦୂତଙ୍କର ପ୍ରତ୍ୟେକ କଥା ଯାହା ସେ ବ୍ୟକ୍ତିଗତ ରୂପେ ଜଣେ ମାନବ ହୋଇଥିବା ଦୃଷ୍ଟିରୁ କହନ୍ତି, ତାହା ଦୈବବାଣୀ ନୁହେଁ, କିନ୍ତୁ ତାଙ୍କର ପ୍ରତ୍ୟେକ ଶିକ୍ଷା, ଯାହା ସେ ଇଶ୍ୱରଙ୍କ ପ୍ରତିନିଧି ରୂପେ ଦିଅନ୍ତି, ଅନିବାର୍ଯ୍ୟ ରୂପେ ଦୈବବାଣୀ ।

ଦୈବବାଣୀ ହେଉଛି ଇଶ୍ୱରଙ୍କର ବିଶୁଦ୍ଧ ହିତୋପଦେଶ । ଯେଉଁମାନେ ଦୈବବାଣୀ ଅନୁଯାୟୀ ଜୀବନଯାପନ କରନ୍ତି ଏବଂ ତାକୁ ହିଁ ନିଜ ପାଇଁ ଅନ୍ତିମ ବିଧାନ ମାନନ୍ତି, ସେମାନେ ପଥଭ୍ରଷ୍ଟ ହୁଅନ୍ତି ନାହିଁ, କାରଣ ସେମାନେ ସ୍ୱୟଂ ଇଶ୍ୱରଙ୍କ ଆଦେଶ ଅନୁସାରେ ଚଳନ୍ତି । ଦୈବବାଣୀ ବ୍ୟତୀତ ଅନ୍ୟ କୌଣସି ଶିକ୍ଷାରେ ତ୍ରୁଟି ଥିବାର ସମ୍ଭାବନା ରହିଛି, ଯାହା ମଣିଷକୁ ପଥଭ୍ରଷ୍ଟ କରିପାରେ । ପ୍ରୟାଗ ବିଶ୍ୱବିଦ୍ୟାଳୟର ଜଣେ ଗବେଷକ ପଣ୍ଡିତ ବେଦପ୍ରକାଶ ଉପାଧ୍ୟାୟ ଏ ବିଷୟରେ କୁହନ୍ତି—

> ''ଧର୍ମ ବିଷୟରେ ସଠିକ୍ ବୋଧଗମ୍ୟତା ନଥିବା କୌଣସି ବ୍ୟକ୍ତି, ଯଦି କୌଣସି ଭଣ୍ଡଗୁରୁର ଅନ୍ଧ ଅନୁକରଣ କରେ, ତେବେ ଅବଶ୍ୟ ସେ ଖାଲରେ ପଡ଼ିବ । ତେଣୁ ଏଭଳି ପତନରୁ ନିଜକୁ ରକ୍ଷା କରିବାକୁ ହେଲେ, ଧର୍ମର ପ୍ରକୃତ ଅର୍ଥ ଜାଣିବା ଆବଶ୍ୟକ । ପ୍ରଶ୍ନ ଉଠେ, ସତ୍‌ଜ୍ଞାନର ଉତ୍ସ କ'ଣ ? ଉତ୍ତର ହେଉଛି, ଏହା କେବଳ ଋଷିମାନଙ୍କ ପ୍ରତି ଇଶ୍ୱରଙ୍କ ଦ୍ୱାରା ପ୍ରକଟିତ ହୋଇଥିବା ଦୈବବାଣୀ । ଏହି ଦୈବବାଣୀଗୁଡ଼ିକୁ ପରେ ଧର୍ମଗ୍ରନ୍ଥରେ ସଂକଳନ କରାଯାଇଥିଲା ।''[2]



(2) Religious Unity in the Light of Vedas (Foreward)—Dr. Ved Prakash Upadhyay.

# ମାର୍ଗଦର୍ଶନରେ ଈଶ୍ୱରଦୂତଙ୍କର ଭୂମିକା

ମନୁଷ୍ୟର ମାର୍ଗଦର୍ଶନ ଦୈବବାଣୀ ମାଧ୍ୟମରେ କରାଯାଏ, କିନ୍ତୁ ଏଥିରେ ମହାମାନ୍ୟ ଈଶ୍ୱରଦୂତଙ୍କର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । କାରଣ ସେଇ ହିଁ ଦିବ୍ୟଗ୍ରନ୍ଥର ମାଧ୍ୟମ ଏବଂ ଏହାର ବ୍ୟାଖ୍ୟା ମଧ୍ୟ ସେଇ କରନ୍ତି । ଦିବ୍ୟଗ୍ରନ୍ଥ ଧର୍ମର ସିଦ୍ଧାନ୍ତ ଓ ମୌଳିକ ନୀତିନିୟମ ବର୍ଣ୍ଣନା କରେ, କିନ୍ତୁ ଏହାକୁ କାର୍ଯ୍ୟକାରୀ କରିବାର ବିସ୍ତୃତ ବିବରଣୀ ଦିଏନାହିଁ । ଉଦାହରଣସ୍ୱରୂପ ସେଥିରେ ବିଭିନ୍ନ ଉପାସନା ଯଥା—ପ୍ରାର୍ଥନା, ଉପବାସ, ଦାନ ଓ ତୀର୍ଥ ଆଦିର ଆଦେଶ ଥାଏ, କିନ୍ତୁ ଏଗୁଡ଼ିକ କରିବାର ବିଶଦ ବିଧି ବା କର୍ମକାଣ୍ଡର ବର୍ଣ୍ଣନା ନଥାଏ । ତେଣୁ, ସେଗୁଡ଼ିକୁ ସ୍ପଷ୍ଟ ଭାବରେ ବ୍ୟାଖ୍ୟା କରିବା ଏବଂ ବ୍ୟବହାରିକ ଭାବେ ନିଜେ ପାଳନ କରି ଦେଖାଇଦେବା ପାଇଁ ଈଶ୍ୱରଦୂତ ନିଯୁକ୍ତ ହୋଇଥାଆନ୍ତି । ମନେକରନ୍ତୁ, ଯଦି ସରକାର ଗୋଟିଏ ବଡ଼ କୋଠା ବା ବ୍ରିଜ୍ ନିର୍ମାଣ କରିବାକୁ ସ୍ଥିର କରନ୍ତି, ତେବେ ସେ ନକ୍ସା ସହ ନିଜ ଇଞ୍ଜିନିୟର ମଧ୍ୟ ନିଯୁକ୍ତ କରନ୍ତି । ଇଞ୍ଜିନିୟରଙ୍କ ଉପସ୍ଥିତିରେ ପ୍ରୋଜେକ୍ଟର ଟିକିନିଖି ବିବରଣୀ ନକ୍ସାରେ ଉଲ୍ଲେଖ କରିବାର ଆବଶ୍ୟକତା ପଡ଼େନାହିଁ । ସେ ବିଷୟରେ ଆବଶ୍ୟକୀୟ ନିର୍ଦ୍ଦେଶ ଇଞ୍ଜିନିୟର ଦିଅନ୍ତି । ଧର୍ମଦୂତଙ୍କ ମାର୍ଗଦର୍ଶନ ବିନା କେବଳ ଈଶ୍ୱରୀୟ ଗ୍ରନ୍ଥ ଉଚିତ ମାର୍ଗଦର୍ଶନ କରିପାରିବ ନାହିଁ । ଆସନ୍ତୁ, ଗୋଟିଏ ଉଦାହରଣରୁ ଈଶ୍ୱରଦୂତଙ୍କ ଭୂମିକାର ଗୁରୁତ୍ୱ ବୁଝିବାକୁ ଚେଷ୍ଟା କରିବା ।

ମନେକରନ୍ତୁ, କୌଣସି ଅଞ୍ଚଳରେ ପ୍ରବଳ ବନ୍ୟା ହେଲା । ଖାଦ୍ୟ, ପାନୀୟ, ଔଷଧ ଓ ବସ୍ତ୍ରର ଅଭାବ ଯୋଗୁଁ ହଜାର ହଜାର ବାସହୀନ ଲୋକ ଘୋର ଦୁର୍ଦ୍ଦଶା ଭୋଗୁଥିବାର ଖବର ସରକାରଙ୍କ ଦୃଷ୍ଟିକୁ ଆସିଲା । ତେଣୁ ସରକାର ସେମାନଙ୍କ ସହାୟତା ପାଇଁ ଭାରତୀୟ ସେନାର ଗୋଟିଏ ୟୁନିଟ୍‌କୁ ନିର୍ଦ୍ଦେଶ ଦେଲେ ଯେ ସେମାନେ ତୁରନ୍ତ ବନ୍ୟା ପ୍ରପୀଡ଼ିତ ଅଞ୍ଚଳକୁ ଯାଇ ଲୋକଙ୍କୁ ଉଦ୍ଧାର କରନ୍ତୁ ଏବଂ ସେମାନଙ୍କ ରହିବା, ଖାଇବା ଓ ଚିକିତ୍ସାର ଆବଶ୍ୟକୀୟ ବ୍ୟବସ୍ଥା କରନ୍ତୁ । ସରକାରଙ୍କ ଏହି ନିର୍ଦ୍ଦେଶ ସେନାର ପ୍ରତ୍ୟେକ କର୍ମଚାରୀ ପାଖକୁ ଆସେନାହିଁ, ବରଂ କେବଳ ସେନାଅଧିକାରୀଙ୍କ ପାଖକୁ ଆସେ ।

ତାହା ମଧ୍ୟ ଟେଲିଗ୍ରାମ ବା ଫ୍ୟାକ୍ସ ଯୋଗେ ଏକ ସଂକ୍ଷିପ୍ତ ନିର୍ଦ୍ଦେଶ । ବିପନ୍ନମାନଙ୍କୁ କିପରି ସାହାଯ୍ୟ କରାଯିବ, ତା'ର ବିଶଦ ବିବରଣୀ ସେଥିରେ ନଥାଏ । ସେହି ଅଞ୍ଚଳକୁ ସେନାଦଳ କେଉଁ ବାଟଦେଇ ଯିବେ, ବୋଟ୍ ଦ୍ୱାରା ଯିବେ ବା ହେଲିକ୍ୟାପ୍ଟର୍ ଦ୍ୱାରା ଯିବେ, କାହାକୁ କିପରି ସାହାଯ୍ୟ କରିବେ, କେଉଁଠି ଆଶ୍ରୟ ବ୍ୟବସ୍ଥା କରିବେ, ସେମାନଙ୍କ ପାଇଁ ଖାଦ୍ୟପାନୀୟର କିଭଳି ବ୍ୟବସ୍ଥା କରିବେ, ଚିକିତ୍ସା ପାଇଁ କେଉଁ ଡାକ୍ତରଖାନାକୁ ନେବେ—ଏଗୁଡ଼ିକ ବିଷୟରେ ବିସ୍ତୃତ ଭାବରେ ସେହି ସରକାରୀ ନିର୍ଦ୍ଦେଶନାମାରେ ଉଲ୍ଲେଖ କରାଯାଇ ନଥାଏ । ଏଗୁଡ଼ିକ ସେନାଧିକାରୀଙ୍କର ଦାୟିତ୍ୱ । ସେହି ଅଧିକାରୀ ସେଠାକାର ଅବସ୍ଥା ଓ ଆବଶ୍ୟକତା ଅନୁସାରେ ସରକାରଙ୍କ ସହ ପ୍ରତ୍ୟକ୍ଷ ଯୋଗସୂତ୍ର ରକ୍ଷା କରି ସେନାକୁ ନିର୍ଦ୍ଦେଶ ଦିଅନ୍ତି । ଏହିଭଳି ଭାବରେ କାର୍ଯ୍ୟଟି ସୁରୁଖୁରୁରେ ସମ୍ପାଦିତ ହୋଇଯାଏ ।

ଈଶ୍ୱର ମଧ୍ୟ ପ୍ରାୟ ଏହିଭଳି ବ୍ୟବସ୍ଥା ମନୁଷ୍ୟର ମାର୍ଗଦର୍ଶନ କରିବାପାଇଁ କରିଥାଆନ୍ତି । ଏଥିପାଇଁ ସେ ନିଜର ପ୍ରତିନିଧି ନିଯୁକ୍ତ କରନ୍ତି ଏବଂ ତାଙ୍କ ସହ ସର୍ବଦା ଯୋଗସୂତ୍ର ରକ୍ଷା କରିଥାଆନ୍ତି । ତେଣୁ ଦିବ୍ୟଗ୍ରନ୍ଥରେ ସବୁକଥା ବିସ୍ତୃତ ଭାବରେ ଉଲ୍ଲେଖ କରିବା ଦରକାର ପଡ଼େନାହିଁ । ଏହା ସୁବିଧାଜନକ ମଧ୍ୟ ହୁଅନ୍ତା ନାହିଁ । ଯେହେତୁ ଈଶ୍ୱରଦୂତ ଈଶ୍ୱରଙ୍କ ସେବା-ଉପାସନାର ନିୟମ କୁହନ୍ତି ଏବଂ ଈଶ୍ୱରବାଣୀର ବ୍ୟାଖ୍ୟା କରନ୍ତି, ତାଙ୍କୁ ଅମାନ୍ୟ କରିବା ଈଶ୍ୱରଙ୍କୁ ଅମାନ୍ୟ କରିବା ସହ ସମାନ । ଠିକ୍ ଯେପରି ସରକାରଙ୍କ ଦ୍ୱାରା ନିଯୁକ୍ତ ଅଧିକାରୀଙ୍କ ଅବମାନନା ସରକାରଙ୍କ ଅବମାନନା ସହ ସମାନ । ଯଦି ଜଣେ ନାଗରିକ ତା' ପାଇଁ ନିଯୁକ୍ତ ପଦାଧିକାରୀଙ୍କୁ ଅବଜ୍ଞା କରେ, ତେବେ ସେ ସରକାରଙ୍କୁ ଅବଜ୍ଞା କଲା । ସୁତରାଂ ଦଣ୍ଡନୀୟ ହେବ । ସରକାରଙ୍କୁ ମାନିବା ଅର୍ଥ ତାଙ୍କ ତରଫରୁ ଯେତେବେଳେ ଯେଉଁ ଅଧିକାରୀ ନିଯୁକ୍ତ ହେବେ, ତାଙ୍କୁ ମାନିବାକୁ ପଡ଼ିବ । ଏହାହିଁ ସରକାରଙ୍କ ନିୟମ । ସେହିପରି ଈଶ୍ୱରଙ୍କୁ ମାନିବା ଅର୍ଥ ତାଙ୍କର ଯେଉଁ ପ୍ରତିନିଧି ଯେତେବେଳେ ନିଯୁକ୍ତ ହେବେ, ତାଙ୍କୁ ମାନିବା ଉଚିତ ଏବଂ ତାଙ୍କ ଉପଦେଶ ଗ୍ରହଣ କରିବା ଉଚିତ । ଅନ୍ୟଥା ଏହା ସ୍ୱୟଂ ଈଶ୍ୱରଙ୍କ ପ୍ରତି ଅବମାନନା ହେବ ।

## ଦିବ୍ୟଗ୍ରନ୍ଥ ଯଥେଷ୍ଟ ନୁହେଁ

କେତେକ ଲୋକ କୁହନ୍ତି ଯେ, କେବଳ କୁର୍ଆନ ହିଁ ମାର୍ଗଦର୍ଶନ ପାଇଁ ଯଥେଷ୍ଟ ଏବଂ ଈଶ୍ୱରଦୂତଙ୍କ ଶିକ୍ଷାର କୌଣସି ଆବଶ୍ୟକତା ନାହିଁ ।

ସେମାନେ ଈଶ୍ୱରଦୂତଙ୍କର ଶିକ୍ଷାକୁ ଅଦରକାରୀ ମନେ କରନ୍ତି । ଏହା ଏକ ବିପଜନକ ଚିନ୍ତାଧାରା ।

ଆମେ ଜାଣି ରଖିବା ଉଚିତ ଯେ, ନିଜ ପ୍ରତିନିଧିଙ୍କ ମାଧ୍ୟମରେ ମନୁଷ୍ୟର ମାର୍ଗଦର୍ଶନ କରିବା ପ୍ରତ୍ୟେକ ଯୁଗରେ ଈଶ୍ୱରଙ୍କର ଏକ ପରମ୍ପରା ରହିଆସିଛି । କିନ୍ତୁ ପ୍ରତ୍ୟେକ ଈଶ୍ୱରଦୂତଙ୍କୁ ସ୍ୱତନ୍ତ୍ର ରୂପେ ଗୋଟିଏ ଲେଖାଏଁ ଦିବ୍ୟଗ୍ରନ୍ଥ ଦେବା ତାଙ୍କର ପରମ୍ପରା ନୁହେଁ । ସାରା ବିଶ୍ୱରେ ଲକ୍ଷାଧିକ ଈଶ୍ୱରଦୂତଙ୍କର ଆବିର୍ଭାବ ହୋଇଛି, ମାତ୍ର ଲକ୍ଷାଧିକ ଗ୍ରନ୍ଥ ଆସିନାହିଁ । ବେଳେବେଳେ ଏକକାଳୀନ ଅନେକ ଈଶ୍ୱରଦୂତ କାର୍ଯ୍ୟରତ ରହିଛନ୍ତି, କିନ୍ତୁ ସମସ୍ତଙ୍କୁ ଗୋଟିଏ ଗୋଟିଏ ଗ୍ରନ୍ଥ ଦିଆଯାଇ ନାହିଁ । ଆବଶ୍ୟକତା ଅନୁଯାୟୀ କେତେକ ଈଶ୍ୱରଦୂତଙ୍କୁ ଗ୍ରନ୍ଥ ଦିଆଯାଇଛି । କିନ୍ତୁ ଈଶ୍ୱରଦୂତଙ୍କର ଶିକ୍ଷା ହିଁ ସବୁବେଳେ ଈଶ୍ୱରଙ୍କର ବିଧାନ ରହିଆସିଛି । ଆମେ ଜାଣିବା ଉଚିତ ଯେ ଈଶ୍ୱରବାଣୀ ବହନ କରିଥିବା ଗ୍ରନ୍ଥ ଈଶ୍ୱରଦୂତମାନଙ୍କ ଶିକ୍ଷାର ଏକ ଅଂଶବିଶେଷ । ଶାସ୍ତ୍ରୀୟ ବ୍ୟାଖ୍ୟାରେ ଅବଶ୍ୟ ଏହାର ମୁଖ୍ୟ ତଥା ନିର୍ଣ୍ଣୟାତ୍ମକ ଭୂମିକା ରହିଛି । କିନ୍ତୁ ଈଶ୍ୱରଦୂତଙ୍କ ପ୍ରତି ଗ୍ରନ୍ଥ ପ୍ରକଟ ନ ହେଲେ ମଧ୍ୟ ତାଙ୍କର ଆଦେଶ ପାଳନୀୟ । ଯେଉଁ ଈଶ୍ୱରଦୂତମାନଙ୍କୁ ଗ୍ରନ୍ଥ ଦିଆଯାଇ ନଥିଲା, ସେମାନଙ୍କର ଶିକ୍ଷାର ଅନୁପାଳନ ମଧ ତତ୍କାଳୀନ ସମାଜ ପାଇଁ ଅନିବାର୍ଯ୍ୟ ଥିଲା ଏବଂ ଏହି କାରଣରୁ ନିଜ ନିଜ ସମୟର ସେହି ଈଶ୍ୱରଦୂତମାନଙ୍କୁ ଅସ୍ୱୀକାର କରିଥିବା ଲୋକମାନଙ୍କୁ କୁରଆନ୍ ନାସ୍ତିକ ଏବଂ ଅବଜ୍ଞାକାରୀ ରୂପେ ଘୋଷଣା କରିଛି । କୁର୍ଆନ ମହାମାନ୍ୟ ଈଶ୍ୱରଦୂତଙ୍କ ଶିକ୍ଷାର ଏକ ଅଂଶ । ଯଦି ଏହା ଅବତୀର୍ଣ୍ଣ ହୋଇ ନଥାଆନ୍ତା, ତଥାପି ମହାମାନ୍ୟ ମୁହମ୍ମଦଙ୍କର ନିର୍ଦ୍ଦେଶ ପାଳନ କରିବା ଆମ ପାଇଁ ଅନିବାର୍ଯ୍ୟ ହୋଇ ଥାଆନ୍ତା, କାରଣ ଅନ୍ୟ ଈଶ୍ୱରଦୂତଙ୍କ ଶିକ୍ଷା ପରି ତାଙ୍କ ଶିକ୍ଷା ମଧ ଦୈବବାଣୀ । ଈଶ୍ୱରଦୂତ କେବେହେଲେ ନିଜ ମନରୁ କୈଣସି ଆଦେଶ ଦିଅନ୍ତି ନାହିଁ । ଏହି କାରଣରୁ କୁରଆନ୍ କହେ—

> "ସେ (ମୁହମ୍ମଦ) ନିଜ ଇଚ୍ଛାର ବଶବର୍ତ୍ତୀ ହୋଇ କିଛି କୁହନ୍ତି ନାହିଁ । ବରଂ ତାଙ୍କ ପ୍ରତି ଆଦିଷ୍ଟବାଣୀ ହୁଏ ।''

**(କୁରଆନ ୫୩ : ୩-୪)**

ଏହାବ୍ୟତୀତ ଯେମିତି ପୂର୍ବରୁ ଆଲୋଚନା କରାଗଲା, ପ୍ରତ୍ୟେକ ଆଦେଶର ବିସ୍ତୃତ ବିବରଣୀ ବା ପ୍ରତିଟି ଉପାସନା ବିଧି ଯଥା—ନମାଜ୍, ଉପବାସ, ଜକାତ୍ ଓ ହଜ୍ ଆଦି ପାଳନ କରିବାର ବିଧି ମଧ କୁରଆନ୍‌ରେ ବର୍ଣ୍ଣନା କରାଯାଇ ନାହିଁ ।

ଈଶ୍ୱରଦୂତଙ୍କର ଶିକ୍ଷା ଅନୁସାରେ ହିଁ ଏଗୁଡ଼ିକୁ ପାଳନ କରାଯାଏ । କୁରଆନ୍ ଅନୁସାରେ ଏହା ଈଶ୍ୱରଦୂତଙ୍କର ଦାୟୀତ୍ୱ (କୁରଆନ ୧୬ : ୪୪, ୩ : ୧୬୪) । ତେଣୁ, ଯିଏ ତାଙ୍କର ନିର୍ଦ୍ଦେଶ ପାଳନ କରେ, ସେ ପ୍ରକୃତରେ କୁର୍‌ଆନର ହିଁ ଅନୁପାଳନ କରେ । କୁର୍‌ଆନ ସ୍ପଷ୍ଟ ରୂପେ ଘୋଷଣା କରିଛି—

> "ଯିଏ ଈଶ୍ୱରଦୂତଙ୍କର ଆଜ୍ଞା ପାଳନ କରେ, ସେ ଅବଶ୍ୟ ଅଲ୍ଲାହ୍‌ଙ୍କର ଆଦେଶ ପାଳନ କରେ ।''
>
> **(କୁରଆନ ୪ : ୮୦)**

ମନେ କରନ୍ତୁ, ଜଣେ ମୁସଲମାନ ସମ୍ପୂର୍ଣ୍ଣ ନିରକ୍ଷର ଏବଂ ସେ କୁର୍‌ଆନ ପଢି ନାହିଁ, କିନ୍ତୁ ସେ ନିର୍ଭରଯୋଗ୍ୟ ସୂତ୍ରରୁ ମହାମାନ୍ୟ ମୁହମ୍ମଦଙ୍କର ଶିକ୍ଷାଗୁଡ଼ିକୁ ସଂଗ୍ରହ କରି ନିଷ୍ଠାର ସହ ପାଳନ କରେ । ଏହି ଲୋକଟି ଯଦିଓ କୁର୍‌ଆନ ପଢିବାର ସୌଭାଗ୍ୟ ପାଇନାହିଁ, ତଥାପି ସେ କୁର୍‌ଆନର ହିଁ ଅନୁପାଳନ କରିଛି । ଏହାର କାରଣ ହେଉଛି ଯେ ମହାମାନ୍ୟ ମୁହମ୍ମଦଙ୍କର ଶିକ୍ଷା ହେଉଛି ସମ୍ପୂର୍ଣ୍ଣ କୁର୍‌ଆନର ବ୍ୟାଖ୍ୟା । ଅନ୍ୟ ପକ୍ଷରେ, ଯଦି କୌଣସି ଲୋକ ମୁହମ୍ମଦଙ୍କର ଶିକ୍ଷାକୁ ଅଦରକାରୀ ମନେ କରି ତ୍ୟାଗ କରିଦିଏ ଏବଂ ନିଜ ଇଚ୍ଛା ଅନୁଯାୟୀ କୁରଆନ୍‌ର ଅନୁପାଳନ କରେ, ସେ ଇସଲାମ ଧର୍ମ ପାଳନ କରେନାହିଁ ।

ଈଶ୍ୱରଙ୍କୁ ପ୍ରେମ କରୁଥିବା ଭକ୍ତମାନେ ତାଙ୍କ ବାର୍ତ୍ତାବହଙ୍କର ଆଜ୍ଞା ପାଳନ କରନ୍ତୁ ବୋଲି ଉପଦେଶ ଦେଇ କୁରଆନ୍ କହିଛି—

> "(ହେ ମୁହମ୍ମଦ) କୁହ—(ହେ ମନୁଷ୍ୟଗଣ) ଯଦି ତୁମେ ଅଲ୍ଲାହ୍‌ଙ୍କୁ ପ୍ରେମ କରୁଥାଅ, ତେବେ ମୋତେ ଅନୁସରଣ କର, ତେବେ ଅଲ୍ଲାହ୍ ତୁମ୍ଭମାନଙ୍କୁ ପ୍ରେମ କରିବେ ଏବଂ ତୁମ୍ଭମାନଙ୍କର ଦୋଷ କ୍ଷମା କରିଦେବେ ଏବଂ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ, ସଦା କରୁଣାମୟ ।''
>
> **(କୁରଆନ, ୩ : ୩୧)**

ଈଶ୍ୱରଦୂତ ହେଉଛନ୍ତି ଈଶ୍ୱରଙ୍କର ପ୍ରତିନିଧି ଏବଂ ସେ ତାଙ୍କରି ତରଫରୁ କୁହନ୍ତି । ତାଙ୍କ ଆଦେଶର ଅବମାନନା ସ୍ୱୟଂ ଈଶ୍ୱରଙ୍କର ଅବମାନନା । ତେଣୁ କୁରଆନ୍ ଏଭଳି ଲୋକଙ୍କୁ ସାବଧାନ କରି କହିଛି—

> ''ସୁତରାଂ ଯେଉଁମାନେ ଈଶ୍ୱରଦୂତଙ୍କ ଆଦେଶର ବିରୁଦ୍ଧାଚରଣ କରନ୍ତି, ସେମାନେ ସାବଧାନ ହେବା ଉଚିତ ଯେ, ସେମାନେ କୌଣସି ବିପତ୍ତିର ଶିକାର ହୋଇ ନ ଯାଆନ୍ତୁ କିମ୍ବା ସେମାନଙ୍କ

ପ୍ରତି(ଅଲ୍ଲାହ୍‌ଙ୍କ ତରଫରୁ) କୌଣସି ଯନ୍ତ୍ରଣାଦାୟକ ଶାସ୍ତି ପହଞ୍ଚି ନ ଯାଉ।''

**(କୁରଆନ, ୨୪ : ୬୩)**

ତେଣୁ ଧର୍ମରେ ଈଶ୍ୱରଦୂତଙ୍କର ଭୁମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ, ଏହା ସହଜରେ ଅନୁମେୟ। ଯଦି ଈଶ୍ୱରଦୂତଙ୍କର ଉପଦେଶ ଅଦରକାରୀ ବା ଅନିଷ୍ଟକାରକ ହୋଇ ଥାଆନ୍ତା, ତେବେ କୂରଆନ୍ ଏ ବିଷୟରେ ସ୍ୱଷ୍ଟ ଆଦେଶ ଦେଇ ଥାଆନ୍ତା। ମାତ୍ର କୁରଆନ ବାରମ୍ବାର ଈଶ୍ୱର ଓ ଈଶ୍ୱରଦୂତ ଉଭୟଙ୍କର କଥା ମାନିବାର ଆଦେଶ ଦେଇଛି। ସେଥିରେ କେଉଁଠି ହେଲେ ଈଶ୍ୱରଦୂତଙ୍କର କଥା ନ ମାନିବାର ଆଦେଶ ନାହିଁ।

ଅନ୍ୟ ପକ୍ଷରେ ଏହି ବିପଜ୍ଜନକ ଚିନ୍ତାଧାରା ବିଷୟରେ ସତର୍କ କରି ମହାମାନ୍ୟ ମୁହମ୍ମଦ କହିଯାଇଛନ୍ତି—

''ସାବଧାନ ! ମୋତେ କୁରଆନ୍ ଦିଆଯାଇଛି ଏବଂ ତା' ସହିତ ଆଉ କିଛି ମଧ୍ୟ ଦିଆଯାଇଛି। ତଥାପି ସମୟ ଆସୁଛି ଯେତେବେଳେ ପେଟପୂରା ଭୋଜନ କରି ନରମ ଗଦି ଉପରେ ବସିଥିବା ଲୋକ କହିବ—(କେବଳ) 'କୁରଆନ୍‌କୁ ହିଁ ଧର, ସେଥିରେ ଯାହା ବୈଧ ଅଛି ତାକୁ ବୈଧ ଏବଂ ଯାହା ଅବୈଧ ଅଛି ତାକୁ ଅବୈଧ ଗ୍ରହଣ କର।' ସାବଧାନ ରୁହ !''

**(ଅବୁ ଦାଉଦ, ହଦିସ ୪୫୮୭)**

''ନରମ ଗଦି ଉପରେ ଆଉଜି ବସିଥିବା ଏମିତି କୌଣସି ଲୋକ ବିଷୟରେ ମୁଁ ଯେପରି ନ ଶୁଣେ ଯିଏ ମୋ ଦ୍ୱାରା ବୈଧ ବା ଅବୈଧ କରାଯାଇଥିବା କର୍ମ ବିଷୟରେ ଶୁଣି କହେ—ଆମେ ଜାଣୁ ନା, ଯାହା ଆମେ ଅଲ୍ଲାହଙ୍କ ଗ୍ରନ୍ଥରେ ପାଇଲୁ, ତାହା ପାଳନ କଲୁ।''

**(ଅବୁ ଦାଉଦ, ହଦିସ ୪୫୮୮)**

ଈଶ୍ୱରଦୂତଙ୍କର ଅନୁସରଣ କରିବା ଏବଂ ତାଙ୍କର ଆଜ୍ଞା ପାଳନ କରିବା ଧର୍ମର ଏକ ମୌଳିକ ସିଦ୍ଧାନ୍ତ। କୌଣସି ସିଦ୍ଧାନ୍ତ ବା ମୌଳିକ ନିୟମକୁ ଅସ୍ୱୀକାର କରୁଥିବା ବ୍ୟକ୍ତି ଧର୍ମର ପରିସର ମଧ୍ୟରୁ ବାହାରିଯାଏ ।



# ଈଶ୍ୱରଦୂତମାନଙ୍କର ବିଶେଷତ୍ୱ

ଜଣେ ସାଧାରଣ ମଣିଷ ଏବଂ ଜଣେ ଈଶ୍ୱରଦୂତଙ୍କ ମଧ୍ୟରେ ଆକାଶ ଓ ପାତାଳର ପ୍ରଭେଦ ଥାଏ । ସ୍ରଷ୍ଟାଙ୍କ ପ୍ରତିନିଧିତ୍ୱ କରୁଥିବା ପୁରୁଷୋତ୍ତମଗଣ ଯଦିଓ ରକ୍ତମାଂସରେ ଗଢ଼ା ମଣିଷ; କିନ୍ତୁ ଆମ ପରି ସାଧାରଣ ମନୁଷ୍ୟ ନୁହନ୍ତି । ସେମାନଙ୍କର କେତୋଟି ମୁଖ୍ୟ ବିଶେଷତ୍ୱ ଥାଏ ।

(୧) ପ୍ରଥମତଃ, ସେମାନେ ଅସାଧାରଣ ରୂପେ ଚରିତ୍ରବାନ ଓ ସଦ୍‌ଗୁଣ ସମ୍ପନ୍ନ ହୁଅନ୍ତି । ଏଭଳି ଚରିତ୍ର ସାଧୁସନ୍ଥମାନଙ୍କର ମଧ୍ୟ ନଥାଏ । ସେମାନେ ସତ୍ୟନିଷ୍ଠ, ସଦାଚାରୀ ହୋଇ ଜନ୍ମଗ୍ରହଣ କରିଥାଆନ୍ତି ଏବଂ ଅସତ୍ୟ ଓ ଅନ୍ୟାୟ ପ୍ରତି ସେମାନଙ୍କର ସ୍ୱଭାବତଃ ଘୃଣାଭାବ ଥାଏ, ଯେମିତି କିଛି ଲୋକଙ୍କର ପ୍ରାକୃତିକ ଭାବେ କେତେକ ନିର୍ଦ୍ଦିଷ୍ଟ ଖାଦ୍ୟ ପ୍ରତି ବା କାର୍ଯ୍ୟ ପ୍ରତି ଘୃଣା ଥାଏ । ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଲ୍ୟକାଳରୁ ହିଁ ସେମାନଙ୍କ ମହାନତାର ସୂଚନା ମିଳିଥାଏ । ଈଶ୍ୱରଙ୍କ ପ୍ରତିନିଧିତ୍ୱ କରିବା ପୂର୍ବରୁ ମଧ୍ୟ ସେମାନେ ଅନ୍ୟାୟ ଓ ଅପକର୍ମଠାରୁ ଦୂରେଇ ରହନ୍ତି । ଯେହେତୁ ସେମାନେ ଭବିଷ୍ୟତ ସମାଜ ପାଇଁ ଜଣେ ଉତ୍ତମ ମଣିଷର ନମୁନା ହୁଅନ୍ତି, ସେମାନଙ୍କର ଶିକ୍ଷା ଦିବ୍ୟ ବିଧାନ ହୁଏ ଏବଂ କୋଟି କୋଟି ଲୋକ ତାଙ୍କୁ ଆଦର୍ଶ ରୂପେ ଗ୍ରହଣ କରି ସେମାନଙ୍କର ଅନୁକରଣ କରନ୍ତି, ସେଥିପାଇଁ ସେମାନଙ୍କୁ ଈଶ୍ୱର କଡ଼ା ସୁରକ୍ଷା ମଧ୍ୟରେ ରଖିଥାଆନ୍ତି । ନିଜର ମନୋନିତ ପ୍ରତିନିଧିମାନଙ୍କୁ ସେ ଅନ୍ୟାୟ-ଅପକର୍ମ କରିବାକୁ ଦିଅନ୍ତି ନାହିଁ ।

(୨) ଏହି ମହାପୁରୁଷମାନେ ସତ୍ୟପ୍ରେମୀ ଏବଂ ସତ୍ୟର ପ୍ରଚାର ପାଇଁ ନିଯୁକ୍ତ ହୋଇଥାଆନ୍ତି । ତେଣୁ ସେମାନେ କେବେ ମିଥ୍ୟା କୁହନ୍ତି ନାହିଁ । ଶତ୍ରୁମାନେ ମଧ୍ୟ ସେମାନଙ୍କର ସଚ୍ଚୋଟତାକୁ ସ୍ୱୀକାର କରନ୍ତି ।

(୩) ସେମାନେ ଶତପ୍ରତିଶତ ବିଶ୍ୱସନୀୟ । କେବେ କାହାରି ବିଶ୍ୱାସ ଭଙ୍ଗ କରନ୍ତି ନାହିଁ କିମ୍ବା କାହାରିକୁ ପ୍ରତାରିତ କରିବା ଦେଖାଯାଏ ନାହିଁ ।

ସେମାନେ କଥା ଦେଲେ କଥା ରକ୍ଷା କରନ୍ତି । ଜଣେ ମିଥ୍ୟାବାଦୀ ବା ପ୍ରତାରକକୁ କେହି କାହିଁକି ବିଶ୍ୱାସ କରିବ ?

(୪) ସେମାନଙ୍କର ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ହେଉଛି ଯେ, ସେମାନଙ୍କ ପ୍ରତି ପ୍ରତ୍ୟକ୍ଷ ଦୈବବାଣୀ ହୁଏ ।

(୫) ମହାମାନ୍ୟ ଈଶ୍ୱରଦୂତଗଣଙ୍କର କଥା ଓ କାର୍ଯ୍ୟରେ କୌଣସି ପ୍ରଭେଦ ନଥାଏ । ଯେଉଁ ଶିକ୍ଷା ସେମାନେ ଅନ୍ୟମାନଙ୍କୁ ଦିଅନ୍ତି, ନିଜେ ମଧ୍ୟ ତାହା ନିଷ୍ଠାର ସହ ପାଳନ କରନ୍ତି । ଯେଉଁ ସତ୍‌କର୍ମର ଉପଦେଶ ଦିଅନ୍ତି, ତାହା ପ୍ରଥମେ ନିଜେ ଆଚରଣ କରନ୍ତି ଏବଂ ଯେଉଁ ଅପକର୍ମଗୁଡ଼ିକ ଛାଡ଼ିବାକୁ କୁହନ୍ତି, ନିଜ ଆଚରଣ ଦ୍ୱାରା ତାର ଦୃଷ୍ଟାନ୍ତ ଦିଅନ୍ତି ।

(୬) ଏହି ଦିବ୍ୟପୁରୁଷମାନଙ୍କର ଅନ୍ୟ ଗୋଟିଏ ବିଶେଷତ୍ୱ ହେଉଛି ଯେ ସେମାନେ ଅନ୍ୟର ମଙ୍ଗଳ ପାଇଁ ନିଜେ କଷ୍ଟ ସ୍ୱୀକାର କରନ୍ତି; କିନ୍ତୁ ନିଜ ସୁଖ ପାଇଁ ଅନ୍ୟକୁ କଷ୍ଟ ଦିଅନ୍ତି ନାହିଁ ।

(୭) ମହାମାନ୍ୟ ଈଶ୍ୱରଦୂତଗଣଙ୍କର ଏକା ମିସନ ଥିବା ଯୋଗୁଁ ସେମାନେ ପରସ୍ପରକୁ ସମର୍ଥନ କରନ୍ତି । କୌଣସି ଧର୍ମଦୂତ ଅନ୍ୟ ଜଣକୁ ସମାଲୋଚନା କରନ୍ତି ନାହିଁ ବା ତାଙ୍କର ଅସମ୍ମାନ କରନ୍ତି ନାହିଁ ।

(୮) ସେମାନେ ଭିନ୍ନ ଭିନ୍ନ ଧର୍ମର ପ୍ରଚାର କରନ୍ତି ନାହିଁ ବା କୌଣସି ନୂତନ ଧର୍ମର ଶିକ୍ଷା ଦିଅନ୍ତି ନାହିଁ । ବରଂ ସମସ୍ତେ ପୂର୍ବ ଦିବ୍ୟଶିକ୍ଷାର ପୁନଃସ୍ଥାପନା କରନ୍ତି । ଯେହେତୁ ସମାଜରେ ନାନାପ୍ରକାର କୁସଂସ୍କାର ଓ ଅନ୍ଧବିଶ୍ୱାସ ପଶିଯାଇଥାଏ ଏବଂ ଲୋକେ ବିଭିନ୍ନ ପ୍ରଥା ଓ ପରମ୍ପରା ବନ୍ଧନରେ ବାନ୍ଧି ହୋଇଯାଇ ଥାଆନ୍ତି, ତେଣୁ ପ୍ରତ୍ୟେକ ଈଶ୍ୱରଦୂତ ସବୁ ପଥ ଛାଡ଼ି ତାଙ୍କରି ପଥ ଅନୁକରଣ କରିବାର ଉପଦେଶ ଦିଅନ୍ତି । ଏହାର ଅର୍ଥ ନୁହେଁ ଯେ ସେମାନେ ଏକ ନୂତନ ଧର୍ମର ଶିକ୍ଷା ଦିଅନ୍ତି ବା ପୂର୍ବ ଦିବ୍ୟଶିକ୍ଷାକୁ ଭୁଲ୍ ବୋଲି ଘୋଷଣା କରନ୍ତି, ଯେହେତୁ ତାଙ୍କର ଶିକ୍ଷା ପ୍ରଚଳିତ ପରମ୍ପରା ବିରୋଧି ହୋଇଥାଏ । ତେଣୁ ଲୋକଙ୍କୁ ଏହା ନୂଆ ଧର୍ମ ପରି ଲାଗେ ।

(୯) ସେମାନଙ୍କୁ ଭୂତ ଭବିଷ୍ୟତର ଅନେକ ଖବର ଦୈବବାଣୀ ମାଧ୍ୟମରେ ଦିଆଯାଏ । ତେଣୁ ସେମାନଙ୍କ ଭବିଷ୍ୟବାଣୀ କେବେହେଲେ ମିଥ୍ୟା ହୁଏନାହିଁ ।

(୧୦) ସେମାନେ ଅନେକ ଅଲୌକିକ କାର୍ଯ୍ୟ ପ୍ରଦର୍ଶନ କରନ୍ତି, ଯାହାକୁ ଚମତ୍କାରିତା କୁହାଯାଏ । ସେମାନେ ନିଜେ ଏଗୁଡ଼ିକର ସ୍ରଷ୍ଟା ନୁହନ୍ତି ବା ଇଚ୍ଛା ଅନୁସାରେ ଚମତ୍କାର ଦେଖାଇପାରନ୍ତି ନାହିଁ । ଯେତେବେଳେ ଈଶ୍ୱର ଚାହାନ୍ତି ବା ଲୋକେ ସେମାନଙ୍କଠାରୁ ଈଶ୍ୱରଙ୍କ ପ୍ରତିନିଧିତ୍ୱର ପ୍ରମାଣ ଖୋଜନ୍ତି, ସେତେବେଳେ ସେମାନଙ୍କଦ୍ୱାରା ଏହି ଚମତ୍କାରିତା ପ୍ରକାଶ ପାଏ ।

(୧୧) ମହାମାନ୍ୟ ଧର୍ମଦୂତମାନଙ୍କର ଶିକ୍ଷା ସବୁ ଯୁଗରେ ସାର୍ବଜନୀନ ସତ୍ୟ ରୂପେ ପ୍ରମାଣିତ ହୁଏ । ସେଥିରେ ବୈଜ୍ଞାନିକ ତ୍ରୁଟି, ଅସତ୍ୟ ବା ଅଶ୍ଳୀଳତା ନଥାଏ ।

(୧୨) ଏହି ମହାପୁରୁଷମାନେ ଇନ୍ଦ୍ରିୟ ବଶବର୍ତ୍ତୀ ହୁଅନ୍ତି ନାହିଁ । ଇନ୍ଦ୍ରିୟଗୁଡ଼ିକ ଉପରେ ସେମାନଙ୍କର ସମ୍ପୂର୍ଣ୍ଣ ନିୟନ୍ତ୍ରଣ ରହିଥାଏ । ଜଣେ ଈଶ୍ୱରଦୂତ ରାଜପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ଭୋଗ-ବିଳାସଠାରୁ ଦୂରରେ ରହନ୍ତି । ସଂସାରରେ ବାସ କରନ୍ତି; କିନ୍ତୁ ସଂସାରର ମୋହ ସେମାନଙ୍କର ନଥାଏ ।

(୧୩) ସେମାନେ ଅସମ୍ଭବ ରୂପେ ଆତ୍ମବିଶ୍ୱାସୀ । କୌଣସି ବାଧାବିଘ୍ନ ସେମାନଙ୍କୁ ନିଜ ପଥରୁ ବିଚ୍ୟୁତ କରିପାରେ ନାହିଁ କିମ୍ବା ଧନ-ସମ୍ପତ୍ତି ଓ ଯଶ-କୀର୍ତ୍ତିର ଲାଳସା ସେମାନଙ୍କୁ ମାର୍ଗଚ୍ୟୁତ କରିବାରେ ସମର୍ଥ ହୁଏନାହିଁ । ନିଜ କର୍ତ୍ତବ୍ୟ ପାଳନ କଲାବେଳେ ସେମାନେ ଜୀବନ ପ୍ରତି ମଧ୍ୟ ମୋହ ରଖନ୍ତି ନାହିଁ । ଏହାର କାରଣ ହେଉଛି ଯେ, ସେମାନେ ଯେ ଈଶ୍ୱରଙ୍କର ପ୍ରତିନିଧି ଏବଂ ତାଙ୍କରି ଆଦେଶ ପାଳନ କରୁଛନ୍ତି ଏ ବିଷୟରେ ସେମାନଙ୍କର ତିଳେ ହେଲେ ସନ୍ଦେହ ନଥାଏ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସେମାନଙ୍କ ପ୍ରତି ପ୍ରତ୍ୟକ୍ଷ ଦୈବବାଣୀ ହୁଏ, ବ୍ରହ୍ମବାଣୀ ସେମାନେ ନିଜ କାନରେ ଶୁଣନ୍ତି, ଦେବଦୂତମାନଙ୍କୁ ନିଜ ଆଖିରେ ଦେଖନ୍ତି, ସେମାନଙ୍କ ଦ୍ୱାରା ଅନେକ

ଅଲୌକିକ କାର୍ଯ୍ୟ ସମ୍ପାଦିତ ହୁଏ ଏବଂ ସେମାନଙ୍କ ପାଇଁ ଇହଲୋକ ଓ ପରଲୋକର ଅନେକ ରହସ୍ୟରୁ ପରଦା ଉଠାଇ ଦିଆଯାଏ । ତେଣୁ ଈଶ୍ୱରଙ୍କ ପ୍ରତି ସେମାନଙ୍କର ଅଟଳ ବିଶ୍ୱାସ ଥାଏ, ଯାହା ଫଳରେ ଅନ୍ୟ କାହାରି ପ୍ରତି ସେମାନଙ୍କର କୌଣସି ପ୍ରକାର ଭୟ ନଥାଏ ।

(୧୪) ମହାମାନ୍ୟ ଧର୍ମଦୂତମାନଙ୍କର ଆଉ ଗୋଟିଏ ବିଶେଷତ୍ୱ ହେଉଛି ଯେ ସେମାନେ ନିଜକୁ ଈଶ୍ୱରଙ୍କର ପ୍ରତିନିଧି ରୂପେ ପରିଚୟ ଦିଅନ୍ତି । ସେମାନେ ଯେ ମଣିଷ ଏବଂ ଈଶ୍ୱରଙ୍କର ସେବକ, ଏହାଠାରୁ ଅଧିକ ଦାବୀ କରନ୍ତି ନାହିଁ । ସେମାନଙ୍କ ମଧ୍ୟରୁ କେହି ନିଜକୁ ସ୍ୱୟଂ ଈଶ୍ୱର ବା ବ୍ରହ୍ମାଣ୍ଡର ସ୍ରଷ୍ଟା ବୋଲି କୁହନ୍ତି ନାହିଁ ।

(୧୫) ସେମାନଙ୍କର ଶିକ୍ଷା ଅତି ସରଳ ଏବଂ ସାଧାରଣଲୋକଙ୍କ ପାଇଁ ବୋଧଗମ୍ୟ ହୋଇଥାଏ । କୌଣସି ଅବୋଧ ଶିକ୍ଷା ବା ରହସ୍ୟବାଦର ଶିକ୍ଷା ସେମାନେ ଦିଅନ୍ତି ନାହିଁ ।



# ମହାମାନ୍ୟ ଈଶ୍ୱରଦୂତଗଣ ମାନବ

ଈଶ୍ୱରଙ୍କର ପ୍ରତିନିଧିଗଣ ମନୁଷ୍ୟ ବା ଈଶ୍ୱର ନିଜେ ମାନବ ରୂପ ଧାରଣ କରି ଅବତରଣ କରନ୍ତି, ଏ ବିଷୟରେ ବିଭିନ୍ନ ଧର୍ମମତବାଦ ରହିଛି । ହିନ୍ଦୁ ସମ୍ପ୍ରଦାୟ ମଧ୍ୟରୁ ଅନେକ ଅବତାରବାଦରେ ବିଶ୍ୱାସ କରନ୍ତି । ଏହି ବିଶ୍ୱାସ ଅନୁସାରେ ଈଶ୍ୱର ବିଭିନ୍ନ ଶରୀର ଧାରଣ କରି ପୃଥିବୀପୃଷ୍ଠରେ ଅବତରଣ କରନ୍ତି । ବିଷ୍ଣୁଙ୍କର ଦଶଟି ଅବତାର ଥିବାର ହିନ୍ଦୁ ଭାଇଭଉଣୀମାନେ ବିଶ୍ୱାସ କରନ୍ତି । ଅନ୍ୟ କେତେକ ହିନ୍ଦୁ ସମ୍ପ୍ରଦାୟ ଯଥା ଆର୍ଯ୍ୟସମାଜ ଓ ବ୍ରହ୍ମସମାଜ ଅବତାରବାଦରେ ବିଶ୍ୱାସ କରନ୍ତି ନାହିଁ । ସେମାନଙ୍କ ମତରେ ଈଶ୍ୱର କୌଣସି ଶରୀର ଧାରଣ କରନ୍ତି ନାହିଁ । ହିନ୍ଦୁଧର୍ମର ସର୍ବୋଚ୍ଚ ଗ୍ରନ୍ଥ ବେଦରେ ଅବତାରବାଦ ନାହିଁ । ଯେଉଁ ଋଷିମାନଙ୍କ ଅନ୍ତରରେ ବେଦ ପ୍ରକଟ ହେଲା, ସେମାନେ ଯେ ମନୁଷ୍ୟ ଥିଲେ ଏ ସମ୍ପର୍କରେ ମଧ୍ୟ କୌଣସି ମତଭେଦ ନାହିଁ । ବେଦ ଏ କ୍ଷେତ୍ରରେ କୁର୍‌ଆନର ଶିକ୍ଷାର ସମର୍ଥନ କରନ୍ତି । ଋଗ୍ ବେଦ କୁହେ—

> ‘‘ଈଶ୍ୱର ଏହି ମନ୍ତ୍ରରେ ସମସ୍ତ ମନୁଷ୍ୟଙ୍କୁ ହିତ ନିମନ୍ତେ ଉପଦେଶ ଦେଉଛନ୍ତି—ହେ ମନୁଷ୍ୟଗଣ ! ତୁମ୍ଭେମାନେ ମୋତେ ଛାଡ଼ି ଅନ୍ୟ କୌଣସି ଉପାସ୍ୟ ଦେବଙ୍କୁ କଦାପି ସ୍ୱୀକାର କରିବା ଉଚିତ ନୁହେଁ, କାରଣ ଏକମାତ୍ର ମୋତେ ଛାଡ଼ି ଅନ୍ୟ ଦ୍ୱିତୀୟ ଈଶ୍ୱର କେହି ନାହାନ୍ତି । ଯେତେବେଳେ ବେଦରେ ଏପରି ଉପଦେଶ ଅଛି, ସେତେବେଳେ ଯେଉଁ ମନୁଷ୍ୟ ଅନେକ ଈଶ୍ୱର ବା ତାଙ୍କର ଅବତାରକୁ ମାନୁଛି, ସେ ସମସ୍ତଙ୍କଠାରୁ ବଡ଼ ମୂଢ଼ ଅଟେ ।’’

**(ଋଗ୍‌ବେଦ, ପ୍ରଥମ ମଣ୍ଡଳ, ସୂକ୍ତ-୭, ମନ୍ତ୍ର-୧୦)**

ସେହିପରି ଈଶ୍ୱର କେବେ ଦେହଧାରୀ ହୋଇନାହାନ୍ତି ବା ମୃତ୍ୟୁ ଭୋଗ କରନ୍ତି ନାହିଁ ବୋଲି ଘୋଷଣା କରି ଯଜୁର୍ବେଦ କହେ—

‘‘ହେ ମନୁଷ୍ୟଗଣ ! ଯେ କେବେ ଦେହଧାରୀ ହୋଇନାହାନ୍ତି, ଯାହାଙ୍କର କିଛିମାତ୍ର ପରିମାଣ ସୀମାର କାରଣ ନାହିଁ, ଯାହାଙ୍କର ଆଜ୍ଞାର ପାଳନ ନାମ ସ୍ମରଣ ଅଟେ । ଯେ ଉପାସିତ ହୋଇ ନିଜର ଉପାସକମାନଙ୍କ ଉପରେ ଅନୁଗ୍ରହ କରୁଛନ୍ତି, ବେଦର ଅନେକ ସ୍ଥଳରେ ଯାହାଙ୍କର ମହତ୍ତ୍ୱ କୁହାଯାଇଛି, ଯେ ମରନ୍ତି ନାହିଁ, ବିକୃତ ହୁଅନ୍ତି ନାହିଁ, ନଷ୍ଟ ହୁଅନ୍ତି ନାହିଁ, ତାହାଙ୍କର ଉପାସନା ତୁମ୍ଭେମାନେ ନିରନ୍ତର କର । ଯେ ଏହାଙ୍କଠାରୁ ଭିନ୍ନଙ୍କର ଉପାସନା କରିବ, ସେ ମହାନ ପାପ ଦ୍ୱାରା ଯୁକ୍ତ ହୋଇ ନିଜେ ଦୁଃଖକ୍ଲେଶରେ ନଷ୍ଟ ହୋଇଯିବ ।’’

**(ଯଜୁର୍ବେଦ, ୩୨ : ୩)**

ବେଦ କୁହନ୍ତି ଯେ ଯିଏ ଅଜନ୍ମା ଓ ଅନାଦିସ୍ୱରୂପ, ସେହି ଈଶ୍ୱର ବେଦ ଦ୍ୱାରା ମନୁଷ୍ୟଙ୍କୁ ଉପଦେଶ ଦେଲେ—

‘‘ହେ ମନୁଷ୍ୟଗଣ ! ଯେ ଅନନ୍ତ ଶକ୍ତିଯୁକ୍ତ, ଅଜନ୍ମା, ନିରନ୍ତର, ସଦାମୁକ୍ତ, ନ୍ୟାୟକାରୀ, ନିର୍ମଳ, ସର୍ବଜ୍ଞ, ସମସ୍ତଙ୍କର ସାକ୍ଷୀ, ନିୟନ୍ତା, ଅନାଦିସ୍ୱରୂପ, ବ୍ରହ୍ମକଳ୍ପର ଆରମ୍ଭରେ ଜୀବମାନଙ୍କୁ ନିଜ କଥିତ ବେଦ ଦ୍ୱାରା ଶବ୍ଦ, ଅର୍ଥ ଏବଂ ତାହାର ସମ୍ବନ୍ଧକୁ ଜାଣିବା ଯୋଗ୍ୟ ଅଟନ୍ତି, ସେ ଯଦି ବିଦ୍ୟାର ଉପଦେଶ ନ ଦିଅନ୍ତି ତ କେହି ବିଦ୍ୱାନ ହୋଇପାରିବେ ନାହିଁ କି ଧର୍ମ, ଅର୍ଥ, କାମ ଏବଂ ମୋକ୍ଷର ଫଳ ଭୋଗ କରିବାକୁ ସମର୍ଥ ହୋଇପାରିବେ ନାହିଁ । ସେଥିପାଇଁ ସେହି ବ୍ରହ୍ମଙ୍କର ସର୍ବଦା ଉପାସନା କର ।’’

**(ଯଜୁର୍ବେଦ ୪୦ : ୮)**

ଜଣେ ବିଶିଷ୍ଟ ବିଦ୍ୱାନ ମହର୍ଷି ଦେବେନ୍ଦ୍ରନାଥ ଠାକୁର ନିଜର ଆତ୍ମଜୀବନୀରେ ଈଶ୍ୱରଙ୍କ ବିଷୟରେ କୁହନ୍ତି—

‘‘ଈଶ୍ୱର ସ୍ୱୟଂ କୌଣସି ରୂପ ଧାରଣ କରି ନାହାନ୍ତି ।’’[1]

---

[1] "He himself did not became anything." : The Autobiography of Maharshi Devendranath Tagore, London, 1914 (p.-175)

ଈଶ୍ୱର ସ୍ୱୟଂ କୌଣସି ରୂପ ଧାରଣ କରିବା 'ଅବତାର'ର ଅର୍ଥ ନୁହେଁ ବୋଲି ବର୍ଣ୍ଣନା କରି ଡକ୍ଟର ଏମ୍.ଏ. ଶ୍ରୀବାସ୍ତବ କୁହନ୍ତି—

> ''ଅବତାର ଅର୍ଥ ଏହା ଆଦୌ ନୁହେଁ ଯେ ଈଶ୍ୱର ସ୍ୱୟଂ ସଶରୀରରେ ଧରିତ୍ରୀରେ ଅବତରଣ କରନ୍ତି, ବରଂ ପ୍ରକୃତରେ ସେ ନିଜ ବାର୍ତ୍ତାବହ ଏବଂ ଅବତାର ପଠାନ୍ତି । ମଣିଷର ଉଦ୍ଧାର, କଲ୍ୟାଣ ଓ ମାର୍ଗଦର୍ଶନ ପାଇଁ ସେ ନିଜ ଅବତାର, ବାର୍ତ୍ତାବହ ଏବଂ ରସୁଲ ପ୍ରେରଣ କଲେ । ଏହି ପ୍ରଥା ହଜରତ ମୁହମ୍ମଦଙ୍କ ସହ ସମାପ୍ତ କରିଦିଆଗଲା । ସ୍ୱାମୀ ବିବେକାନନ୍ଦ ଏବଂ ଗୁରୁ ନାନକଙ୍କ ପରି ମହାନୁଭବଗଣ ମଧ୍ୟ ବାର୍ତ୍ତାବହନ ଓ ଈଶ୍ୱରଦୂତତ୍ୱ ଧାରଣାର ସମର୍ଥନ କରିଛନ୍ତି । ବରିଷ୍ଠ ବିଦ୍ୱାନମାନଙ୍କ ମଧ୍ୟରେ ପଣ୍ଡିତ ସୁନ୍ଦରଲାଲ, ଶ୍ରୀ ବଳରାମ ସିଂହ ପରିହାର, ଡକ୍ଟର ବେଦପ୍ରକାଶ ଉପାଧ୍ୟାୟ, ଡକ୍ଟର ପି.ଏଚ୍. ଚୌବେ, ଡକ୍ଟର ରମେଶ ପ୍ରସାଦ ଗର୍ଗ, ପଣ୍ଡିତ ଦୁର୍ଗାଶଙ୍କର ସତ୍ୟାର୍ଥୀ ଆଦି 'ଅବତାର'ର ଅର୍ଥ 'ମାନବ କଲ୍ୟାଣ ପାଇଁ ଈଶ୍ୱରଙ୍କ ଦ୍ୱାରା ନିଜର ବାର୍ତ୍ତାବହ ବା ଦୂତପ୍ରେରଣ' ବୋଲି କହିଛନ୍ତି । ପ୍ରାଣନାଥୀ ସମ୍ପ୍ରଦାୟର ପ୍ରସିଦ୍ଧ ଚିନ୍ତକ ଶ୍ରୀ କାଶ୍ମୀରୀଲାଲ ଭଗତ୍ ମଧ୍ୟ ଏହି ତଥ୍ୟର ସ୍ପଷ୍ଟ ସମର୍ଥନ କରିଛନ୍ତି ।''[2]

ସେହିପରି ବାଇବଲ୍ ମଧ୍ୟ ମହାମାନ୍ୟ ଯୀଶୁଙ୍କୁ 'ଈଶ୍ୱର' ବୋଲି କହିନାହିଁ, ଯଦିଓ ଅନେକ ଖ୍ରୀଷ୍ଟିୟାନ ଭାଇଭଉଣୀ ଟ୍ରିନିଟି ତତ୍ତ୍ୱରେ ବିଶ୍ୱାସ କରନ୍ତି । ଏହି ତତ୍ତ୍ୱ ଅନୁସାରେ ଈଶ୍ୱର (ପିତା), ମହାମାନ୍ୟ ଯୀଶୁ (ପୁତ୍ର) ଏବଂ ପବିତ୍ର ଆତ୍ମା (ସ୍ୱର୍ଗଦୂତ)—ଏ ତିନିଜଣ ଭିନ୍ନ ଭିନ୍ନ ହେଲେ ମଧ୍ୟ ଜଣେ ଏବଂ ଅଭିନ୍ନ । ଏହି ଟ୍ରିନିଟି ଶବ୍ଦ ବାଇବଲ୍‌ରେ ନାହିଁ କିମ୍ବା ମହାମାନ୍ୟ ଯୀଶୁ ଏହି ତତ୍ତ୍ୱର ଶିକ୍ଷା ଦେଇଥିବାର କୌଣସି ପ୍ରମାଣ ନାହିଁ । ପ୍ରସିଦ୍ଧ ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା ଏ ସମ୍ପର୍କରେ ଲେଖିଛି ଯେ, ଟ୍ରିନିଟି ଶବ୍ଦ ବା

---

[2] ହଜରତ ମୁହମ୍ମଦ ଅଉର୍ ଭାରତୀୟ ଧର୍ମଗ୍ରନ୍ଥ (ହିନ୍ଦୀ), ଡକ୍ଟର ଏମ୍.ଏ. ଶ୍ରୀବାସ୍ତବ, ଲକ୍ଷ୍ନୌ (ମୁଖବନ୍ଧ) ।

ଟ୍ରିନିଟି ମତବାଦ ବାଇବଲ୍‌ର ନୂତନ ନିୟମରେ ନାହିଁ କିମ୍ବା ମହାମାନ୍ୟ ଯୀଶୁ ଓ ତାଙ୍କର ଶିଷ୍ୟମାନେ ବାଇବଲ୍‌ର ପୁରାତନ ନିୟମରେ ରହିଥିବା ଏକେଶ୍ୱରବାଦର ଶିକ୍ଷାର ବିରୋଧ କରିବାକୁ ଚାହିଁ ନଥିଲେ । ବ୍ରିଟାନିକା ଏହା ମଧ୍ୟ ଲେଖିଛି—

> ''ଅନେକ ଶତାବ୍ଦୀ ଧରି ବହୁ ବାଦାନୁବାଦ ପରେ ଧୀରେ ଧୀରେ ଏହି ଟ୍ରିନିଟି ମତବାଦ ବିକଶିତ ହେଲା ।''[3]

ପ୍ରାୟ ସମାନ ମତାମତ ଖ୍ରୀଷ୍ଟିୟାନ ବିଦ୍ୱାନ ଆଲଭାନ ଲାମସନ୍ ତାଙ୍କ ପୁସ୍ତକ 'ଦି ଚର୍ଚ୍ଚ ଅଫ୍ ଦି ଫାଷ୍ଟ୍ ଥ୍ରୀ ସେଞ୍ଚୁରିଜ୍'ରେ ଦେଇଛନ୍ତି ।[4]

ଇତିହାସରୁ ଆମେ ଜାଣିବାକୁ ପାଉ ଯେ, ମହାମାନ୍ୟ ଯୀଶୁଙ୍କ ସମୟରେ ଏହି ଟ୍ରିନିଟି ମତବାଦର କୌଣସି ଅସ୍ତିତ୍ୱ ନଥିଲା । ଏହା ପ୍ରାୟ ଯୀଶୁଙ୍କ ୩୦୦ବର୍ଷ ପରେ ସୃଷ୍ଟି ହେଲା । ଖ୍ରୀ.ଅ. ୩୨୫ରେ ସମ୍ରାଟ କନ୍‌ଷ୍ଟାନ୍‌ଟାଇନ୍‌ଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ କାଉନ୍‌ସିଲ୍ ଅଫ୍ ନାଇସ୍‌ରେ ଅନେକ ବିତର୍କ ଓ ବାଦାନୁବାଦ ମଧ୍ୟରେ ଏହି ମତବାଦ ଗୃହୀତ ହୋଇଥିଲା ଏବଂ ଖ୍ରୀ.ଅ.୩୮୧ରେ କନ୍‌ଷ୍ଟାଣ୍ଟିନୋପଲ୍ କାଉନ୍‌ସିଲ ଏହାକୁ ଚୂଡ଼ାନ୍ତ ରୂପ ଦେଲା । ସେହି ସମୟଠାରୁ ରୋମ୍‌ର ସମ୍ରାଟମାନେ ଟ୍ରିନିଟି ତତ୍ତ୍ୱରେ ବିଶ୍ୱାସ କରୁ

---

[3] Trinity, Encyclopedia Britannica, Ultimate Reference Suite, Chicago, 2011 : "Neither the word trinity nor the explicit doctrine appears in the New Testament nor did Jesus and his followers intend to contradict the 'Shema' in the Hebrew Scriptures—"Hear, O Israel, The Lord, our Lord, is one Lord. (Deutronomy 6 : 4)"... The doctrine developed gradually over several centuries and through many controversies."

[4] Alvan Lamson, DD, The Church of the First Three Centuries, Boston, 1860, p.34 : "In consistency with the view we maintain that the doctrine of Trinity was of gradual and comparatively late formation, that it had its origin in a source entirly foreign from that of the Jewish and Christian scriptures; that is grew up and ingrafted on Christianity through the hands of the Platonizing fathers."

ନଥିବା ଖ୍ରୀଷ୍ଟିୟାନମାନଙ୍କୁ ଶାସ୍ତି ଦେବାପାଇଁ ଘୋଷଣା କଲେ । ଖ୍ରୀ.ଅ.୩୮୩ରେ ସମ୍ରାଟ ଥିଓଡ଼ସିୟସ ପ୍ରଥମେ ଏହି ଘୋଷଣା କରିଥିଲେ ।[5]

ସାର୍ **ଆଇଜାକ୍ ନିଉଟନ୍** ବାଇବଲ୍‌ର ମଧ୍ୟ ଜଣେ ବିଦ୍ୱାନ ଥିଲେ । ସେ ମହାମାନ୍ୟ ଯୀଶୁଙ୍କୁ ମଣିଷ ତଥା ଈଶ୍ୱରଙ୍କର ଜଣେ ପ୍ରତିନିଧି ରୂପେ ଗ୍ରହଣ କରିଥିଲେ । ଅତି ସୁନ୍ଦର ଯୁକ୍ତି ଉପସ୍ଥାପନ କରି ଆଇଜାକ୍ ନିଉଟନ୍ କୁହନ୍ତି—

''କେବଳ ଜଣେ ହିଁ ଈଶ୍ୱର, ଯିଏ କି ସ୍ରଷ୍ଟା, ସଦା ଜୀବନ୍ତ, ସର୍ବବ୍ୟାପୀ, ସର୍ବଦର୍ଶୀ, ସର୍ବଶକ୍ତିମାନ, ଧରିତ୍ରୀ ଓ ଆକାଶର ସ୍ରଷ୍ଟା ଏବଂ ଈଶ୍ୱର ଓ ମଣିଷ ମଧ୍ୟରେ ଜଣେ ହିଁ ମଧ୍ୟସ୍ଥ—ମାନବ ଯୀଶୁ । ପିତା ଅଦୃଶ୍ୟ ଈଶ୍ୱର, ଯାହାଙ୍କୁ କୌଣସି ଆଖି ଦେଖିନାହିଁ ବା ଦେଖିପାରିବ ନାହିଁ । ଅନ୍ୟମାନେ କୌଣସି ନା କୌଣସି ସମୟରେ ଦୃଶ୍ୟମାନ ହୁଅନ୍ତି । ସମସ୍ତ ଉପାସନା (ପ୍ରଶଂସା, ପ୍ରାର୍ଥନା ବା ସ୍ତୁତି) ଯାହା ଯୀଶୁଙ୍କ ଆବିର୍ଭାବ ପୂର୍ବରୁ ସ୍ରଷ୍ଟାଙ୍କର ଅଧିକାର ଥିଲା, ସେଗୁଡ଼ିକ ଏବେ ମଧ୍ୟ ତାଙ୍କରି ଅଧିକାର । ଯୀଶୁ ପିତାଙ୍କର ଉପାସନା ହ୍ରାସ କରିଦେବାପାଇଁ ଆସି ନଥିଲେ ।''[6]

---

[5] Hugh H. Stannus, A History of the Origin of the Doctrine of the Trinity in the Christian Church, London, 1882, p.1 : "The origin and development of the doctrine of Triune Diety in the Church is clearly traced to Platonic and other influences during the third and fourth centuries. Its introduction caused considerable discussion, agitation and strife during the period named. The Council of Nice (AD 325) voted in favour of the Diety of Christ; the Council of Constantinople (AD 381) fixed the doctrine of the Trinity. From that time, the Roman Emperors resolved and proclaimed, they would punish all Christians who would not believe in and worship three persons in one God."

[6] SIR ISAAC NEWTON : "There is one God, the Father, ever living, Omnipresent, Omniscent, Almighty, the maker of heaven and earth and one Mediator between God and men—the man Christ Jesus. The Father is the invisible God, Whom no eye hath seen or can see. All other being are sometimes

ପ୍ରସିଦ୍ଧ ଐତିହାସିକ ଏଡୱାର୍ଡ ଗୀବନ ଏ ବିଷୟରେ କୁହନ୍ତି—

''ତ୍ରିନିଟୀ ଏବଂ ଅବତାରବାଦର ରହସ୍ୟ ଏକେଶ୍ୱରବାଦ ସିଦ୍ଧାନ୍ତର ବିରୋଧୀ ମନେହୁଏ । ସେମାନେ ସୁସ୍ପଷ୍ଟ ଭାବରେ ତିନୋଟି ସମାନ ଉପାସ୍ୟଙ୍କୁ ପ୍ରବର୍ତ୍ତନ କଲେ ଏବଂ ମାନବ ଯୀଶୁଙ୍କୁ ଇଶ୍ୱରପୁତ୍ରରେ ରୂପାନ୍ତରିତ କରିଦେଲେ... ।''[7]

ସେହିପରି ଜନ ଡାଭେନ୍‌ପୋର୍ଟ ଲେଖିଛନ୍ତି ଯେ, ଗୀବନ, ନିଉଟନ୍ ଏବଂ ପରସନ୍ ଆଦି ବିଶିଷ୍ଟ ବିଦ୍ୱାନ୍ ଏହି ତ୍ରିନିଟି ମତବାଦକୁ ଧର୍ମରେ ପ୍ରକ୍ଷେପଣ ବୋଲି କହିଛନ୍ତି ।[8]

ବାଇବଲ ଅନେକ ବାର୍ତ୍ତାବହମାନଙ୍କ ବିଷୟରେ ବର୍ଣ୍ଣନା କରିଛି । କିନ୍ତୁ ସେମାନଙ୍କ ମଧ୍ୟରୁ କେହି ହେଲେ ନିଜକୁ ସ୍ୱୟଂ ଇଶ୍ୱର ବୋଲି କହିନାହାନ୍ତି। ବରଂ ସେମାନେ ନିଜେ ଇଶ୍ୱରଙ୍କର ଭକ୍ତ ଥିଲେ ଏବଂ ତାଙ୍କରି ଉପାସନା କରୁଥିଲେ ।

ମହାମାନ୍ୟ ଯୀଶୁ ଇଶ୍ୱର ନଥିଲେ ବରଂ ଇଶ୍ୱରଙ୍କ ଦ୍ୱାରା ପ୍ରେରିତ ହୋଇଥିଲେ ବୋଲି ସ୍ୱୟଂ ନିଜେ କୁହନ୍ତି—

---

visible. All the worship (whether praise or prayer or thanks giving) which was due to the father before the coming of Christ, is still due to Him. Christ came not to diminish the worship of his father." (Ibid.p.29)

(7) Edward, Gibbon, Life of Mahommed, London : "The mysteries of the Trinity and incarnation appear to contradict the principle of divine unity. In their obvious sense they introduced three equal dities and transform the man Jesus into the substance of the Son of God...." (p.75)

(8) John Davenport, An apology for Mohammed and the Koran, London, 1869 p.74 : "The celebrated text of three witnesses (John i.v.7) which is the foundation of the docrine of Trinity has been proved by the labours of Newton, Gibbon, Person and other to have been an interpolation and calmet himself acknowl-

''ମୁଁ ଆପଣାରୁ କିଛି କରିପାରେ ନାହିଁ, ମୁଁ ଯେପରି ଶୁଣେ, ସେହିପରି ବିଚାର କରେ, ଆଉ ମୋହର ବିଚାର ଯଥାର୍ଥ, କାରଣ ମୁଁ ଆପଣାର ଇଚ୍ଛାସାଧନ କରିବାକୁ ଚେଷ୍ଟା ନ କରି ମୋହର ପ୍ରେରଣକର୍ତ୍ତାଙ୍କର ଇଚ୍ଛା ସାଧନ କରିବାକୁ ଚେଷ୍ଟା କରେ ।''

**(ବାଇବଲ୍, ଯୋହନ ୫ : ୩୦)**

ବାଇବଲ୍‌ର ଅନେକ ସ୍ଥାନରେ ମହାମାନ୍ୟ ଯୀଶୁଙ୍କୁ ଜଣେ Prophet ଅର୍ଥାତ୍, ବାର୍ତ୍ତାବହ ବୋଲି ବର୍ଣ୍ଣନା କରାଯାଇଛି ।[9]

ମହାମାନ୍ୟ ଈଶ୍ୱରଦୂତଗଣ ଯେ 'ମନୁଷ୍ୟ' ଏହା ମଧ୍ୟ ସ୍ପଷ୍ଟ କରି ବାଇବଲ କହିଛି—

''ପ୍ରଥମେ ଏହା ଜ୍ଞାତ ହୁଅ ଯେ ଶାସ୍ତ୍ରର କୌଣସି ଭାବବାଣୀ ସ୍ୱତନ୍ତ୍ର ଭାବରେ ବ୍ୟାଖ୍ୟା କରିବାର ବିଷୟ ନୁହେଁ; କାରଣ କୌଣସି ଭାବବାଣୀ କେବେହେଁ ମନୁଷ୍ୟର ଇଚ୍ଛାରୁ ଉତ୍ପନ୍ନ ହୋଇନାହିଁ; ମାତ୍ର ଈଶ୍ୱର ପ୍ରେରିତ ମନୁଷ୍ୟମାନେ ପବିତ୍ର ଆତ୍ମାଙ୍କ ଦ୍ୱାରା ଚାଳିତ ହୋଇ କଥା କହିଥିଲେ ।''

**(ବାଇବଲ୍, ୨ ପିତର-୧ : ୨୦-୨୧)**

---

edges that this verse is not found in any ancient copy of the Bible. Jesus taught the belief of one God, but Paul with the Apostle John, who was a Platonist, despoiled Christ's religion of all its unity and simplicity; by introducing the incomprehensible Trinity of Plato...."

[9] "This is Jesus, the **Prophet** of Nazareth in Galilee." (Mathew 21 : 11) "After the people saw the miraculous sign that Jesus did, they began to say, "Surely this is the **Prophet** which to come into the world." (John 6 : 14). "They were all filled with awe and praised God 'a great **Prophet** has appeared among us' (Luke 7 : 16). "About Jesus Nazareth they replied 'He was a **Prophet** powerful in world and deed before God and all the people." (Luke 24 : 19) "On hearing his words some of the people says ' Surely this man is the **Prophet**" (John 7 : 40)

ସୁତରାଂ ଖ୍ରୀଷ୍ଟଧର୍ମର ୟୁନିଟାରୀୟାନ୍ (Unitarian) ସମ୍ପ୍ରଦାୟ ଟ୍ରିନିଟିରେ ବିଶ୍ୱାସ କରନ୍ତି ନାହିଁ, ବରଂ ବିଶୁଦ୍ଧ ଏକେଶ୍ୱରବାଦରେ ବିଶ୍ୱାସ କରନ୍ତି । ସେମାନେ ମହାମାନ୍ୟ ଯୀଶୁଙ୍କୁ ଜଣେ ମଣିଷ ତଥା ଈଶ୍ୱରଦୂତ ବୋଲି ମାନନ୍ତି; କିନ୍ତୁ ଈଶ୍ୱର ବୋଲି ଗ୍ରହଣ କରନ୍ତି ନାହିଁ । ବେଦ ଓ ବାଇବଲ୍‌ର ଶିକ୍ଷା ବିଷୟରେ ଏଠାରେ ଆଲୋଚନା କରିବାର ଉଦ୍ଦେଶ୍ୟ କେବଳ ପାଠକମାନଙ୍କୁ ଏହା ବୁଝାଇଦେବା ଯେ କୁର୍‌ଆନ ଏ ବିଷୟରେ କୌଣସି ନୂଆକଥା କହିନାହିଁ, ବରଂ ଏହା ସେହି ପୁରୁଣା କଥାର ପୁନରାବୃତ୍ତି କରିଛି, ଯାହା ବେଦ ଓ ବାଇବଲ୍ କହିଛନ୍ତି । କିନ୍ତୁ କୁର୍‌ଆନର ଶିକ୍ଷା ସ୍ପଷ୍ଟ, ଏବଂ ଏଥିରେ କୌଣସି ସଂଶୋଧନ ବା ପ୍ରକ୍ଷେପଣ ହୋଇନାହିଁ । ଏହା ସମସ୍ତ ଈଶ୍ୱରଦୂତଙ୍କୁ ମନୁଷ୍ୟ ଘୋଷଣା କରି କହିଛି—

> ''ଏବଂ (ହେ ମୁହମ୍ମଦ), ତୁମ ପୂର୍ବର ଆମ୍ଭେ ଯେଉଁମାନଙ୍କୁ (ବାର୍ତ୍ତାବହ ରୂପେ) ପ୍ରେରଣ କରିଥିଲୁ, ସେମାନେ ମଧ୍ୟ ଜନବସତିରେ ବସବାସ କରୁଥିବା ପୁରୁଷ ହିଁ ଥିଲେ, ଯେଉଁମାନଙ୍କ ପ୍ରତି ଆମ୍ଭେ ଦୈବବାଣୀ କରୁଥିଲୁ ।''

**କୁର୍‌ଆନ ୧୨ : ୧୦୯**

ଅବତାର କୁହଯାଉ, ଋଷି କୁହଯାଉ, ନବୀ ବା ରସୁଲ କୁହଯାଉ, କିମ୍ବା ପ୍ରଫେଟ୍ କୁହଯାଉ, ଈଶ୍ୱରଙ୍କ ମହାମାନ୍ୟ ପ୍ରତିନିଧିଗଣ ସମସ୍ତେ ରକ୍ତମାଂସଧାରୀ ମଣିଷ । ସେମାନେ ଖାଆନ୍ତି, ପିଅନ୍ତି ଏବଂ ଘରସଂସାର କରନ୍ତି । ସେମାନଙ୍କୁ ମଧ୍ୟ ଦୁଃଖ ବିପଦ ଆସେ ଏବଂ ଦୈବୀ ସହାୟତାର ଆବଶ୍ୟକତା ପଡ଼େ । ସେମାନେ ସମସ୍ତେ ଈଶ୍ୱରଙ୍କର ଉପାସନା କରନ୍ତି । ସେମାନେ ଈଶ୍ୱର ହୋଇଥିଲେ ନିଜେ ନିଜର ଉପାସନା କରନ୍ତେ ନାହିଁ । କିନ୍ତୁ ଏହି ପୁରୁଷୋତ୍ତମମାନଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଓ ଅଲୌକିକ କାର୍ଯ୍ୟ ଯୋଗୁଁ ପରବର୍ତ୍ତୀ ସମୟରେ ଅନେକେ ସେମାନଙ୍କୁ ସାକ୍ଷାତ୍ ଈଶ୍ୱର ମନେ କରି ସେମାନଙ୍କର ଉପାସନା କରନ୍ତି । ଦିବ୍ୟଶିକ୍ଷାରେ ପ୍ରକ୍ଷେପଣ ଓ ପରିବର୍ତ୍ତନ ଯୋଗୁଁ ଏହା ହୁଏ ।

ଯେଉଁ ଅଲୌକିକ କାର୍ଯ୍ୟଗୁଡ଼ିକ ସେମାନେ କରନ୍ତି, ସେଗୁଡ଼ିକ ସେମାନଙ୍କର ନିଜସ୍ୱ ନୁହେଁ । ଈଶ୍ୱରଙ୍କ ଆଦେଶରେ ସେମାନେ ଏହି ଚମତ୍କାରିତା ଦେଖାଇ ଥାଆନ୍ତି । ଲୋକଙ୍କର ମନୋରଞ୍ଜନ କରିବା ବା ନିଜକୁ

ଈଶ୍ୱର ବୋଲି ପ୍ରମାଣିତ କରିବା ସେମାନଙ୍କର ଉଦ୍ଦେଶ୍ୟ ନଥାଏ । ସେମାନେ ଯେ ଈଶ୍ୱରଙ୍କର ପ୍ରତିନିଧି, ଏହାର ପ୍ରମାଣ ସ୍ୱରୂପ ସେମାନେ ଚମତ୍କାରିତା ପ୍ରଦର୍ଶନ କରନ୍ତି, ଯାହା ଫଳରେ ଲୋକଙ୍କର ସେମାନଙ୍କ କଥା ପ୍ରତି ବିଶ୍ୱାସ ହୁଏ । ଅନ୍ୟଥା ସେମାନେ ନିଜେ ମଧ୍ୟ ଈଶ୍ୱରଙ୍କର ବିଧିବିଧାନ ପାଳନ କରନ୍ତି । ଅନ୍ୟମାନଙ୍କ ପରି ସେମାନେ ମଧ୍ୟ ନିଜ କର୍ମ ପାଇଁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ ।

ଇସ୍‌ଲାମ ବିଶ୍ୱାସ ଅନୁଯାୟୀ ସମସ୍ତ ଈଶ୍ୱରଦୂତଗଣ ମାନବ । ଏହାର କାରଣ ହେଉଛି ଯେ ସ୍ରଷ୍ଟା ଓ ସୃଷ୍ଟି ମଧ୍ୟରେ ଅନେକ ଗୁଣାତ୍ମକ ପାର୍ଥକ୍ୟ ରହିଛି । ଯେଉଁ ଦିବ୍ୟଗୁଣଗୁଡ଼ିକର ସ୍ୱୟଂ ଈଶ୍ୱର ଅଧିକାରୀ, କୌଣସି ମାନବ ସେଗୁଡ଼ିକୁ ଧାରଣ କରିବା ପାଇଁ ସମର୍ଥ ନୁହେଁ, କାରଣ ମାନବୀୟ ଏବଂ ଈଶ୍ୱରୀୟ ଗୁଣଗୁଡ଼ିକ ପରସ୍ପରର ସମ୍ପୂର୍ଣ୍ଣ ବିପରୀତ । ଉଦାହରଣ ସ୍ୱରୂପ ମନୁଷ୍ୟ ଜନ୍ମନିଏ; କିନ୍ତୁ ଈଶ୍ୱର ଅଜନ୍ମା । ମନୁଷ୍ୟ ମରଣଶୀଳ; କିନ୍ତୁ ଈଶ୍ୱରଙ୍କର ମୃତ୍ୟୁ ନାହିଁ । ମନୁଷ୍ୟର ଆରମ୍ଭ ଓ ଅନ୍ତ ଅଛି; କିନ୍ତୁ ଈଶ୍ୱର ଅନାଦି ଓ ଅନନ୍ତ । ସେ ସୃଷ୍ଟିର ପ୍ରାରମ୍ଭରୁ ଥିଲେ ଏବଂ ସୃଷ୍ଟିର ବିଲୟ ପରେ ମଧ୍ୟ ବିଦ୍ୟମାନ ରହିଥିବେ । ମନୁଷ୍ୟ ଭୁଲ କରେ; କିନ୍ତୁ ଈଶ୍ୱର ଦୋଷରହିତ । ମଣିଷର ଖାଇବା, ପିଇବା, ଶୋଇବା ଆଦିର ଆବଶ୍ୟକତା ଥାଏ; କିନ୍ତୁ ଈଶ୍ୱରଙ୍କର ଏସବୁର ଆବଶ୍ୟକତା ନଥାଏ । ମନୁଷ୍ୟ ସଦା ନିର୍ଭରଶୀଳ, ଅନ୍ୟର ସହାୟତା ବିନା ବଞ୍ଚିପାରିବ ନାହିଁ; କିନ୍ତୁ ଈଶ୍ୱର ସ୍ୱୟଂସମ୍ପୂର୍ଣ୍ଣ । ତାଙ୍କୁ କାହାରି ସହାୟତାର ଆବଶ୍ୟକତା ନାହିଁ । ମନୁଷ୍ୟର ଜ୍ଞାନ ଓ ଶକ୍ତି ସୀମିତ; କିନ୍ତୁ ଈଶ୍ୱରଙ୍କର ଜ୍ଞାନ ଅସୀମ ଆଉ ଶକ୍ତି ଅନନ୍ତ । ମନୁଷ୍ୟର ନିର୍ଦ୍ଦିଷ୍ଟ ରୂପ ଥାଏ ଏବଂ ତାକୁ ଦେଖି ହୁଏ; କିନ୍ତୁ ଈଶ୍ୱରଙ୍କୁ ଦେଖି ହୁଏନାହିଁ, ସେ ନିରାକାର । ଈଶ୍ୱର ଏପରି ସର୍ବଗୁଣସମ୍ପନ୍ନ ଯେ ବ୍ରହ୍ମାଣ୍ଡରେ ତାଙ୍କର କୌଣସି ଉପମା ନାହିଁ । ଏହି କାରଣଗୁଡ଼ିକ ଯୋଗୁଁ ଈଶ୍ୱର ମାନବ ରୂପ ଧାରଣ କରନ୍ତି ନାହିଁ ବୋଲି ଇସଲାମ କହେ । ମାନବ ରୂପ ଧାରଣ କଲେ ଆଉ ସେ ଈଶ୍ୱର ରହିବେ ନାହିଁ, କାରଣ ତାଙ୍କର ଈଶ୍ୱରୀୟ ଗୁଣଗୁଡ଼ିକ ରହିବ ନାହିଁ । ଭୁଲ କରିବା, ଭୁଲିଯିବା, ମିଥ୍ୟା କହିବା, ଜନ୍ମ ହେବା, ମରିବା, ଖାଇବା, ପିଇବା, ଶୋଇବା ଆଦି ମାନବୀୟ ଗୁଣ । ଜଣେ ଈଶ୍ୱର ଥାଇ ମଧ୍ୟ ମଣିଷ, ଏହା କିପରି ସମ୍ଭବ ? ଜଣେ ବ୍ୟକ୍ତି ଜନ୍ମ ନିଏ, ପୁଣି ସେ ଅଜନ୍ମା, ଭୁଲ କରେ ଏବଂ ଦୋଷରହିତ, ମୃତ୍ୟୁ ଭୋଗ କରେ ଏବଂ

କରେନାହିଁ, ନିରାକାର ଏବଂ ସାକାର ମଧ୍ୟ—ଉଭୟ କଥା ଏକକାଳୀନ କିପରି ସମ୍ଭବ ?

ଏହାବ୍ୟତୀତ ଧର୍ମସଂସ୍ଥାପନା, ସମାଜ ସଂସ୍କାର ବା ଦୁଷ୍ଟଦମନ ଯେଉଁଥିପାଇଁ ମହାମାନ୍ୟ ଈଶ୍ୱରଦୂତମାନଙ୍କର ଆବିର୍ଭାବ ହୁଏ, ସେଗୁଡ଼ିକ କେବଳ ମନୁଷ୍ୟ ହିଁ କରିପାରିବ । ମାନବ ଛଡ଼ା ଅନ୍ୟ କୌଣସି ପ୍ରାଣୀ ଦ୍ୱାରା ଧର୍ମ ସଂସ୍ଥାପନା ବା ସମାଜ ସଂସ୍କାର ସମ୍ଭବ ନୁହେଁ । ମାନବର ମାର୍ଗଦର୍ଶନ ପାଇଁ ମାନବ ହିଁ ଆଦର୍ଶ ହୋଇପାରେ ।

ଜଣେ ସାଧାରଣ ରାଷ୍ଟ୍ରମୁଖ୍ୟ ମଧ୍ୟ ନିଜ ଆଇନକୁ ଘର ଘର ବୁଲି ପ୍ରଚାର କରନ୍ତି ନାହିଁ । ସେ ମଧ୍ୟ ନିଜ ପ୍ରତିନିଧି ନିଯୁକ୍ତ କରନ୍ତି । ତେଣୁ, ସ୍ୱୟଂ ବିଧାତାଙ୍କୁ ନିଜର ବିଧାନ ଦେବାପାଇଁ ବା ମାର୍ଗଦର୍ଶନ କରିବା ପାଇଁ ପୃଥିବୀକୁ ଆସିବାର ଯଥାର୍ଥତା ମଧ୍ୟ ନାହିଁ ।

ଏହିସବୁ କାରଣରୁ ପ୍ରତ୍ୟେକ ଯୁଗରେ ମାନବ ହିଁ ଈଶ୍ୱରଙ୍କର ପ୍ରତିନିଧିତ୍ୱ କରନ୍ତି ବୋଲି ମୁସଲମାନମାନେ ବିଶ୍ୱାସ କରନ୍ତି ଏବଂ ଏହି ବିଶ୍ୱାସ ପ୍ରତି ବେଦ ଓ ବାଇବଲ୍‌ର ମଧ୍ୟ ସମର୍ଥନ ରହିଛି ବୋଲି ଆମେ ଆଲୋଚନା କଲୁ ।



# ଈଶ୍ୱରଦୂତମାନଙ୍କର ଶିକ୍ଷା

ଯେହେତୁ ମହାମାନ୍ୟ ଈଶ୍ୱରଦୂତଗଣ ଗୋଟିଏ ଦ୍ୱୀପର ଜ୍ୟୋତି ଏବଂ ଜଣେ ଈଶ୍ୱରଙ୍କର ପ୍ରତିନିଧିତ୍ୱ କରନ୍ତି, ସେମାନଙ୍କର ମୌଳିକ ଶିକ୍ଷା ବା ସିଦ୍ଧାନ୍ତରେ କୌଣସି ଫରକ ନଥାଏ । ଯଦିଓ ଅଧିକାଂଶଙ୍କ ମଧ୍ୟରେ ଶହ ଶହ ବର୍ଷର ବ୍ୟବଧାନ ଥାଏ ଏବଂ ପରସ୍ପର ସହିତ ଦେଖାସାକ୍ଷାତ୍ ମଧ୍ୟ ହୋଇନଥାଏ, ତଥାପି ସମସ୍ତଙ୍କର ମୌଳିକ ଶିକ୍ଷାରେ ଶତ ପ୍ରତିଶତ ସମାନତା ଥାଏ । ଯେପରି କୌଣସି ସରକାର ବା ରାଷ୍ଟ୍ରମୁଖ୍ୟ ବିଭିନ୍ନ ରାଜ୍ୟରେ ନିଜ ପ୍ରତିନିଧି ନିଯୁକ୍ତ କରନ୍ତି; କିନ୍ତୁ ସବୁ ରାଜ-ପ୍ରତିନିଧିମାନେ ଗୋଟିଏ ସମ୍ବିଧାନକୁ କାର୍ଯ୍ୟକାରୀ କରନ୍ତି, ସେହିପରି ସ୍ଥାନ ଅନୁସାରେ ଭାଷା ବଦଳେ, କିନ୍ତୁ ଈଶ୍ୱରତତ୍ତ୍ୱ ବଦଳେ ନାହିଁ ବା ମାନବିକ ମୂଲ୍ୟବୋଧର ମାନଦଣ୍ଡ ବଦଳେ ନାହିଁ । ଈଶ୍ୱରଙ୍କର ସିଦ୍ଧାନ୍ତ ପରିବର୍ତ୍ତନଶୀଳ ନୁହେଁ । ଯୁଗେ ଯୁଗେ ମନୁଷ୍ୟର ପ୍ରାକୃତିକ ସ୍ୱଭାବ ସମାନ ରହିଆସିଛି । ବଂଶ, ଦେଶ, ଭାଷା ଓ ବର୍ଣ୍ଣର ବୈଷମ୍ୟ ସତ୍ତ୍ୱେ ମଣିଷର ପ୍ରାକୃତିକ ଆବଶ୍ୟକତା, ତା' ଇନ୍ଦ୍ରିୟଗୁଡ଼ିକର କାର୍ଯ୍ୟଧାରା ଏବଂ ତା' ମାନବସୁଲଭ ଦୋଷ ଦୁର୍ବଳତାରେ କୌଣସି ପରିବର୍ତ୍ତନ ହୋଇନାହିଁ । ତେଣୁ ତା'ପାଇଁ ପୃଥକ ପୃଥକ ଶୃଙ୍ଖଳାର କୌଣସି ଯଥାର୍ଥତା ନାହିଁ ।

ମହାମାନ୍ୟ ଧର୍ମଦୂତମାନେ ପ୍ରଥମେ ମନୁଷ୍ୟକୁ ବ୍ରହ୍ମଜ୍ଞାନ ଦିଅନ୍ତି । ବ୍ରହ୍ମ ବା ଈଶ୍ୱର କିଏ, ତାଙ୍କର ଗୁଣ ଓ ମହିମା କିପରି ଅନୁପମ, ତାଙ୍କର ଶକ୍ତି କିପରି ଅସୀମ, କାହିଁକି ସେ ଆମକୁ ସୃଷ୍ଟି କରିଛନ୍ତି ଏବଂ ତାଙ୍କୁ ପ୍ରସନ୍ନ କରିବାର ବାଟ କ'ଣ—ଏହା ସେମାନେ ସ୍ପଷ୍ଟ କରନ୍ତି । ନିଜର ସ୍ରଷ୍ଟା ଓ ପାଳନକର୍ତ୍ତାଙ୍କୁ ଜାଣିବା ଓ ଚିହ୍ନିବା ମନୁଷ୍ୟର ପ୍ରଥମ କର୍ତ୍ତବ୍ୟ । ଯିଏ ତାଙ୍କୁ ଚିହ୍ନିବାରେ ଭୁଲ କରେ, ସେ ଆଉ ସବୁଥିରେ ଭୁଲ କରିବ । ଯଦି ଜଣେ ଭୃତ୍ୟ ନିଜ ମାଲିକକୁ ଜାଣି ନାହିଁ ବା ଜଣେ ପତ୍ନୀ ନିଜର ପତିକୁ ଚିହ୍ନି ନାହିଁ, ତେବେ ସେ କିପରି ତା'ର ସେବା କରିପାରିବ ? ଈଶ୍ୱରଙ୍କୁ ଜାଣିଥିବା ବ୍ୟକ୍ତିକୁ ବୈଦିକ ଭାଷାରେ 'ବ୍ରାହ୍ମଣ' କୁହାଯାଏ । 'ବ୍ରହ୍ମ ଜାନତି ଇତି ବ୍ରାହ୍ମଣଃ ।' ଆରବୀ ଭାଷାରେ ତାକୁ 'ଆରିଫ' କୁହାଯାଏ ।

ଯଦି ପ୍ରଶ୍ନ ଉଠେ କେଉଁ ବ୍ରହ୍ମ ? ତେବେ ବ୍ରହ୍ମସୂତ୍ର ଉତ୍ତର ଦିଏ—'ଏକମ୍ ବ୍ରହ୍ମଃ ଦ୍ୱିତୀୟ ନାସ୍ତି' । ବାଇବଲ୍‌ରେ ମହାମାନ୍ୟ ଯୀଶୁ ସେଇ କଥା କୁହନ୍ତି—

''ଆମମାନଙ୍କର ଈଶ୍ୱର ଏକମାତ୍ର ପ୍ରଭୁ ଅଟନ୍ତି ।''
**(ବାଇବଲ, ମାର୍କ ୧୨ : ୨୯)**

ଏବଂ କୁର୍‌ଆନ ମଧ୍ୟ ଏହାର ସମର୍ଥନ କରି କୁହେ—

''କହିଦିଅ, ସେ ଅଲ୍ଲାହ ଏକ ଅଟନ୍ତି ।''
**(କୁର୍‌ଆନ, ୧୧୨ : ୧)**

ଏହାବ୍ୟତୀତ ୟହୁଦୀ, ଜୋରାଷ୍ଟ୍ରିଆନ ଏବଂ ଶିଖ୍‌ମାନଙ୍କ ଧର୍ମଗ୍ରନ୍ଥରେ ମଧ୍ୟ ଏକେଶ୍ୱରବାଦର ସମାନ ଶିକ୍ଷା ରହିଛି । ପୃଥିବୀରେ ଆସିଥିବା ଈଶ୍ୱରଙ୍କର ସମସ୍ତ ପ୍ରତିନିଧିଙ୍କର ଏହା ହେଉଛି ପ୍ରଥମ ଶିକ୍ଷା । ସମସ୍ତେ ମନୁଷ୍ୟକୁ ବାର୍ତ୍ତା ଦିଅନ୍ତି ଯେ, ଈଶ୍ୱର ଏକ ଏବଂ ସେଇ ହିଁ ପ୍ରତ୍ୟେକ ଜୀବ-ଜଡ଼ର ସ୍ରଷ୍ଟା ଓ ପାଳନକର୍ତ୍ତା । କେବଳ ତାଙ୍କରି କୃପା ବଳରେ ସମସ୍ତେ ଜୀବିତ । ସେ ହିଁ ଆମର ପ୍ରଭୁ, ହର୍ତ୍ତା-କର୍ତ୍ତା ଓ ଭାଗ୍ୟବିଧାତା । ଅତଏବ କେବଳ ସେ ହିଁ ଆମର ସେବା ଉପାସନାର ଅଧିକାରୀ । ସେମାନେ ନିଜେ ମଧ୍ୟ ଏକ ଈଶ୍ୱରଙ୍କର ଉପାସନା କରନ୍ତି । ଏହାକୁ ଏକେଶ୍ୱରବାଦ ଏବଂ ଆରବୀ ଭାଷାରେ 'ତୌହିଦ' କୁହାଯାଏ । କେବଳ ମୁସଲମାନ ନୁହନ୍ତି, ହିନ୍ଦୁମାନଙ୍କ ମଧ୍ୟରେ ଆର୍ଯ୍ୟସମାଜ, ବ୍ରହ୍ମସମାଜ; ଅଲେଖ ସମ୍ପ୍ରଦାୟ, ଖ୍ରୀଷ୍ଟିୟାନମାନଙ୍କ ମଧ୍ୟରେ ୟୁନିଟାରିଆନ ସମ୍ପ୍ରଦାୟ, ଶିଖ ସମ୍ପ୍ରଦାୟ ଏବଂ ୟହୁଦୀ ଓ ଜୋରାଷ୍ଟ୍ରୀଆନମାନଙ୍କ ମଧ୍ୟରେ କେତେକ ସମ୍ପ୍ରଦାୟ ମଧ୍ୟ ଏକମାତ୍ର ନିରାକାର ବ୍ରହ୍ମଙ୍କର ଉପାସନା କରନ୍ତି ।

ମହାମାନ୍ୟ ଧର୍ମଦୂତମାନଙ୍କର ଦ୍ୱିତୀୟ ସିଦ୍ଧାନ୍ତ ହେଉଛି ମାନବାଧିକାର । ସେମାନେ ସମୁଦାୟ ବିଶ୍ୱକୁ ଗୋଟିଏ ପରିବାର ଏବଂ ସବୁ ମଣିଷଙ୍କୁ 'ଆଦମ'ଙ୍କ ସନ୍ତାନ 'ଆଦମୀ' ଅର୍ଥାତ୍ ମଣିଷ କୁହନ୍ତି, ଯାହାକୁ ସଂସ୍କୃତରେ 'ବସୁଧୈବ କୁଟୁମ୍ବକମ୍' କୁହାଯାଏ । କୁର୍‌ଆନ ଏହାକୁ ନିଜ ଭାଷାରେ କହିଛି—

''ମାନବ ସମାଜ ଗୋଟିଏ ସମ୍ପ୍ରଦାୟ ।''
**(କୁର୍‌ଆନ, ୨ : ୨୧୩)**

ମନୁଷ୍ୟ ଯେପରି ଅନ୍ୟର ମଙ୍ଗଳ କରିବ ଏବଂ କାହାରି ଅନିଷ୍ଟ କରିବ ନାହିଁ, ଏଥିପାଇଁ ସେମାନେ ନୀତିନିୟମ ଦିଅନ୍ତି । ବ୍ୟକ୍ତିର ମୌଳିକ ଅଧିକାରଗୁଡ଼ିକର

ସୁରକ୍ଷା ପାଇଁ ଓ ସମାଜର ଶାନ୍ତି ଓ ପ୍ରଗତି ପାଇଁ ଈଶ୍ୱରଦୂତଗଣ ସ୍ପଷ୍ଟ ବିଧିବିଧାନ ଦେଇଥାଆନ୍ତି । ବ୍ୟକ୍ତିର ଧନ-ଜୀବନ, ମାନ-ସମ୍ମାନ ଓ ଚରିତ୍ର ପ୍ରତି ଅନିଷ୍ଟକାରୀ ଆଚରଣଗୁଡ଼ିକ ସେମାନଙ୍କ ଶିକ୍ଷାରେ ନିଷିଦ୍ଧ ଥାଏ । ଏହାବ୍ୟତୀତ, ନ୍ୟାୟ ଓ ନୈତିକତାର ସିଦ୍ଧାନ୍ତ ସମସ୍ତଙ୍କ ଶିକ୍ଷାରେ ସମାନ ଥାଏ । ସମସ୍ତେ ସତ୍ୟ, ନ୍ୟାୟ, ପ୍ରେମ ଓ ପରୋପକାରର ଶିକ୍ଷା ଦେଇଥାଆନ୍ତି । ପିତାମାତାଙ୍କର ସେବା ଓ ଭକ୍ତି ମାନବାଧିକାର ତାଲିକାର ସର୍ବାଗ୍ରରେ ରହେ । ଗୁରୁଜନଙ୍କୁ ଭକ୍ତି, ଜ୍ଞାତିକୁଟୁମ୍ବଙ୍କୁ ସହାୟତା, ଦୀନଦୁଃଖୀମାନଙ୍କ ପ୍ରତି ଉଦାରତା ଏବଂ ଆଚାର ବ୍ୟବହାରରେ ଶିଷ୍ଟତା ଆଦିର ଶିକ୍ଷା ସବୁ ଧର୍ମଦୂତ ଦେଇଥାଆନ୍ତି । ହତ୍ୟା, ଲୁଣ୍ଠନ, ଶୋଷଣ ଓ ବ୍ୟଭିଚାର ଇତ୍ୟାଦି ସବୁ ଯୁଗରେ ନିଷିଦ୍ଧ ରହେ ଏବଂ କାମ, କ୍ରୋଧ, ଲୋଭ, ମୋହ, କପଟ, ଈର୍ଷା ଓ ଅହଂକାର ଆଦି ଦୁର୍ଗୁଣଗୁଡ଼ିକ ବର୍ଜନୀୟ ଥାଏ । ସଂଯମ ଆଚରଣ କରିବା ପାଇଁ ସମସ୍ତେ ଉପଦେଶ ଦେଇଥାଆନ୍ତି ଏବଂ ଇନ୍ଦ୍ରିୟଜୟୀମାନେ ସବୁ ଯୁଗରେ ସାଧୁସନ୍ଥଙ୍କ ତାଲିକାରେ ରୁହନ୍ତି ।

ସେମାନଙ୍କର ତୃତୀୟ ସିଦ୍ଧାନ୍ତ ହେଉଛି 'ପରଲୋକବାଦ' । ମହାମାନ୍ୟ ଧର୍ମଦୂତଗଣ ମୃତ୍ୟୁ ପରେ ଅନ୍ୟ ଏକ ଲୋକର ଅବସ୍ଥିତି ସମ୍ପର୍କରେ ମନୁଷ୍ୟକୁ ସୂଚନା ଦେଇଥାଆନ୍ତି, ଯାହାକୁ ଆରବୀରେ 'ଆଖିରତ' କୁହାଯାଏ । ମନୁଷ୍ୟ ଯେ ଗୋଟିଏ ଉତ୍ତରଦାୟୀ ଜୀବ ଏବଂ ସଂସାରରେ କରିଥିବା କର୍ମଗୁଡ଼ିକର ସେ ଅବଶ୍ୟ ଫଳ ଭୋଗ କରିବ, ଯେଉଁଥିପାଇଁ ସ୍ୱର୍ଗ ଓ ନର୍କର (ଆରବୀରେ ଜନ୍ନତ ଓ ଜହନ୍ନମ) ବ୍ୟବସ୍ଥା କରାଯାଇଛି ବୋଲି ସେମାନେ ସତର୍କ କରିଥାନ୍ତି । ସେମାନେ ସ୍ୱର୍ଗ ଓ ନର୍କର ବିସ୍ତୃତ ବିବରଣୀ ମଧ୍ୟ ପ୍ରଦାନ କରିଥାଆନ୍ତି । ଅନିତ୍ୟ ସଂସାରର ମୋହରେ ପଡ଼ି ମନୁଷ୍ୟ ସ୍ରଷ୍ଟାଙ୍କୁ ଅବଜ୍ଞା ନ କରିବାପାଇଁ ସେମାନେ ସାବଧାନ କରନ୍ତି ।

ମହାମାନ୍ୟ ଈଶ୍ୱରଦୂତମାନଙ୍କର ମୌଳିକ ଶିକ୍ଷାଗୁଡ଼ିକ ସାର୍ବଜନୀନ ସତ୍ୟ ଉପରେ ପର୍ଯ୍ୟବେଶିତ ଥାଏ ଏବଂ ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ପରିସରଭୁକ୍ତ କରିଥାଏ । ସଂକ୍ଷେପରେ କହିଲେ, ସେମାନେ ଗୋଟିଏ ଜୀବନଶୈଳୀର ପ୍ରଚାର କରନ୍ତି, ଯାହାକୁ ଧର୍ମ କୁହାଯାଏ । ବେଦ ଓ ବାଇବଲ୍ ଗୋଟିଏ 'ଧର୍ମମାର୍ଗ' କଥା କହିଛନ୍ତି ।(1) କୁର୍‌ଆନ ମଧ୍ୟ ଯୁଗେ ଯୁଗେ ଧର୍ମ ଗୋଟିଏ ରହିଛି ବୋଲି ଘୋଷଣା କରି କହିଛି—

(1) ଅଧିକ ତଥ୍ୟ ପାଇଁ ଦେଖନ୍ତୁ ଲେଖକଙ୍କର ପୁସ୍ତକ 'ଇସଲାମ ପରିଚୟ', ପୃ.୩୫-୩୬

> ''ସେ ତୁମ୍ଭମାନଙ୍କ ପାଇଁ ସେଇ ଧର୍ମ ନିର୍ଦ୍ଧାରିତ କରିଛନ୍ତି, ଯାହାର ଆଦେଶ ସେ ନୂହଙ୍କୁ ଦେଇଥିଲେ ଏବଂ ଯାହା ଆମ୍ଭେ ଏବେ ତୁମପ୍ରତି ଦୈବବାଣୀ କରୁଅଛୁ ଏବଂ ଯାହାର ଆଦେଶ ଆମ୍ଭେ ଇବ୍ରାହିମ, ମୁସା ଏବଂ ଇସା (ଯୀଶୁ)ଙ୍କୁ ଦେଇଥିଲୁ ଏବଂ ତାହା ଏହି ଯେ ଏହି ଧର୍ମରେ ଅଟଳ ରୁହ ଏବଂ ଏଥିରେ ବିଭାଜନ କରନାହିଁ ।''

**(କୁର୍‌ଆନ, ୪୨ : ୧୩)**

ପ୍ରତ୍ୟେକ ଈଶ୍ୱରଦୂତ ଗୋଟିଏ ଧର୍ମର ପ୍ରଚାର କରିଥିଲେ । ଏହାର ସୂଚନା ଦେଇ ମହାମାନ୍ୟ ମୁହମ୍ମଦ କୁହନ୍ତି—

> ''ଈଶ୍ୱରଦୂତମାନଙ୍କର ମାତା ଭିନ୍ନ ଭିନ୍ନ, କିନ୍ତୁ ସେମାନଙ୍କର ଧର୍ମ ଗୋଟିଏ ।''

**(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ ୬୫୨)**

ଯଦିଓ ସବୁ ଈଶ୍ୱରଦୂତ ଗୋଟିଏ ଧର୍ମମାର୍ଗର ଶିକ୍ଷା ଦେଇଛନ୍ତି; ସେମାନଙ୍କର ଶିକ୍ଷାରେ କିଛି ଅସମାନତା ମଧ୍ୟ ଦେଖାଯାଏ । ଏହା କୌଣସି ନୀତିଗତ ପାର୍ଥକ୍ୟ ଯୋଗୁଁ ନୁହେଁ, କାରଣ ଧର୍ମର ମୌଳିକ ନୀତିନିୟମରେ କୌଣସି ଯୁଗରେ ପରିବର୍ତ୍ତନ ହୁଏନାହିଁ । କେବଳ ଏହାର ପାଳନ ବିଧିରେ କିଛିଟା ପରିବର୍ତ୍ତନ ହୁଏ । ଉଦାହରଣ ସ୍ୱରୂପ, କିଛି ସମୟ ନିୟମିତ ପ୍ରାର୍ଥନା କରିବା ପ୍ରତ୍ୟେକ ଯୁଗରେ ଏକ ପ୍ରମୁଖ ଉପାସନା ରହିଆସିଛି । ଯେଉଁଥିରେ ଈଶ୍ୱରଙ୍କର ସ୍ତୁତି କରାଯାଏ ଏବଂ ତାଙ୍କର ବାଣୀ ପାଠ କରାଯାଏ । ଆରବୀ ଭାଷାରେ ଏହାକୁ 'ସଲାତ୍' ଏବଂ ଉର୍ଦ୍ଦୁ ଭାଷାରେ 'ନମାଜ' କୁହାଯାଏ । ବେଦରେ ଏହାକୁ 'ଯୋଗ-ଉପାସନା' ବୋଲି କୁହାଯାଇଛି । ୟହୁଦୀମାନେ ଏହାକୁ 'ଶେମା' (Shema) କହନ୍ତି । ଖ୍ରୀଷ୍ଟିୟାନମାନଙ୍କର 'ସର୍ଭିସ୍' ମଧ୍ୟ ଏହି ଧରଣର ପ୍ରାର୍ଥନା । ବିଭିନ୍ନ ଯୁଗରେ ଏହାର ସ୍ୱରୂପ ଓ ପାଳନ ବିଧିରେ ପରିବର୍ତ୍ତନ ହୋଇଛି । ଯୋଗ-ଉପାସନାରେ ବେଦମନ୍ତ୍ର ପାଠ କରାଯାଉଥିଲା । ୟହୁଦୀମାନଙ୍କୁ ଦୈନିକ ଦୁଇଥର ସମବେତ ପ୍ରାର୍ଥନା କରିବାର ଆଦେଶ ଦିଆଗଲା ଯେଉଁଥିରେ ବାଇବଲ୍‌ର କେତୋଟି ବାଣୀ ପାଠ କରାଯାଉଥିଲା । ସେହିପରି ନମାଜରେ କୁର୍‌ଆନ ଆବୃତ୍ତି କରିବାର ଆଦେଶ ଦିଆଗଲା ଯାହା ଅସ୍ୱାଭାବିକ ନୁହେଁ । ଏହାଦ୍ୱାରା ପ୍ରାର୍ଥନା ଶୈଳୀରେ ପରିବର୍ତ୍ତନ ହୁଏ । ଏହାଛଡ଼ା ମହାମାନ୍ୟ ମୁହମ୍ମଦଙ୍କ ଅନୁଗାମୀମାନଙ୍କ

ପାଇଁ ଦୈନିକ ନମାଜ ଦୁଇଥର ପରିବର୍ତ୍ତେ ପାଞ୍ଚଥର କରିଦିଆଗଲା । ଏଥିରେ ମଧ୍ୟ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, କାରଣ ବୈଦ୍ୟ ରୋଗୀ ପାଇଁ ରୋଗ ଅବସ୍ଥା ଦେଖି ଔଷଧର ମାତ୍ରା କମ୍ ବା ବେଶି କରିପାରେ । ଈଶ୍ୱର ନିଜ ଫାଇଦାପାଇଁ ମନୁଷ୍ୟଙ୍କୁ ପୂଜା-ଉପାସନା ବା ବ୍ରତ-ଉପବାସର ଆଦେଶ ଦେଇନାହାନ୍ତି । ମଣିଷ ତାଙ୍କର ଉପାସନା କଲେ ତାଙ୍କର ଗୌରବ ବଢ଼ିଯିବ ନାହିଁ । ଏହା ମନୁଷ୍ୟର ନିଜ ଫାଇଦା ପାଇଁ ହିଁ ଉଦ୍ଦିଷ୍ଟ । ତେଣୁ ପ୍ରଭୁ ଯେମିତି ଆଜ୍ଞା ଦେବେ, ସେବକ ସେମିତି କରିବା ଉଚିତ ।

କେବଳ ପୂଜା-ଅର୍ଚ୍ଚନାର କର୍ମକାଣ୍ଡ ସମ୍ବନ୍ଧୀୟ ପଦ୍ଧତି, ବିବାହ-ବିଚ୍ଛେଦର ଆଚରଣ ବିଧି, ଅପରାଧ ନିରାକରଣ ସମ୍ପନ୍ଧୀୟ ନୀତି-ନିୟମ ଇତ୍ୟାଦିରେ ଈଶ୍ୱରଦୂତମାନଙ୍କ ଶିକ୍ଷାରେ କିଛିଟା ଅସମାନତା ଦେଖାଯାଏ । ଏହା ସ୍ଥାନ-କାଳ-ପାତ୍ରର ବିଭେଦ ଯୋଗୁଁ ହୁଏ, ଯେପରି କୌଣସି ଦେଶର ରାଜପ୍ରତିନିଧିମାନଙ୍କ କାର୍ଯ୍ୟଶୈଳୀରେ ପାର୍ଥକ୍ୟ ଥାଏ । ଯଦିଓ ସମସ୍ତ ରାଜ-ପ୍ରତିନିଧିମାନଙ୍କର ଲକ୍ଷ୍ୟ ଏକା, କିନ୍ତୁ ବିଭିନ୍ନ ଆଞ୍ଚଳିକ ସମସ୍ୟା ଏବଂ ଏହାର ନିରାକରଣ ପାଇଁ ପୃଥକ୍ କାର୍ଯ୍ୟପନ୍ଥାର ଆବଶ୍ୟକତା ଦୃଷ୍ଟିରୁ ସେମାନଙ୍କର କାର୍ଯ୍ୟଧାରା ପରସ୍ପର ସହ ଅବିକଳ ସମାନ ହୁଏନାହିଁ । ଯେଉଁ ସମାଜରେ ଯେଉଁ ଅପକର୍ମ ବା କୁସଂସ୍କାରର ମାତ୍ରା ଅଧିକ ଥାଏ, ସେଠାରେ ଆସିଥିବା ଧର୍ମଦୂତ ସେଇଗୁଡ଼ିକର ସଂସ୍କାର ପାଇଁ ଅଧିକ ଜୋର ଦିଅନ୍ତି । ବେଳେବେଳେ ସମାଜକୁ ସାମୟିକ ଭାବେ କିଛି ନିର୍ଦ୍ଦେଶ ମଧ୍ୟ ଦିଆଯାଇଥାଏ, ଯାହା ପରବର୍ତ୍ତୀ ଧର୍ମଦୂତଙ୍କ ଶିକ୍ଷାରେ ନଥାଏ । ଉଦାହରଣ ସ୍ୱରୂପ ବାଇବଲ୍‌ରେ ୟହୁଦୀମାନଙ୍କ ପାଇଁ ସପ୍ତାହର ଶନିବାର ଦିନ ମାଛ ଧରିବା ନିଷିଦ୍ଧ କରାଯାଇଥିଲା, ଯାହା ପରବର୍ତ୍ତୀ ଧର୍ମଦୂତମାନଙ୍କ ଶିକ୍ଷାରେ ନାହିଁ । କୁର୍‌ଆନ କହେ ଯେ ଏକ ଦଣ୍ଡସ୍ୱରୂପ ସେମାନଙ୍କୁ ଏହି ଆଦେଶ ଦିଆଯାଇଥିଲା । ଏହା ପ୍ରାୟ ସେହିପରି, ଯେପରି କିଛି ଛାତ୍ର ଦୁଷ୍ଟାମୀ କଲେ ଶିକ୍ଷକ ଦଣ୍ଡସ୍ୱରୂପ ସେମାନଙ୍କର ହୋମ୍‌ୱାର୍କ ବଢ଼ାଇ ଦିଅନ୍ତି । ଏହା ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ନୁହେଁ । ଧର୍ମର ଯେଉଁ ଆଚରଣବିଧି ପରିବର୍ତ୍ତନଶୀଳ, ତାକୁ ଆରବୀରେ 'ଶରିୟତ' କୁହାଯାଏ ।



# ବହୁଧର୍ମ ସୃଷ୍ଟିର କାରଣ

ମନରେ ପ୍ରଶ୍ନ ଉଠେ ଯେ ଯଦି ମଣିଷ ପାଇଁ ଈଶ୍ୱର ଗୋଟିଏ ମାତ୍ର ଧର୍ମବ୍ୟବସ୍ଥା ଦେଇଛନ୍ତି, ତେବେ ବିଶ୍ୱରେ ଏତେଗୁଡ଼ିଏ ଧର୍ମର ସୃଷ୍ଟି କିପରି ହେଲା ? ଏହା ସେହିପରି ହେଲା ଯେପରି ପ୍ରତ୍ୟେକ ଧର୍ମରେ ବିଭାଜନ ହୋଇ ଅନେକ ଗୋଷ୍ଠୀ ଓ ଶାଖା ପ୍ରଶାଖା ସୃଷ୍ଟି ହେଲା । ବୌଦ୍ଧ, ଜୈନ, ଖ୍ରୀଷ୍ଟ, ୟହୁଦୀ, ହିନ୍ଦୁ ଓ ଇସଲାମ—ଏଗୁଡ଼ିକ ତ ଅନ୍ତତଃ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଧର୍ମ ରୂପେ ସ୍ୱୀକୃତ ? ପୁଣି ସେଗୁଡ଼ିକ ମଧ୍ୟରେ ବିଭାଜନ କାହିଁକି ହେଲା ? କ'ଣ ଏହା ଈଶ୍ୱର କଲେ ?

ମନୁଷ୍ୟଜାତି ଈଶ୍ୱରଙ୍କର ଗୋଟିଏ ପରିବାର ପରି । ସେ ତା' ପାଇଁ ଭିନ୍ନ ଭିନ୍ନ ବିଧାନ କାହିଁକି ଦେବେ ବା ତାକୁ ନିଜେ ଖଣ୍ଡ ଖଣ୍ଡ କାହିଁକି କରିବେ ? ଏଗୁଡ଼ିକ ମଣିଷର ସୃଷ୍ଟି । ଆବାହମାନ କାଳରୁ ଈଶ୍ୱର ମଣିଷପାଇଁ ଗୋଟିଏ ମାତ୍ର ଧର୍ମମାର୍ଗ ଦେଇଛନ୍ତି । ସେହି ଗୋଟିଏ ଆଦିଧର୍ମରୁ ମନୁଷ୍ୟ ବହୁ ଧର୍ମ ସୃଷ୍ଟି କରିଛି । ମୁଖ୍ୟ କାରଣ ହେଉଛି ଦିବ୍ୟଶିକ୍ଷାର ମନମୁଖୀ ବ୍ୟାଖ୍ୟା ଏବଂ ଏଥିରେ ବ୍ୟାପକ ପରିବର୍ତ୍ତନ ଓ ସଂଶୋଧନ । ବିଭିନ୍ନ କାଳରେ ନିହିତ ସ୍ୱାର୍ଥ ପାଇଁ ଅସାଧୁ ଧର୍ମଗୁରୁ ଓ ପଣ୍ଡିତମାନେ ଦିବ୍ୟଶିକ୍ଷାରେ ପରିବର୍ତ୍ତନ ଆଣିଲେ । ଅନେକ କଥା ଗ୍ରନ୍ଥରେ ପ୍ରକ୍ଷେପଣ କରାଗଲା ଏବଂ ଅନେକ କଥା ସେଥିରୁ କାଢ଼ି ନିଆଗଲା । ସେମାନେ ନିଜ ଫାଇଦା ପାଇଁ ନୂଆ ନୂଆ ନିୟମ ଗଢ଼ି ଧର୍ମ ନାମରେ ପ୍ରଚଳନ କଲେ ଏବଂ ଲୋକଙ୍କୁ ମିଥ୍ୟା ଦର୍ଶନ ଓ କାଳ୍ପନିକ କାହାଣୀର ଶିକ୍ଷା ଦେଲେ, ଯାହା ଫଳରେ ଲୋକଙ୍କର ଚିନ୍ତାଧାରାରେ ବିକୃତି ଆସିଲା । ସେମାନେ ଦିବ୍ୟଗ୍ରନ୍ଥକୁ ସାଧାରଣ ଲୋକଙ୍କ ପାଇଁ ଅବୋଧ ବୋଲି କହି ସେଥିରୁ ସେମାନଙ୍କୁ ଦୂରେଇ ରଖିଲେ ଏବଂ ଧର୍ମଗ୍ରନ୍ଥଗୁଡ଼ିକର ଇଚ୍ଛାମୁତାବକ ବ୍ୟାଖ୍ୟା କଲେ । ଦିବ୍ୟଶିକ୍ଷାର ବିଭିନ୍ନ ପ୍ରକାର ବ୍ୟାଖ୍ୟା ଦ୍ୱାରା ଅନେକ ମତବାଦ ସୃଷ୍ଟି ହେଲା ।

ଧର୍ମରେ ରହସ୍ୟବାଦର ସୃଷ୍ଟିର ମଧ୍ୟ ଏହାହିଁ କାରଣ । ଦିବ୍ୟଗ୍ରନ୍ଥ ଖୁବ୍ ସରଳ ଓ ସାଧାରଣ ଲୋକଙ୍କର ବୁଝିଲା ଭଳି ଉପଦେଶ ଦିଅନ୍ତି । ଈଶ୍ୱର ସେଭଳି ଆଦେଶ ଦିଅନ୍ତି ନାହିଁ, ଯାହା ମନୁଷ୍ୟ ବୁଝିପାରିବ ନାହିଁ । ଯେଉଁ ଆଦେଶ ପାଳନ ନ କଲେ ନର୍କ ଭୋଗ କରିବାକୁ ପଡ଼େ, ସେଗୁଡ଼ିକୁ ଈଶ୍ୱର ଦୁର୍ବୋଧ ବା ରହସ୍ୟମୟ କାହିଁକି କରିବେ ? ଯଦି ଈଶ୍ୱର ସେଭଳି କରନ୍ତେ, ତେବେ ମଣିଷ ନିଜ କୁକର୍ମ ସପକ୍ଷରେ ଯୁକ୍ତି ବାଢ଼ନ୍ତା । ସେ କୁହନ୍ତା— ପ୍ରଭୁ ! ମୋର ଦୋଷ କ'ଣ ? ଆପଣଙ୍କ ଗ୍ରନ୍ଥରେ ଥିବା ଜଟିଳ ଧର୍ମତତ୍ତ୍ୱଗୁଡ଼ିକୁ ମୁଁ ବୁଝିପାରିଲି ନାହିଁ । ପଣ୍ଡିତ ଓ ଧର୍ମଗୁରୁମାନେ ମୋତେ ଯେମିତି କହିଲେ ମୁଁ ସେମିତି କଲି । ତେଣୁ ମୁଁ କାହିଁକି ଦଣ୍ଡ ପାଇବି ? ତେଣୁ ବହୁ ଧର୍ମ ମଣିଷର ହିଁ ସୃଷ୍ଟି ।

ଯେଉଁମାନେ ଈଶ୍ୱରଙ୍କ ଧର୍ମରେ ବିଭାଜନ ସୃଷ୍ଟି କଲେ କୁର୍ଆନ ସେମାନଙ୍କୁ ସାବଧାନ କରି କହିଛି—

> ''ଯେଉଁମାନେ ନିଜ ଧର୍ମକୁ ଖଣ୍ଡ ଖଣ୍ଡ କରିଦେଲେ ଏବଂ ବିଭିନ୍ନ ଦଳରେ ବିଭକ୍ତ ହୋଇଗଲେ, ତୁମର ସେମାନଙ୍କ ସହ କୌଣସି ସମ୍ପର୍କ ନାହିଁ । ସେମାନଙ୍କ ବ୍ୟାପାର ଅଲ୍ଲାହଙ୍କ ଉପରେ ନ୍ୟସ୍ତ ରହିଛି । ସେମାନେ ଯାହାକିଛି କରିଛନ୍ତି, ତାହା ସେମାନଙ୍କୁ ଜଣାଇ ଦିଆଯିବ ।''

**କୁର୍ଆନ, ୬ : ୧୫୯**



## ତୃତୀୟ ଅଧ୍ୟାୟ

# ମହାମାନ୍ୟ ମୁହମ୍ମଦ କ'ଣ ଜଣେ ଈଶ୍ୱରଦୂତ ?

ମହାମାନ୍ୟ ଈଶ୍ୱରଦୂତମାନଙ୍କର ଆବିର୍ଭାବର କାରଣ, ସେମାନଙ୍କ ଶିକ୍ଷା ଓ ବିଶେଷତ୍ୱ ସମ୍ପର୍କରେ ଆମେ ଜାଣିଲୁ । ଈଶ୍ୱରଙ୍କ ପରମ୍ପରା ଅନୁସାରେ ପୃଥିବୀରେ ଲକ୍ଷାଧିକ ମାର୍ଗଦର୍ଶକଙ୍କର ଆବିର୍ଭାବ ଘଟିଛି । ମହାମାନ୍ୟ ମୁହମ୍ମଦ ମଧ୍ୟ ନିଜକୁ ସେମାନଙ୍କ ମଧ୍ୟରୁ ଜଣେ ବୋଲି ଘୋଷଣା କରିଛନ୍ତି । ବର୍ତ୍ତମାନ ଆମେ ତାଙ୍କ ଦାବୀର ସତ୍ୟତା ସମ୍ପର୍କରେ ଆଲୋଚନା କରିବା ଯେ ପ୍ରକୃତରେ ସେ ଈଶ୍ୱରଙ୍କ ଦ୍ୱାରା ଆଦିଷ୍ଟ ହୋଇ ଦିବ୍ୟବାର୍ତ୍ତାର ପ୍ରଚାର କରିଥିଲେ ବା ଈଶ୍ୱରଙ୍କ ନାମରେ ମିଥ୍ୟା କହିଥିଲେ । ବିଶ୍ୱର ୧୫୭କୋଟି ଜନତା ଯେଉଁ ମହାପୁରୁଷଙ୍କର ପଦାଙ୍କ ଅନୁସରଣ କରନ୍ତି, ପ୍ରକୃତରେ ସେ କିଏ ?

ଘଟଣାଟି ବେଶି ପୁରୁଣା ନୁହେଁ । ତାଙ୍କ ଆବିର୍ଭାବକୁ ୧୫୦୦ବର୍ଷ ମଧ୍ୟ ହୋଇନାହିଁ । ତାଙ୍କ ଶିକ୍ଷା ଓ ଜୀବନଚରିତର ସମ୍ପୂର୍ଣ୍ଣ ବିବରଣୀ ଇତିହାସରେ ସୁରକ୍ଷିତ ରହିଛି । ଐତିହାସିକ ବୋସଓ୍ୱର୍ଥ ସ୍ମିଥ୍ କୁହନ୍ତି—

> ''ତାଙ୍କର ଆବିର୍ଭାବ ଏବଂ ତାଙ୍କ ଦୈନନ୍ଦିନ ଜୀବନର ପୁଙ୍ଖାନୁପୁଙ୍ଖ ବିବରଣୀ ଆମ ନିକଟରେ ସଂରକ୍ଷିତ ରହିଛି ।''(1)

ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା ମଧ୍ୟ ଏ ସମ୍ପର୍କରେ ଲେଖିଛି—

> ''ସେ ଗୋଟିଏ ବୃହତ୍ ବିଶ୍ୱଧର୍ମର ଏକମାତ୍ର ପ୍ରତିଷ୍ଠାତା ଯିଏ କି ଇତିହାସର ପୂର୍ଣ୍ଣ ପ୍ରକାଶ ମଧ୍ୟରେ ଜୀବନଯାପନ କରିଛନ୍ତି ।''(2)

---

(1) "Minute accounts of his appearance and of his daily life have been preserved to us." (Bosworth Smith, Mohammad and Mohammedanism,London, p.83)

(2) "He is the only founder of a major world religion who lived in the full light of history …" ("Muhammad". Encyclopedia Britanica, 2010. Encyclopedia Britannica Online. 24 Dec. 2010)

ତେଣୁ ଏହା ସାହାଯ୍ୟରେ ମହାମାନ୍ୟ ମୁହମ୍ମଦଙ୍କ ଦାବୀର ସତ୍ୟତା ସମ୍ପର୍କରେ ଅନୁସନ୍ଧାନ କରିବା ଖୁବ୍ ସହଜ ।

ଇତିହାସରୁ ଆମେ ଜାଣୁ ଯେ, ତତ୍କାଳୀନ ସମାଜର ଅଧୋଗତି ଯୋଗୁଁ ମହାମାନ୍ୟ ମୁହମ୍ମଦ ବିଚଳିତ ରହୁଥିଲେ ଏବଂ ଅନ୍ୟାୟ ଓ ଅତ୍ୟାଚାରପୂର୍ଣ୍ଣ ସମାଜ ସହ ସେ ନିଜକୁ ଖାପଖୁଆଇ ପାରୁନଥିଲେ । ତେଣୁ ସେ ଏକାନ୍ତରେ ରହିବା ପସନ୍ଦ କରୁଥିଲେ । ସେଥିପାଇଁ ସେ ମକ୍କାଠାରୁ ପ୍ରାୟ ତିନିମାଇଲ୍ ଦୂରରେ ଥିବା 'ହିରା' ନାମକ ଏକ ପାହାଡ଼ ଗୁମ୍ଫାକୁ ଚାଲି ଯାଉଥିଲେ । ସେଠାରେ ସେ ଧ୍ୟାନମଗ୍ନ ରହୁଥିଲେ ଏବଂ ସ୍ରଷ୍ଟାଙ୍କର ଉପାସନା କରୁଥିଲେ । ସେତେବେଳେ ତାଙ୍କ ଉପାସନାର ସ୍ୱରୂପ କ'ଣ ଥିଲା, ସେ ସମ୍ପର୍କରେ ଇତିହାସରେ କୌଣସି ଉଲ୍ଲେଖ ନାହିଁ । ଗୁମ୍ଫା ଭିତରକୁ ଯିବାବେଳେ ସେ ସାଙ୍ଗରେ କିଛି ଖାଦ୍ୟ ଓ ପାଣି ନେଇ ଯାଉଥିଲେ ।

୬୧୦ ମସିହା ରମ୍‌ଜାନ ମାସର ଏକ ରାତ୍ରିରେ ଏହି ଗୁମ୍ଫା ମଧ୍ୟରେ ସ୍ୱର୍ଗଦୂତ ଜିବ୍ରାଇଲ୍‌ଙ୍କ ଦ୍ୱାରା ତାଙ୍କପ୍ରତି ପ୍ରଥମ ଦୈବୀବାଣୀ ହୋଇଥିଲା । ମହାମାନ୍ୟ ସ୍ୱର୍ଗଦୂତ ସ୍ୱୟଂ ଉପସ୍ଥିତ ହୋଇ ତାଙ୍କୁ କୁରଆନର କେତୋଟି ଶ୍ଲୋକ ଆବୃତ୍ତି କରାଇଥିଲେ ।

ପତ୍ନୀ ହଜରତ ଆଇଶା କୁହନ୍ତି ଯେ, ଏହି ଘଟଣା ଦ୍ୱାରା ମହାମାନ୍ୟ ମୁହମ୍ମଦ ଅତ୍ୟନ୍ତ ଭୟଭୀତ ହୋଇପଡ଼ିଥିଲେ । ଘରକୁ ଫେରି ସେ ପତ୍ନୀ ଖଦିଜାଙ୍କୁ କହିଥିଲେ—"ମୋତେ ଘୋଡ଼ାଇଦିଅ ।" ଟିକିଏ ପ୍ରକୃତିସ୍ଥ ହେଲାପରେ ସେ ହିରାଗୁମ୍ଫାରେ ଘଟିଥିବା ଅଦ୍ଭୁତ ଘଟଣା ବର୍ଣ୍ଣନା କରିଥିଲେ ଏବଂ ନିଜ ଜୀବନ ପ୍ରତି ବିପଦର ଆଶଙ୍କା ପ୍ରକାଶ କରିଥିଲେ । ସ୍ୱାମୀଙ୍କ ସହ ଦୀର୍ଘ ପନ୍ଦରବର୍ଷର ଦାମ୍ପତ୍ୟ ଜୀବନ ଅତିବାହିତ କରିଥିବା ହଜରତ ଖଦିଜା, ନିଜ ସ୍ୱାମୀଙ୍କୁ ଏକ ସାଧୁ ଓ ସଚ୍ଚୋଟ ବ୍ୟକ୍ତି ବୋଲି ଭଲ ରୂପେ ଜାଣିଥିଲେ । ତେଣୁ ସେ ସ୍ୱାମୀଙ୍କୁ ଦୃଢ଼ ଆଶ୍ୱାସନା ଦେଇ କହିଲେ—

> "ଆଦୌ ନୁହେଁ । ମୁଁ ଅଲ୍ଲାହଙ୍କ ରାଣ ଖାଇ କହୁଛି ଯେ, ଅଲ୍ଲାହ ଆପଣଙ୍କୁ କେବେହେଲେ ଲଜ୍ଜିତ ହେବାକୁ ଦେବେ ନାହିଁ । ଆପଣ ତ ଆତ୍ମୀୟମାନଙ୍କ ସହିତ ଭଲ ସମ୍ପର୍କ ରଖନ୍ତି, ଦରିଦ୍ର ଓ ଅସହାୟ ଲୋକଙ୍କୁ ସାହାଯ୍ୟ କରନ୍ତି । ଅତିଥିମାନଙ୍କର

ଉତ୍ତମ ସତ୍କାର କରନ୍ତି ଏବଂ ବିପଦ ଆପଦରେ ପଡ଼ିଥିବା ଲୋକଙ୍କର ସହାୟତା କରନ୍ତି ।''

**(ସହୀ ବୁଖାରୀ, ୧ମ ଖଣ୍ଡ, ହଦିସ ସଂ.୩)**

ଅର୍ଥାତ୍, ଆପଣ ତ ଲୋକଙ୍କର ମଙ୍ଗଳ କରନ୍ତି, ଈଶ୍ୱର କାହିଁକି ଆପଣଙ୍କୁ ଲାଞ୍ଛିତ ବା ଅପମାନିତ କରିବେ ? ତେଣୁ ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ତା'ପରେ ହଜରତ ଖଦିଜା ତାଙ୍କୁ ନିଜ ସମ୍ପର୍କୀୟ ଭାଇ ଓ୍ୱର୍କା ବିନ୍ ନୌଫଲଙ୍କ ପାଖକୁ ନେଇଗଲେ, ଯିଏ କି ଜଣେ ଖ୍ରୀଷ୍ଟିଆନ୍ ଥିଲେ ଏବଂ ବାଇବଲ୍‌ର ଜଣେ ବିଦ୍ୱାନ ହୋଇଥିବାରୁ ଦୈବବାଣୀ ଓ ଏହାର ସ୍ୱରୂପ ସମ୍ପର୍କରେ ତାଙ୍କର ଭଲ ଜ୍ଞାନ ଥିଲା । ମହାମାନ୍ୟ ମୁହମ୍ମଦଙ୍କଠାରୁ ହିରା ଗୁମ୍ଫାର ଘଟଣା ଶୁଣିସାରି ସେ କହିଲେ—

''ଏ ହେଉଛନ୍ତି ସେହି ସ୍ୱର୍ଗଦୂତ ଜିବ୍ରାଇଲ ଯିଏ ମୁସାଙ୍କ ପାଖକୁ ଆସୁଥିଲେ । ମୁଁ ଯୁବକ ଥାଆନ୍ତି ଏବଂ ସେହି ସମୟ ପର୍ଯ୍ୟନ୍ତ ଜୀବିତ ରୁହନ୍ତି କି ଯେତେବେଳେ ତୁମ ଲୋକମାନେ ତୁମକୁ ବିତାଡ଼ିତ କରିଦେବେ !''

ମହାମାନ୍ୟ ମୁହମ୍ମଦ ପ୍ରଶ୍ନ କଲେ—

''ସତରେ କ'ଣ ସେମାନେ ମୋତେ ତଡ଼ିଦେବେ ?''

ଓ୍ୱରକା ହଁ କହିଲେ । ତା'ପରେ ସେ କହିଲେ ଯେ, ଯିଏ ମଧ୍ୟ ଆପଣଙ୍କ ଭଳି ଦୈବବାଣୀ ନେଇ ଆସିଛି, ତା' ସହ ଶତ୍ରୁତା କରାଯାଇଛି । ଆଉ ଯଦି ମୁଁ ଆପଣଙ୍କୁ ବିତାଡ଼ିତ କରିବା ପର୍ଯ୍ୟନ୍ତ ଜୀବିତ ରହେ, ତେବେ ନିଶ୍ଚୟ ଆପଣଙ୍କୁ ଦୃଢ଼ ସମର୍ଥନ କରିବି ।''

**(ସହୀ ବୁଖାରୀ, ୧ମ ଖଣ୍ଡ, ହଦିସ ୩)**

ବାସ୍ତବରେ ହିରା ଗୁମ୍ଫାରେ ଘଟିଥିବା ଏହି ଘଟଣାଟି ମହାମାନ୍ୟ ମୁହମ୍ମଦଙ୍କ ପାଇଁ ଏକ ଅଦ୍ଭୁତ ଓ ଅପ୍ରତ୍ୟାଶିତ ଘଟଣା ଥିଲା । ଯାହାର ପ୍ରତିକ୍ରିୟା ସ୍ୱରୂପ ସେ ଭୟଭୀତ ହୋଇପଡ଼ିଥିଲେ, ଏପରିକି ତାଙ୍କ ଜୀବନ ବିପଦାପନ୍ନ ହୋଇ ପଡ଼ିଥିବାର ପ୍ରକାଶ କରିଥିଲେ । ହିରା ଗୁମ୍ଫାରେ ତାଙ୍କ ପ୍ରତି ହୋଇଥିବା ପ୍ରଥମ ଦୈବବାଣୀ ଥିଲା—

ଅସୀମ ଦୟାବାନ ଅନନ୍ତ କରୁଣାଶୀଳ ଅଲ୍ଲାହଙ୍କ ନାମରେ

| | | |
|---|---|---|
| ୧) | ପଢ଼ ନିଜ ପ୍ରଭୁଙ୍କ ନାମ ନେଇ ଯିଏ ସୃଷ୍ଟି କଲେ | اِقۡرَاۡ بِاسۡمِ رَبِّكَ الَّذِىۡ خَلَقَ ۚ‏ ﴿۱﴾ |
| ୨) | ସୃଷ୍ଟି କଲେ ମାନବକୁ ଏକ ରକ୍ତପିଣ୍ଡରୁ | خَلَقَ الۡاِنۡسَانَ مِنۡ عَلَقٍ‌ ۚ‏ ﴿۲﴾ |
| ୩) | ପଢ଼, ଏବଂ ତୁମ ପାଳନକର୍ତ୍ତା ବଡ଼ ଉଦାର | اِقۡرَاۡ وَرَبُّكَ الۡاَكۡرَمُ ۙ‏ ﴿۳﴾ |
| ୪) | ଯିଏ କଲମ ଦ୍ୱାରା (ବିଦ୍ୟାର) ଶିକ୍ଷା ଦେଲେ | الَّذِىۡ عَلَّمَ بِالۡقَلَمِ ۙ‏ ﴿۴﴾ |
| ୫) | ଶିକ୍ଷାଦେଲେ ମାନବକୁ, ଯାହା ସେ ଜାଣିନଥିଲା । | عَلَّمَ الۡاِنۡسَانَ مَا لَمۡ يَعۡلَمۡ ؕ‏ ﴿۵﴾ |

**(କୁର୍‌ଆନ ୯୬ : ୧-୫)**

ଦ୍ୱିତୀୟ ଦୈବବାଣୀ ଅନେକ ଦିନ ପରେ ହେଲା । ମହାମାନ୍ୟ ମୁହମ୍ମଦ କୁହନ୍ତି—

> ''ମୁଁ ବାଟରେ ଯାଉଥିବା ସମୟରେ ହଠାତ୍ ଶୂନ୍ୟରୁ ଗୋଟିଏ ଶବ୍ଦ ଶୁଣିଲି । ତେଣୁ ମୁଁ ମୁଣ୍ଡ ଟେକି ଉପରକୁ ଚାହିଁଲି ଏବଂ ଦେଖିଲି ସେହି ସ୍ୱର୍ଗଦୂତ ଯିଏ ହିରା ଗୁମ୍ଫାରେ ମୋ ନିକଟକୁ ଆସିଥିଲେ, ଧରିତ୍ରୀ ଓ ଆକାଶ ମଧ୍ୟଭାଗରେ ଗୋଟିଏ ଚଉକିରେ ବସିଥିଲେ । ମୁଁ ଭୟରେ ଘରକୁ ଚାଲିଆସିଲି ଏବଂ କହିଲି ମୋତେ ଘୋଡ଼ାଇ ଦିଅ । ତା'ପରେ ଅଲ୍ଲାହ ମୋ ପ୍ରତି ନିମ୍ନ ଦୈବବାଣୀ କଲେ[3] :

| | | |
|---|---|---|
| ୧) | ହେ ବସ୍ତ୍ରାବୃତ୍ତ ବ୍ୟକ୍ତି | يٰۤاَيُّهَا الۡمُدَّثِّرُۙ‏ ﴿۱﴾ |
| ୨) | ଉଠ ଏବଂ ସାବଧାନ କର | قُمۡ فَاَنۡذِرۡ ۙ‏ ﴿۲﴾ |
| ୩) | ଏବଂ ନିଜ ପାଳନକର୍ତ୍ତାଙ୍କର ମହିମା ଗାନ କର | وَرَبَّكَ فَكَبِّرۡ ۙ‏ ﴿۳﴾ |

(3) ସହୀ ବୁଖାରୀ ୧ମ ଖଣ୍ଡ, ହଦିସ ୩, ତିରମିଜୀ, ହଦିସ୍-୩୩୨୫

| | |
|---|---|
| ୪) ଆଉ ନିଜ ପରିଧାନ ଶୁଦ୍ଧ ରଖ | وَ ثِيَابَكَ فَطَهِّرْ ۝ |
| ୫) ଏବଂ ଅଶୁଦ୍ଧତାଠାରୁ ଦୂରେଇ ରୁହ | وَ الرُّجْزَ فَاهْجُرْ ۝ |
| ୬) ଏବଂ ଉପକାର କରନା ଅଧିକ ପ୍ରତ୍ୟୁପକାର ଆଶାରେ | وَ لَا تَمْنُنْ تَسْتَكْثِرُ ۝ |
| ୭) ଏବଂ ନିଜ ପାଳନକର୍ତ୍ତାଙ୍କ ପ୍ରସନ୍ନତା ପାଇଁ ଧୈର୍ଯ୍ୟ ଧର । | وَ لِرَبِّكَ فَاصْبِرْ ۝ |

**(କୁର୍‌ଆନ ୭୪ : ୧-୭)**

## ମିଥ୍ୟାବାଦୀ ?

ଯେତେବେଳେ ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ଦୈବବାଣୀ ହେଲା ଯେ 'ସମ୍ପ୍ରଦାୟର ଆତ୍ମୀୟମାନଙ୍କୁ ସାବଧାନ କର', ସେ ଶଫା ନାମକ ଏକ ପାହାଡ଼ ଉପରେ ଚଢ଼ି ବିଭିନ୍ନ ସମ୍ପ୍ରଦାୟର ଲୋକମାନଙ୍କୁ ଉଚ୍ଚସ୍ୱରରେ ଡାକିଲେ, ଯାହାଫଳରେ ସେମାନେ ସମସ୍ତେ ସେଠି ରୁଣ୍ଡ ହୋଇଗଲେ । ଯେଉଁମାନେ ନିଜେ ଆସି ନ ପାରିଲେ, ସେମାନେ କ'ଣ ହେଉଛି ଜାଣିବା ପାଇଁ ନିଜ ଲୋକ ପଠାଇଲେ । କୁରେଶ ସମ୍ପ୍ରଦାୟରୁ ମହାମାନ୍ୟ ମୁହମ୍ମଦଙ୍କ କକା ଅବୁ ଲହବ ସହିତ ଅନ୍ୟମାନେ ମଧ୍ୟ ଉପସ୍ଥିତ ହେଲେ । ଏହାପରେ ମହାମାନ୍ୟ ମୁହମ୍ମଦ ସେମାନଙ୍କୁ କହିଲେ—''ଯଦି ମୁଁ ତୁମ୍ଭମାନଙ୍କୁ କହେ ଯେ ଏହି ପାହାଡ଼ ତଳେ ଅଶ୍ୱାରୋହୀ ଶତ୍ରୁ ତୁମ୍ଭମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ଅପେକ୍ଷା କରିଛନ୍ତି, କ'ଣ ତୁମ୍ଭେମାନେ ମୋତେ ବିଶ୍ୱାସ କରିବ ?'' ସମସ୍ତେ ଉତ୍ତର ଦେଲେ—''ଅବଶ୍ୟ ବିଶ୍ୱାସ କରିବୁ, କାରଣ ଆପଣ କେବେ ମିଛ କହିବାର ଆମେ ଶୁଣି ନାହୁଁ ।''

ଏହା ଶୁଣି ମହାମାନ୍ୟ ମୁହମ୍ମଦ କହିଲେ—

''ମୁଁ ତୁମ୍ଭମାନଙ୍କୁ (ପରଲୋକର) ଏକ ଭୟଙ୍କର ବିପଦ ସମ୍ପର୍କରେ ସାବଧାନ କରୁଛି ।'' ଅବୁଲହବ (ମହାମାନ୍ୟ

ମୁହମ୍ମଦଙ୍କ କକା) ସଙ୍ଗେ ସଙ୍ଗେ କହିଲେ—''ତୁମ ହାତ ଛିଡ଼ିପଡୁ, କ'ଣ ଏଇଥିପାଇଁ ତୁମେ ଆମକୁ ଡାକିଥିଲ ?''(4)

ଉପରୋକ୍ତ ଘଟଣାରୁ ଏହା ସ୍ପଷ୍ଟ ପ୍ରମାଣିତ ହୁଏ ଯେ ନିଜକୁ ଈଶ୍ୱରଦୂତ ବୋଲି ଘୋଷଣା କରିବା ପୂର୍ବରୁ ତାଙ୍କ ସତ୍ୟବାଦିତା ଓ ବିଶ୍ୱସନୀୟତା ପ୍ରତି ସମାଜ ଓ ଜ୍ଞାତିକୁଟୁମ୍ବମାନଙ୍କର ସମ୍ପୂର୍ଣ୍ଣ ଆସ୍ଥା ଥିଲା । କେବଳ ପୂର୍ବଜଙ୍କ ପରମ୍ପରା ବିରୋଧି ହୋଇଥିବାରୁ ସେମାନେ ତାଙ୍କ କଥାର ବିରୋଧ କରୁଥିଲେ । ଏହି ବ୍ୟକ୍ତି ତାଙ୍କ ଜୀବନରେ କେବେ ମିଥ୍ୟା କହି ନାହାନ୍ତି କିମ୍ବା ତାଙ୍କ ମୁହଁରୁ କେବେ ଆଧ୍ୟାତ୍ମିକବାଦ ଉପରେ ଆଲୋଚନା ଶୁଣାଯାଇନଥିଲା । ସେ ଏହା ପୂର୍ବରୁ କେବେ ଈଶ୍ୱରବାଦ, ପରଲୋକବାଦ ବା ସ୍ୱର୍ଗ ନର୍କ ବିଷୟରେ ଆଲୋଚନା କରୁନଥିଲେ । କିନ୍ତୁ ଯେତେବେଳେ ସେ ସମାଜକୁ ନିଜ ପ୍ରତି ପ୍ରକଟିତ ହୋଇଥିବା ବାର୍ତ୍ତା ଦେଲେ ସଙ୍ଗେ ସଙ୍ଗେ କୁରେଶ ସମ୍ପ୍ରଦାୟ ତାକୁ ଅଗ୍ରାହ୍ୟ କରିଦେଲା, କାରଣ ଏହା ସେମାନଙ୍କ କୌଳିକ ପ୍ରଥାର ବିରୁଦ୍ଧାଚରଣ କରୁଥିଲା । ମହାମାନ୍ୟ ମୁହମ୍ମଦ ସେମାନଙ୍କୁ ଏକ ଈଶ୍ୱରଙ୍କର ଉପାସନା କରିବା ପାଇଁ କହିଥିଲେ; କିନ୍ତୁ ସେମାନେ ଅନେକ ଈଶ୍ୱରରେ ବିଶ୍ୱାସ କରୁଥିଲେ ଏବଂ ପ୍ରତ୍ୟେକ ସମ୍ପ୍ରଦାୟର ଜଣେ ଲେଖାଏଁ ଉପାସ୍ୟ ଥିଲେ ।

ନିଜର ୬୩ବର୍ଷର ଜୀବନକାଳ ମଧ୍ୟରେ କେବେ ସେ ମିଥ୍ୟା କହିଥିବାର ଇତିହାସରେ ଉଲ୍ଲେଖ ନାହିଁ । ଶତ୍ରୁ ହୁଅନ୍ତୁ ବା ମିତ୍ର, ସମସ୍ତେ ତାଙ୍କୁ ଜଣେ ଅତି ସଚ୍ଚୋଟ ଏବଂ ବିଶ୍ୱସନୀୟ ବ୍ୟକ୍ତି ବୋଲି ଜାଣୁଥିଲେ । ତାଙ୍କର ଏହି ଗୁଣ ଯୋଗୁଁ ସମାଜ ତାଙ୍କୁ 'ଅଲ୍ ଅମୀନ୍' ଅର୍ଥାତ୍ 'ବିଶ୍ୱସନୀୟ' ଉପାଧି ମଧ୍ୟ ଦେଇଥିଲା । ଐତିହାସିକମାନେ ତାଙ୍କର ଏହି ସତ୍ୟନିଷ୍ଠାକୁ ଲିପିବଦ୍ଧ କରିଛନ୍ତି । ମହାମାନ୍ୟ ମୁହମ୍ମଦଙ୍କ ସତ୍ୟନିଷ୍ଠତା ବିଷୟରେ **ଥୋମାସ କାର୍ଲାଇଲ** କୁହନ୍ତି—

''ତାଙ୍କ ସାଥୀମାନେ ତାଙ୍କୁ ନାମ ଦେଇଥିଲେ 'ଅଲ୍-ଅମୀନ୍' ଅର୍ଥାତ୍ 'ବିଶ୍ୱସନୀୟ' । ଜଣେ ସଚ୍ଚୋଟ ଓ ବିଶ୍ୱସନୀୟ ମଣିଷ—ସଚ୍ଚୋଟ ନିଜ କଥାରେ, ନିଜ କାର୍ଯ୍ୟରେ ଆଉ ବିଚାରଧାରାରେ ।''(5)

---

(4) ସହୀବୁଖାରୀ ୬ଷ୍ଠ ଖଣ୍ଡ, ହଦିସ୍ ସଂ. ୨୯୩ ।

(5) "His companions named him 'Al Amin. The "Faithful." A man of truth and fidelity; true in what he did, in what he spake and thought ...(Thomas Carlyle, Heros and Hero Worship, London, p.73)

**ଉଇଲିୟମ୍ ମଣ୍ଟଗୋମେରୀ ୱାଟ୍** କୁହନ୍ତି—

''ଉଭୟ ମକ୍କା ଓ ମଦିନା କାଳରେ ମୁହମ୍ମଦଙ୍କ ସମକାଳୀନ ଲୋକମାନେ ତାଙ୍କୁ ଜଣେ ଉତ୍ତମ ଓ ସଚ୍ଚୋଟ ବ୍ୟକ୍ତି ବୋଲି ଜାଣିଥିଲେ ଏବଂ ଇତିହାସ ଦୃଷ୍ଟିରେ ସେ ହେଉଛନ୍ତି ଜଣେ ନୈତିକ ତଥା ସାମାଜିକ ସଂସ୍କାରକ ।''(6)

**ଷ୍ଟେନ୍‌ଲି ଲେନ୍‌ପୁଲ** କୁହନ୍ତି—

''ତାଙ୍କର ସମ୍ପୂର୍ଣ୍ଣ ଜୀବନ ସତ୍ୟ ପ୍ରତି ଆନୁଗତ୍ୟର ଏକ ଦୀର୍ଘ ବିତର୍କ ଥିଲା ।''(7)

**ମେଜର ଆର୍ଥର ଗ୍ଲାନ୍ ଲିଓନାର୍ଡ** କୁହନ୍ତି—

''ଅଧିକନ୍ତୁ ଏହା ସତ୍ୟ, କାରଣ ସେ ସଚ୍ଚୋଟ ଥିଲେ ନିଜ ପ୍ରତି, ନିଜ ଲୋକମାନଙ୍କ ପ୍ରତି ଆଉ ନିଜ ଈଶ୍ୱରଙ୍କ ପ୍ରତି ।''(8)

**ପ୍ରଫେସର ଉଇଲିୟମ୍ ମୁର୍** କୁହନ୍ତି—

''ତାଙ୍କର ସମସ୍ତ ଆଚରଣଗୁଡ଼ିକ ଯଥାର୍ଥ ଓ ନ୍ୟାୟସଙ୍ଗତ ଥିଲା ଏବଂ ବୟସ ବଢ଼ିବା ସହିତ ତାଙ୍କର ସମ୍ମାନିତ ବ୍ୟକ୍ତିତ୍ୱ ତାଙ୍କ ପାଇଁ 'ଅଲ୍-ଅମୀନ୍' ଅର୍ଥାତ୍ 'ବିଶ୍ୱସନୀୟ' ଉପାଧି ଅର୍ଜନ କରିଥିଲା ।''(9)

---

(6) "In both Meccan and Medinan periods Muhammad's contemporaries looked on him as a good and upright man, and in the eyes of history he is a moral and social reformer." (William Mantgomery Watt, Prophet and Statesman, London, p.234)

(7) "His whole life was one long argument for his loyalty to truth." (Stanley Lane-Poole, Studies in a Mosque, London, p.81)

(8) "True, moreover, because he was true to himself, to his people, and above all to his God." (Major Arthur Glyn Leonard, Islam : Her Moral and Spiritual Value, London, p.21)

(9) "In all his dealings he was fair and upright, and as he grew in years his honourable bearing won for him the title of Al Ameen, "the faithful." (Sir William Muir, Mahomet and Islam, p.19)

ଐତିହାସିକ **ବୋସୱର୍ଥ ସ୍ମିଥ୍** ମତ ଦିଅନ୍ତି—

''ନିଃସନ୍ଦେହ ଭାବରେ ମକ୍କାରେ ସାରାଜୀବନ ମୁହମ୍ମଦ ଋଷିତୁଲ୍ୟ ଗୁଣ ସମୂହର ଏକ ପରିପୂର୍ଣ୍ଣ ମଡ଼େଲ ଥିଲେ ।''(10)

ଟିକିଏ ଚିନ୍ତା କରିବା କଥା ଯେ ଯେଉଁ ବ୍ୟକ୍ତି ଜୀବନର ଚାଳିଶ ବର୍ଷ ମଧ୍ୟରେ ଥରେ ହେଲେ ମିଥ୍ୟା କହିନାହାନ୍ତି, ସେ ୪୦ବର୍ଷ ପରେ ହଠାତ୍ ଏତେ ବଡ଼ ମିଛ କିପରି କହିପାରିଲେ ଏବଂ ଦୀର୍ଘ ତେଇସି ବର୍ଷ କାଳ ନିଜ ଘରେ, ପରିବାର ମଧ୍ୟରେ, ସମାଜ ଆଗରେ, ଉପାସନା ଗୃହରେ ଏବଂ ଯୁଦ୍ଧକ୍ଷେତ୍ରରେ ମଧ୍ୟ ମିଥ୍ୟାର ପ୍ରଚାର କରିଚାଲିଲେ ? ଏହା କିପରି ନ୍ୟାୟ ଯେ ଚାଳିଶି ବର୍ଷ ବୟସରେ ଯେଉଁ ବ୍ୟକ୍ତିଙ୍କ ପ୍ରତି ମିଥ୍ୟାବାଦୀର ଆରୋପ କରାଯାଉଛି, ତାଙ୍କ ଜୀବନ ଇତିହାସରେ ଥରେ ହେଲେ ମିଛ କହିଥିବାର ଉଲ୍ଲେଖ ନାହିଁ ? ଏହା ଏକ ମିଥ୍ୟାରୋପ ବ୍ୟତୀତ ଆଉ କ'ଣ ହୋଇପାରେ ?

**ଉଚ୍ଚାଭିଳାଷୀ ?**

କେତେକ ପାଶ୍ଚାତ୍ୟ ସମାଲୋଚକ କହିଛନ୍ତି ଯେ, ମହାମାନ୍ୟ ମୁହମ୍ମଦଙ୍କର କ୍ଷମତାର ଉଚ୍ଚାକାଂକ୍ଷା ଥିଲା, ଯେଉଁଥିପାଇଁ ସେ ନିଜକୁ ଜଣେ ଧର୍ମଦୂତ ବୋଲି ଘୋଷଣା କଲେ । ଯଦି କୁହାଯାଏ ଯେ, ସେ କ୍ଷମତା ବା ପ୍ରତିଷ୍ଠା ପାଇଁ ନିଜକୁ ଈଶ୍ୱରଦୂତ ବୋଲି ଦାବୀ କଲେ, ତେବେ ମନରେ ପ୍ରଶ୍ନ ଉଠେ ଯେ କ୍ଷମତାଲିପ୍‌ସୁ ବ୍ୟକ୍ତି କ'ଣ ଏମିତି ହୁଅନ୍ତି ? ସେମାନେ ଭଲ ଖାଆନ୍ତି, ମୂଲ୍ୟବାନ ପୋଷାକ ପିନ୍ଧନ୍ତି, ପ୍ରାସାଦରେ ରହିବା ପସନ୍ଦ କରନ୍ତି । ସେମାନେ କ୍ଷୀର ଦୁହନ୍ତି ନାହିଁ । ହାତରେ ଲୁଗା ସିଲାଇ କରନ୍ତି ନାହିଁ । ତାଳିପକା ଲୁଗା ପିନ୍ଧନ୍ତି ନାହିଁ, ଜୋତା ସିଲାଇ କରନ୍ତି ନାହିଁ କିମ୍ବା ଦିନ ଦିନ ଧରି ଭୋକ ଉପାସରେ ରୁହନ୍ତି ନାହିଁ ।

ଈଶ୍ୱରଦୂତ ବୋଲି ଘୋଷଣା କରିବା ପୂର୍ବରୁ ମହାମାନ୍ୟ ମୁହମ୍ମଦ ସମ୍ଭ୍ରାନ୍ତ ବଂଶର ଜଣେ ସଭ୍ୟ ଯୁବକ ଥିଲେ । ତାଙ୍କ ଜେଜେ ମକ୍କାର ଜଣେ ସର୍ଦ୍ଦାର ଥିଲେ । ତେଣୁ ସମାଜରେ ମହାମାନ୍ୟ ମୁହମ୍ମଦଙ୍କର ଯଥେଷ୍ଟ ଆଦର

---

(10) "Mohammed himself, throughout his life at Mecca, unquestionably was a perfect model of the saintly virtues... (R. Bosworth Smith, Mohammed and Mohammedanism, London, p.145)

ଓ ସମ୍ମାନ ଥିଲା । ବରଂ ଧର୍ମଦୂତ ବୋଲି ଘୋଷଣା କରିବା ପରେ ତାଙ୍କୁ ଅପମାନିତ କରାଗଲା, ଲାଞ୍ଛନା ଦିଆଗଲା ଏବଂ ତାଙ୍କ ପ୍ରତି ନାନା ପ୍ରକାର ଅତ୍ୟାଚାର କରାଗଲା । ତାଙ୍କୁ ହତ୍ୟା କରିବାର ଯୋଜନା ମଧ୍ୟ କରାଗଲା, ଯେଉଁଥିପାଇଁ ସେ ନିଜ ଜନ୍ମସ୍ଥାନ ମକ୍କା ଛାଡ଼ି ମଦିନା ଚାଲିଯିବାକୁ ବାଧ୍ୟ ହେଲେ ।

ଯଦି ଯଶ ବା ସୁନାମ ତାଙ୍କର ଲକ୍ଷ୍ୟ ହୋଇଥାଆନ୍ତା, ତେବେ ତାଙ୍କ ନିକଟରେ ଏଥିପାଇଁ ଆହୁରି ସହଜ ଉପାୟ ଥିଲା । ସେ ନିଜକୁ ପବିତ୍ର କୁର୍‌ଆନ ଭଳି ମହାନ ଗ୍ରନ୍ଥର ସ୍ରଷ୍ଟା ବୋଲି ଦାବି କରିପାରି ଥାଆନ୍ତେ ଏବଂ ତାଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ କାବା ପୀଠର କାନ୍ଥରେ ଚିରଦିନ ପାଇଁ ଲେଖା ହୋଇ ରହିଥାଆନ୍ତା । ଲୋକେ ତ ସୁନାମ ଅର୍ଜନ କରିବା ପାଇଁ ଅନ୍ୟର କୃତି ବା ରଚନାକୁ ନିଜର ବୋଲି କହିଦିଅନ୍ତି, କିନ୍ତୁ ସେ ସେମିତି କଲେନାହିଁ । ଲୋକେ କହିଲେ ଯେ, ସେ କୁର୍‌ଆନ ନିଜେ ଲେଖି ଦେଇଛନ୍ତି; କିନ୍ତୁ ମହାମାନ୍ୟ ମୁହମ୍ମଦ ଏହାକୁ ଦୃଢ଼ଭାବରେ ଅସ୍ୱୀକାର କଲେ ।

ଏହାବ୍ୟତୀତ ଏଭଳି ଜଣେ ବିଶ୍ୱପ୍ରସିଦ୍ଧ ମହାପୁରୁଷ ଯଦି ନିଜକୁ ଈଶ୍ୱର ବୋଲି କହିଥାଆନ୍ତେ, ତେବେ ଅନେକ ମହାପୁରୁଷଙ୍କ ପରି ମହାମାନ୍ୟ ମୁହମ୍ମଦଙ୍କର ପୂଜା ଅର୍ଚ୍ଚନା ହୋଇଥାଆନ୍ତା । ଏହାଠାରୁ ବଳି ଅଧିକ ସମ୍ମାନ ମଣିଷ ପାଇଁ ଆଉ କ'ଣ ଥାଇପାରେ ?

ଅନେକ ପ୍ରସିଦ୍ଧ ବ୍ୟକ୍ତି ଯଶ ବା ସମ୍ମାନ ପାଇଁ ନିଜର ପ୍ରତିମୂର୍ତ୍ତି ସ୍ଥାପନ କରନ୍ତି । ମହାମାନ୍ୟ ମୁହମ୍ମଦ କିନ୍ତୁ ନିଜର ଚିତ୍ର ରଖିବାର ମଧ୍ୟ ଅନୁମତି ଦେଇନାହାନ୍ତି । ତାଙ୍କର ଆଶଙ୍କା ଥିଲା ଯେ ଲୋକେ ତାଙ୍କ ଫଟୋକୁ ଫୁଲମାଳ ପିନ୍ଧାଇବେ ଏବଂ ତାଙ୍କର ପ୍ରତିମୂର୍ତ୍ତି ନିର୍ମାଣ କରି ପୂଜା କରିବେ । ଏପରିକି ନିଜ ସମାଧିକୁ ଉପାସନା ପୀଠ ନ କରିବାକୁ ଓ ସେଠାରେ କୌଣସି ମେଳା-ମହୋତ୍ସବ ନ କରିବାକୁ ମଧ୍ୟ ସେ ନିର୍ଦ୍ଦେଶ ଦେଇଛନ୍ତି ।[11]

ବନ୍ଧୁମାନଙ୍କ ଗହଣରେ ସେ ଏଭଳି ବସନ୍ତି ଯେ ସେମାନଙ୍କ ମଧ୍ୟରୁ ମହାମାନ୍ୟ ମୁହମ୍ମଦ କିଏ ବୋଲି ଜାଣିବା କଷ୍ଟକର ହୋଇପଡୁଥିଲା । ଲୋକେ

[11] ଅବୁ ଦାଉଦ, ହଦିସ ୨୦୩୭

ତାଙ୍କର ଅତ୍ୟଧିକ ପ୍ରଶଂସା କରନ୍ତୁ, ଏହା ସେ ପସନ୍ଦ କରୁନଥିଲେ । ଏ ସମ୍ପର୍କରେ ନିର୍ଦ୍ଦେଶ ଦେଇ ସେ କହିଛନ୍ତି—

> ''ମେରୀଙ୍କ ପୁତ୍ର ଯୀଶୁଙ୍କର ପ୍ରଶଂସା କରାଯିବା ପରି ମୋର ମାତ୍ରାଧିକ୍ ପ୍ରଶଂସା କରନାହିଁ, ବରଂ ମୋତେ ଅଲ୍ଲାହଙ୍କର ଭକ୍ତ ଓ ବାର୍ତ୍ତାବହ ବୋଲି କୁହ ।''

**(ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ ୮୧୭)**

ସେ ନିଜକୁ ଜଣେ ମଣିଷ ଏବଂ ଈଶ୍ୱରଙ୍କର ସେବକ ବୋଲି ପରିଚୟ ଦେଉଥିଲେ । ତାଙ୍କର ବିନମ୍ରତା ପ୍ରତି ଆଶ୍ଚର୍ଯ୍ୟ ପ୍ରକାଶ କରି ଷ୍ଟେନ୍‌ଲି ଲେନ୍‌ପୁଲ କୁହନ୍ତି—

> ''ଆଶ୍ଚର୍ଯ୍ୟ ! ନିଜର ଲୋଭନୀୟ କାର୍ଯ୍ୟଧାରା ସହିତ ତାଙ୍କର ବିନମ୍ରତା କେତେ ମହାନ ! ଲୋକମାନଙ୍କ ଦ୍ୱାରା ତାଙ୍କ ଉପରେ ଲଦି ଦିଆଯାଉଥିବା ଈଶ୍ୱରୀୟ ଗୁଣଗୁଡ଼ିକ ପାଇଁ ସେ କିଭଳି ନିଜକୁ ଅଯୋଗ୍ୟ ମନେ କରୁଥିଲେ ! ତାଙ୍କର ସମ୍ପୂର୍ଣ୍ଣ ଜୀବନ ସତ୍ୟ ପ୍ରତି ଆନୁଗତ୍ୟର ଏକ ଦୀର୍ଘ ବିତର୍କ ଥିଲା । ତାଙ୍କ ଉପାସକମାନଙ୍କ ପାଇଁ ତାଙ୍କ ନିକଟରେ ସଦାବେଳେ ଗୋଟିଏ ଉତ୍ତର ଥିଲା—ମୁଁ ଜଣେ ମଣିଷ ମାତ୍ର, ଜଣେ ମଣିଷଠାରୁ ଅଧିକ କିଛି ନୁହେଁ ।''[12]

କୌଣସି ଉଚ୍ଚାଭିଳାଷ ବା ପ୍ରତିଷ୍ଠା ତାଙ୍କର ଆଦୌ ଲକ୍ଷ ନଥିଲା ବୋଲି ମତଦେଇ ଥୋମାସ୍ କାର୍ଲାଇଲ୍ କୁହନ୍ତି—

> ''ଉଚ୍ଚାଭିଳାଷ ! ସମଗ୍ର ଆରବ ଏହି ଲୋକଟି ପାଇଁ କ'ଣ କରିପାରି ଥାଆନ୍ତା ? କ'ଣ ଦେଇପାରି ଥାଆନ୍ତା ତାଙ୍କୁ ଗ୍ରୀସ୍‌ର ହରକ୍ୟୁଲେସ୍‌ଙ୍କ ରାଜମୁକୁଟ ଏବଂ ପାରସ୍ୟର ଖୁସ୍ରୁମାନଙ୍କର

---

[12] "It is wonderful, with his temptations, how great a humility was ever his, how little he assumed of all the god-like attributes men forced upon him. His whole life is one long argument for his loyalty to truth. He had but one answer for his worshippers, " I am no more than a man, I am only human." (Stanley Lane-Poole, Studies in a Mosque, London, p.81)

ରାଜସିଂହାସନ ଆଉ ବିଶ୍ୱର ସବୁଯାକ ସାମ୍ରାଜ୍ୟ ? ଏମାନେ ସମସ୍ତେ ତାଙ୍କୁ କ'ଣ ଦେଇପାରି ଥାଆନ୍ତେ ? ସେ ତ ମର୍ତ୍ତ୍ୟ କଥା ଶୁଣୁନଥିଲେ । ଶୁଣୁଥିଲେ କେବଳ ସ୍ୱର୍ଗ ଆଉ ନର୍କର କଥା । ରାଜଗାଦୀ ହେଉ ବା ଆଧିପତ୍ୟ, କେତେ ବର୍ଷ ରହିବ ? ମକ୍କା ବା ଆରବର ମୁଖ୍ୟ ହୋଇଯିବା ଏବଂ ଝଲମଲ କରୁଥିବା ପଗଡ଼ିଟିଏ ପିନ୍ଧିନେବା ଦ୍ୱାରା କ'ଣ ମଣିଷକୁ ମୋକ୍ଷ ମିଳିଯାଏ । ମୁଁ ଏମିତି ଭାବୁନାହିଁ । ଏହି ପ୍ରବଞ୍ଚନାର ପରିକଳ୍ପନା ଆମ ପାଇଁ ଅଗ୍ରହଣୀୟ, ଅସହ୍ୟ ଏବଂ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ ଯୋଗ୍ୟ ।''[13]

ଏ ସମ୍ପର୍କରେ ଐତିହାସିକ ବୋସୱର୍ଥ ସ୍ମିଥ୍ କୁହନ୍ତି—

''ବାସ୍ତବରେ, ପରିସ୍ଥିତି ଚକ୍ରରେ ସେ ହୋଇଯାଇଥିଲେ ଶାସକ, ସେନାଧକ୍ଷ, ଆଇନ ପ୍ରଣେତା ତଥା ସମଗ୍ର ଆରବର ମୁଖ୍ୟ ବିଚାରପତି; କିନ୍ତୁ ଏହାପୂର୍ବରୁ ଓ ପରେ ମଧ୍ୟ ସେ ଥିଲେ ଈଶ୍ୱରଙ୍କର ଜଣେ ସାଧାରଣ ବାର୍ତ୍ତାବହ, ଯିଏ ଏକନିଷ୍ଠ ହୃଦୟରେ ଈଶ୍ୱରଙ୍କର ବାର୍ତ୍ତା ପ୍ରଦାନ କରୁଥିଲେ ଏବଂ ଯଥାଶକ୍ତି ତାଙ୍କର ଆଜ୍ଞା ପାଳନ କରୁଥିଲେ । କିନ୍ତୁ କେବେହେଲେ ନିଜକୁ ଈଶ୍ୱରଙ୍କର ଜଣେ ଦୁର୍ବଳ ଓ ଅପରାଧୀ ସେବକଠାରୁ ଅଧିକ କିଛି ମନେ କରୁ ନଥିଲେ ।''[14]

---

(13) "Ambition ! What could all Arabia do for this man; with the crown of Greek Heraclius, of Persian Chosroes, and all crowns in the Earth—what could they all do for him ? It was not of the Earth he wanted to hear tell ; it was of the Heaven above and of the Hell beneath. All crowns and sovereignties whatsoever, where would they in a few brief years be ? To be Sheik of Mecca or Arabia, and have a bit of gilt wood put into your hand—will that be one's salvation ? I decidedly think, not. We will leave it altogether, this impostor hypothesis, as not credible; not very tolerable even, worthy chiefly of dismissal by us." (Thomas Carlyle, Heros and Hero Worship, London pp.76-77)

(14) He became indeed, by the force of circumstances, general and ruler, lawgiver and judge of all Arabia ; but above all and

ତେଣୁ ଯଶ, ଖ୍ୟାତି ବା କ୍ଷମତା ପାଇଁ ଯେ ମହାମାନ୍ୟ ମୁହମ୍ମଦ ନିଜକୁ ଈଶ୍ୱରଦୂତ ବୋଲି ଦାବି କରିଛନ୍ତି, ଏହା ବିଶ୍ୱାସଯୋଗ୍ୟ ନୁହେଁ । ଏହା ଏକ ଅଭିସନ୍ଧିମୂଳକ ମିଥ୍ୟାରୋପ ।

**ଲୋଭୀ ?**

ଦ୍ୱିତୀୟ ସମ୍ଭାବ୍ୟ କାରଣ ହେଉଛି ଧନ । ହୁଏତ ଧନସମ୍ପତ୍ତି ଲାଳସାରେ ମହାମାନ୍ୟ ମୁହମ୍ମଦ ନିଜକୁ ଜଣେ ଈଶ୍ୱରଦୂତ ବୋଲି ମିଥ୍ୟା ଦାବି କରିଥାଇପାରନ୍ତି ବୋଲି କେହି କେହି ଯୁକ୍ତି ବାଢ଼ିପାରନ୍ତି । କିନ୍ତୁ ଏହା ମଧ୍ୟ ସମ୍ଭବ ନୁହେଁ । କାରଣ ସେ ସମୟରେ ମହାମାନ୍ୟ ମୁହମ୍ମଦ ଜଣେ ଧନୀ ବ୍ୟବସାୟୀ ମହିଳାଙ୍କ ସ୍ୱାମୀ ଥିଲେ ଏବଂ ଜଣେ ପ୍ରତିଷ୍ଠିତ ବ୍ୟବସାୟୀ ରୂପେ ନିଜକୁ ପ୍ରମାଣିତ କରିସାରିଥିଲେ । ଜୀବନର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ତାଙ୍କ ନିକଟରେ ଉପଲବ୍ଧ ଥିଲା ଏବଂ ଆର୍ଥିକ ଅବସ୍ଥା ଖୁବ୍ ସ୍ୱଚ୍ଛଳ ଥିଲା । ଆମେ ଇତିହାସରୁ ଜାଣିବାକୁ ପାଉ ଯେ ଈଶ୍ୱରଦୂତ ପଦ ପାଇଲା ପରେ ସେ ଦାରିଦ୍ର୍ୟ ଜୀବନ ନିର୍ବାହ କଲେ । ଅନେକ ସମୟରେ ଘରେ ଚୁଲି ଜଳୁନଥିଲା ଏବଂ ପରିବାର ଉପାସ ରହୁଥିଲେ । ତାଙ୍କ ପତ୍ନୀ ହଜରତ ଆଇଶା କୁହନ୍ତି ଯେ, ବେଳେବେଳେ ଦୁଇ ଦୁଇ ମାସ ଘରେ ଚୁଲି ଜଳୁ ନଥିଲା, କାରଣ ରୋଷେଇ ପାଇଁ ଘରେ କିଛି ରହୁନଥିଲା । ସେମାନେ ଖଜୁରୀ ଓ ପାଣି ଦ୍ୱାରା ଭୋକ ମେଣ୍ଟାଉଥିଲେ । ପଡୋଶୀମାନେ ବେଳେବେଳେ କିଛି କ୍ଷୀର ଦେଇଦିଅନ୍ତି । (ସହୀ ବୁଖାରୀ, ୩ୟ ଖଣ୍ଡ, ହଦିସ ୭୪୧)

ସେ ଖଜୁରୀପତ୍ର ବା ଚମଡ଼ା ବିଛଣାରେ ଶୋଉଥିଲେ । ଯାହାକିଛି ଉପହାର ସ୍ୱରୂପ ମିଳୁଥିଲା, ତାକୁ ମଧ୍ୟ ଅନ୍ୟକୁ ଦେଇ ଦେଉଥିଲେ । ଜଣେ ଧନଲୋଭୀ ବ୍ୟକ୍ତି କ'ଣ ସବୁ କିଛି ଦାନ କରିଦିଏ ? ଏଇ ହେଉଛି ତାଙ୍କର ଦାରିଦ୍ର୍ୟ ଓ ବଦାନ୍ୟତାର କାହାଣୀ । ଏ ସମ୍ପର୍କରେ ଏକ ସ୍ପଷ୍ଟ ଚିତ୍ର ଦେଇ ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକାର ଲେଖକ ଲେଖିଛନ୍ତି—

---

before all, he was still a simple prophet delivering God's message in singleness of heart, obeying, as far as he could, God's will, but never claiming to be more than God's weak and erring servant. (R. Bosworth Smith, Mohammed and Mohammedanism, London, p.106)

''ତାଙ୍କର ଚରିତ୍ର ଚିତ୍ରଣ କରୁଥିବା ବିଶେଷ ଗୁଣଗୁଡ଼ିକ ହେଉଛି—ବିନୟ ଓ ଦାରିଦ୍ର୍ୟ, ବଦାନ୍ୟତା ଓ ଉଦାରତା ଏବଂ ସାଧୁତା ଓ ସଚ୍ଚୋଟତା । ଯୀଶୁଖ୍ରୀଷ୍ଟଙ୍କ ପରି ମୁହମ୍ମଦ ଆଧ୍ୟାତ୍ମିକ ଦାରିଦ୍ର୍ୟକୁ ପସନ୍ଦ କରୁଥିଲେ ଏବଂ ଦୀନଦରିଦ୍ରମାନଙ୍କର ଅତି ନିକଟତର ମଧ୍ୟ ଥିଲେ । ଏପରିକି ଗୋଟିଏ ବିଶାଳ ବିଶ୍ୱର ଅଧିପତି ହୋଇଯିବା ପରେ ମଧ୍ୟ ସେ ଅତି ସରଳ ଜୀବନଯାପନ କରୁଥିଲେ ।''[15]

ମକ୍କାର ସର୍ଦ୍ଦାରମାନେ ଥରେ କକା ଅବୁ ତାଲିବଙ୍କ ମାଧ୍ୟମରେ ମହାମାନ୍ୟ ମୁହମ୍ମଦଙ୍କୁ ପ୍ରସ୍ତାବ ଦେଲେ ଯେ ଯଦି ସେ ତାଙ୍କ ବାର୍ତ୍ତାର ପ୍ରଚାର ତ୍ୟାଗ କରିଦିଅନ୍ତି, ତେବେ ସେମାନେ ତାଙ୍କୁ ଅଜସ୍ର ଧନସମ୍ପତ୍ତି ଦେବେ ଏବଂ ମକ୍କାର ସର୍ଦ୍ଦାର କରିଦେବେ ।[16] ପ୍ରସ୍ତାବଟି ନିଶ୍ଚିତ ଭାବରେ ଆକର୍ଷଣୀୟ ଥିଲା । ଜଣେ ଧନ ବା ପ୍ରତିଷ୍ଠାଲୋଭୀ ବ୍ୟକ୍ତି ପାଇଁ ଏଭଳି ପ୍ରସ୍ତାବ ଏକ ସୁବର୍ଣ୍ଣ ସୁଯୋଗ ଥିଲା । କିନ୍ତୁ ମହାମାନ୍ୟ ମୁହମ୍ମଦଙ୍କର ଉତ୍ତର ଶୁଣନ୍ତୁ । ସେ ଉତ୍ତର ଦେଲେ ଯେ, ଯଦି ସେମାନେ ମୋ ଡାହାଣ ହାତରେ ସୂର୍ଯ୍ୟ ଏବଂ ବାମ ହାତରେ ଚନ୍ଦ୍ର ଆଣି ରଖିଦିଅନ୍ତି, ତେବେ ମଧ୍ୟ ମୃତ୍ୟୁ ପର୍ଯ୍ୟନ୍ତ ମୁଁ ମୋ ଲକ୍ଷ୍ୟରୁ ପଛକୁ ହଟିବି ନାହିଁ ।[17] ତେଣୁ ଧନସମ୍ପତ୍ତି ଲାଳସାରେ ବା କ୍ଷମତା ଲୋଭରେ ମହାମାନ୍ୟ ମୁହମ୍ମଦ ନିଜକୁ ଈଶ୍ୱରଦୂତ ବୋଲି ଦାବି କରିଥିଲେ ବୋଲି କୁହାଯାଇ ନ ପାରେ ।

ତେବେ କେଉଁ କାରଣରୁ ସେ ପୂର୍ବଜଙ୍କ ଧର୍ମକୁ ଗ୍ରହଣ କଲେନାହିଁ ? ନିଜ ପରିବାର ସହ ସୁଖଶାନ୍ତିରେ ନ ରହି କାହିଁକି ସେ ଏକ ସଂଘର୍ଷପୂର୍ଣ୍ଣ

---

(15) "The virtues that characterize him are humility and poverty, magnanimity and nobility, and sincerity and truthfulness. Like Jesus Christ, Muhammad loved spiritual poverty and was also close to the economically poor, living very simply even after he had become "the ruler of a whole world." ("Muhammad." Encyclopædia Britannica Ultimate Reference Suite, Chicago, 2011)

(16) Martin Lings, Muhammed—His Life from Earlier Sources, pp. 60-61.

(17) Sirat Ibn Histan, Al-Falah Foundation, Cairo, p. 44.

ଦାରିଦ୍ର୍ୟ ଜୀବନକୁ ଆଦରି ନେଲେ ? ତାଙ୍କ ବନ୍ଧୁମାନଙ୍କୁ ନିର୍ଯ୍ୟାତନା ଦିଆଗଲା, ହତ୍ୟା କରାଗଲା, ନିଜ ଜନ୍ମମାଟିରୁ ସେମାନଙ୍କୁ ତଡ଼ି ଦିଆଗଲା । ଯୁଦ୍ଧ ଓ ରକ୍ତପାତ ମଧ୍ୟ ହେଲା । ତଥାପି କାହିଁକି ସେ ନିଜ ବିଚାର ବଦଳାଇଲେ ନାହିଁ ବା ନିଜ କାର୍ଯ୍ୟ ବନ୍ଦ କଲେନାହିଁ । ଏହାର ଉତ୍ତରରେ ସେ କୁହନ୍ତି ଯେ ସେ ନିଜ ଇଚ୍ଛାରେ ନୁହଁ, ବରଂ ଈଶ୍ୱରଙ୍କ ଦ୍ୱାରା ଆଦିଷ୍ଟ ହୋଇ ତାଙ୍କ ଧର୍ମର ପୁନଃସ୍ଥାପନା କରୁଛନ୍ତି ।

ଏଭଳି ଜଣେ ସଚ୍ଚୋଟ ଓ ସୁଗୁଣସମ୍ପନ୍ନ ବ୍ୟକ୍ତି ଯଦି ନିଜ ପ୍ରତି ଦୈବବାଣୀ ହୋଇଥିବାର ପ୍ରକାଶ କରନ୍ତି ଏବଂ ସବୁ ପ୍ରକାରର ବାଧାବିଘ୍ନ ସତ୍ତ୍ୱେ ନିଜ ଲକ୍ଷ୍ୟରେ ତାଙ୍କୁ ଅଟଳ ରହିବାର ଦେଖାଯାଏ, ତେବେ ଏହାକୁ ହାଲୁକା ଭାବରେ ଗ୍ରହଣ କରିନେବା ଉଚିତ ନୁହେଁ । ତାଙ୍କୁ ଭଲରୂପେ ପରୀକ୍ଷା କରିବା ଉଚିତ ଏବଂ ତାଙ୍କ ଦାବି ସପକ୍ଷରେ ଯୁକ୍ତିଯୁକ୍ତ ପ୍ରମାଣ ଅଛି ନା ନାହିଁ, ତାହା ଦେଖିବା ଉଚିତ । ଏବେ ଆସନ୍ତୁ, ଆମେ ଏ ବିଷୟରେ ଟିକିଏ ବିସ୍ତୃତ ଭାବରେ ଆଲୋଚନା କରିବା ।

## ନିଖୁଣ ଚରିତ୍ର

ମହାମାନ୍ୟ ଈଶ୍ୱରଦୂତଗଣ ସର୍ବପ୍ରଥମେ ସମାଜକୁ ନିଜର ଚାରିତ୍ରିକ ପ୍ରମାଣ ଦିଅନ୍ତି । ସେମାନେ ନିଜ ସାଧୁତା ଓ ଚାରିତ୍ରିକ ସ୍ୱଚ୍ଛତା ମାଧ୍ୟମରେ ପ୍ରମାଣ ଦିଅନ୍ତି ଯେ ସେମାନେ ଈଶ୍ୱରଙ୍କର ଆଦିଷ୍ଟ ପୁରୁଷ । ସେମାନଙ୍କର ନିର୍ମଳ ଚରିତ୍ର କହିଦିଏ ଯେ ଏମାନେ ସାଧାରଣ ମନୁଷ୍ୟ ନୁହନ୍ତି । ଏକ ନିଖୁଣ ଚରିତ୍ରର ସ୍ୱାମୀ ହିଁ ଅନ୍ୟର ଚରିତ୍ର ଗଠନ କରିପାରେ । କୌଣସି ସାଧାରଣ ଚରିତ୍ରର ବ୍ୟକ୍ତି ମଣିଷର ବିଶ୍ୱାସକୁ ବଦଳାଇଦେବାରେ ସମର୍ଥ ହୁଏନାହିଁ । ଜଣେ ମିଥ୍ୟାବାଦୀ, ଭଣ୍ଡ, ଲମ୍ପଟ ବା ଦୁଷ୍ଟ ସ୍ୱଭାବର ବ୍ୟକ୍ତିକୁ ବୁଦ୍ଧିମାନମାନେ ଆଦର୍ଶ ରୂପେ ଗ୍ରହଣ କରନ୍ତି ନାହିଁ । ଅନ୍ୟକୁ ସଦୁପଦେଶ ଦେଉଥିବା ବ୍ୟକ୍ତି ନିଜେ ମଧ୍ୟ ସେହି ମାର୍ଗରେ ଚାଲୁଥିବା ଆବଶ୍ୟକ । ତା' ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନ ଏବଂ ତା' ସମାଜ ନିକଟରେ ସେ ଜଣେ ନିଖୁଣ ଚରିତ୍ରର ବ୍ୟକ୍ତି ରୂପେ ଗ୍ରହଣୀୟ ହୋଇଥିବା ଦରକାର । ମହାମାନ୍ୟ ମୁହମ୍ମଦଙ୍କ ଚରିତ୍ର ଯେ କେତେ ଉଚ୍ଚକୋଟୀର ଥିଲା ଏବଂ ତାଙ୍କ ବ୍ୟକ୍ତିତ୍ୱ ଯେ କେତେ ପ୍ରଭାବଶାଳୀ ଥିଲା, ଏହା ଆମେ ପ୍ରଥମ ଅଧ୍ୟାୟରେ ଇତିହାସର ଆଲୋକରେ ଆଲୋଚନା କରିସାରିଛୁ । ଏଠାରେ ପୁନରାବୃତ୍ତି କରିବାର ଆବଶ୍ୟକତା ନାହିଁ ।

ଏଠାରେ ଆମେ ଦେଖିବା ଯେ କେତେ ସହଜରେ ସେ ଅନ୍ୟର ହୃଦୟକୁ ଜୟ କରିପାରୁଥିଲେ ।

ସର୍ବପ୍ରଥମେ ଯେଉଁମାନେ ମହାମାନ୍ୟ ମୁହମ୍ମଦଙ୍କ କଥାକୁ ସତ୍ୟ ବୋଲି ବିଶ୍ୱାସ କରିନେଲେ ଏବଂ ତାଙ୍କୁ ଈଶ୍ୱରଦୂତ ରୂପେ ଗ୍ରହଣ କଲେ, ସେମାନେ ଥିଲେ ତାଙ୍କର ଅତି ନିକଟ ସମ୍ପର୍କୀୟ—ତାଙ୍କ ପତ୍ନୀ, ତାଙ୍କ ସେବକ, ତାଙ୍କ ପରମ ମିତ୍ର ଏବଂ ତାଙ୍କ କକାଙ୍କ ପୁଅ । ଏମାନେ ତାଙ୍କୁ ଅତି ନିକଟରୁ ଦେଖିଥିଲେ । ତାଙ୍କ ହାବଭାବ, ଚାଲିଚଳଣ, ଆଚାର ବ୍ୟବହାର ଏବଂ ତାଙ୍କ ଚିନ୍ତାଧାରା ସହ ସେମାନେ ଖୁବ୍ ପରିଚିତ ଥିଲେ ଏବଂ ତାଙ୍କ ଚରିତ୍ରର କୌଣସି ଦିଗ ସେମାନଙ୍କ ଦୃଷ୍ଟିରୁ ଲୁଚି ରହିନଥିଲା । ଜଣେ ବ୍ୟକ୍ତି ହୁଏତ କିଛି ସମୟ ଅଭିନୟ କରି ବାହାର ଲୋକଙ୍କୁ ପ୍ରତାରଣା କରିପାରେ; କିନ୍ତୁ ନିଜ ଘରଲୋକଙ୍କୁ ସେ ପ୍ରତାରିତ କରିପାରେ ନାହିଁ, କାରଣ ସେମାନେ ତା' ଅସଲ ରୂପକୁ ଭଲ ରୂପେ ଚିହ୍ନି ଥାଆନ୍ତି । ମହାମାନ୍ୟ ମୁହମ୍ମଦଙ୍କ ଏହି ସମ୍ପର୍କୀୟମାନଙ୍କ ଦ୍ୱାରା ବିନା ଦ୍ୱିଧାରେ ତାଙ୍କ କଥାକୁ ସ୍ୱୀକାର କରିନେବା ଏବଂ ନିଜର କୌଳିକ ଧର୍ମ ତ୍ୟାଗ କରିଦେବା ଏହାର ଜ୍ୱଳନ୍ତ ପ୍ରମାଣ ଦିଏ ଯେ, ସେମାନେ ତାଙ୍କ ବ୍ୟକ୍ତିତ୍ୱ ଦ୍ୱାରା କେତେଦୂର ପ୍ରଭାବିତ ଥିଲେ ।

ମାର୍କସ ଡଡ୍ସ ବାଇବଲର ଜଣେ ଅଧ୍ୟାପକ ଏବଂ ଧର୍ମତତ୍ତ୍ୱବିତ୍ । ଇସ୍‌ଲାମର ଜଣେ ସମାଲୋଚକ ହୋଇଥିବା ସତ୍ତ୍ୱେ ସେ ମହାମାନ୍ୟ ମୁହମ୍ମଦଙ୍କ ନିଖୁଣ ଚରିତ୍ରର ପ୍ରମାଣ ଉପସ୍ଥାପନ କରି କୁହନ୍ତି—

> ''ତାଙ୍କ ସଚ୍ଚୋଟତାର ଜ୍ୱଳନ୍ତ ପ୍ରମାଣ ହେଉଛି ଏହି ଯେ, ତାଙ୍କର ପ୍ରଥମ ଓ ଅତି ବିଶ୍ୱସ୍ତ ଶିଷ୍ୟମାନେ ଥିଲେ ତାଙ୍କ ନିଜ ଘରଲୋକ ତଥା ତାଙ୍କ ପରିଚିତ ଲୋକ, ଯେଉଁମାନେ ସବୁ ଅବସ୍ଥାରେ ତାଙ୍କୁ ଟିକିନିଖି ଭାବରେ ପରୀକ୍ଷା କରିଥିଲେ—ତାଙ୍କ ପତ୍ନୀ, ସେବକ, ପୁତୁରା ଓ ଶ୍ୱଶୁର । ଏମାନେ ଚରିତ୍ରବାନ ଥିଲେ ଏବଂ ସମାଜ ମଧ୍ୟରେ ସେମାନଙ୍କର ଏକ ସ୍ଥାନ ଥିଲା ।''[18]

---

[18] "It is a striking proof of his sincerity that his earliest and most devoted disciples were those of his own household, and his familiars, who had known him in all circumstances and scanned him in all

ସର୍ବପ୍ରଥମେ ପତ୍ନୀ **ହଜରତ ଖଦିଜା** ତାଙ୍କୁ ଈଶ୍ୱରଦୂତ ବୋଲି ଗ୍ରହଣ କଲେ । ହଜରତ ଖଦିଜାଙ୍କ ବୟସ ସେତେବେଳେ ପଞ୍ଚାବନ ବର୍ଷ ଥିଲା ଏବଂ ସେ ସ୍ୱାମୀଙ୍କ ସହ ଦୀର୍ଘ ପନ୍ଦରବର୍ଷ ବିତାଇଥିଲେ । ତେଣୁ ତାଙ୍କର କୌଣସି ଦୁର୍ବଳତା ତାଙ୍କ ଦୃଷ୍ଟିପଥରୁ ଲୁଚି ଯାଇଥିବା ସମ୍ଭବ ନୁହେଁ । ବିନା ଦ୍ୱିଧାରେ ସେ ସ୍ୱାମୀଙ୍କ କଥା ମାନି ନିଜର ବିଶ୍ୱାସ ବଦଳାଇଦେଲେ ।

ଜଣେ ସ୍ତ୍ରୀ ନିଜ ସ୍ୱାମୀକୁ ଯଥେଷ୍ଟ ସମ୍ମାନ ଦେଇପାରେ, ଅଗାଧ ଭକ୍ତି କରିପାରେ, ତା'ର ଭଲମନ୍ଦ କାର୍ଯ୍ୟରେ ସହଯୋଗ ମଧ୍ୟ କରିପାରେ; କିନ୍ତୁ ସ୍ୱାମୀ କଥାରେ ସଙ୍ଗେ ସଙ୍ଗେ ନିଜର କୌଳିକ ଧର୍ମ ପରିବର୍ତ୍ତନ କରିବା ସହଜ ନୁହେଁ । ଯେହେତୁ ହଜରତ ଖଦିଜା ନିଜ ସ୍ୱାମୀଙ୍କୁ ନିରାଟ ସତ୍ୟବାଦୀ ଓ ଅତି ଚରିତ୍ରବାନ ବୋଲି ଜାଣିଥିଲେ, ତେଣୁ ସ୍ୱାମୀ ଯେ ମିଛ କହୁନାହାନ୍ତି, ଏ ବିଷୟରେ ସେ ଦୃଢ଼ନିଶ୍ଚିତ ଥିଲେ ।

ଅନ୍ୟ ଜଣେ ବ୍ୟକ୍ତି ହେଲେ ତାଙ୍କ ସେବକ ହଜରତ **ଜୈଦ୍ ବିନ୍ ହାରିସା** । ସେ ପନ୍ଦରବର୍ଷ ଧରି ମହାମାନ୍ୟ ମୁହମ୍ମଦଙ୍କ ଘରେ ସେବା କରି ଆସିଥିଲେ ଏବଂ ମାଲିକଙ୍କୁ ଭଲରୂପେ ଜାଣିବାର ସୁଯୋଗ ପାଇଥିଲେ । ଜଣେ ଭୃତ୍ୟ ବା କର୍ମଚାରୀ ମାଲିକ ପ୍ରତି ସମ୍ପୂର୍ଣ୍ଣ ବିଶ୍ୱସ୍ତ ହୋଇପାରେ, ଦିନରାତି ତା' ସେବା କରିପାରେ, ତାକୁ ଯଥେଷ୍ଟ ସମ୍ମାନ ଦେଇପାରେ, କିନ୍ତୁ ମାଲିକର ଏକ ନୂତନ ଧର୍ମକୁ ନିଜ ଧର୍ମ ରୂପେ ଗ୍ରହଣ କରିନେବା ବହୁତ କଷ୍ଟକର । ଅବଶ୍ୟ ସେ ନିଜ ମାଲିକଙ୍କଠାରେ ଦିବ୍ୟଗୁଣର ଝଲକ ପାଇଥିବେ ଏବଂ ତାଙ୍କ ଦ୍ୱାରା ମିଥ୍ୟା କହିବା ସମ୍ଭବ ନୁହେଁ ବୋଲି ଦୃଢ଼ ନିଶ୍ଚିତ ଥିବେ, ଯେଉଁଥିପାଇଁ ସେ ମହାମାନ୍ୟ ମୁହମ୍ମଦଙ୍କୁ ଈଶ୍ୱରଦୂତ ବୋଲି ସ୍ୱୀକାର କରିନେଲେ । ହଜରତ ଜୈଦ ନିଜ ମାଲିକଙ୍କ ଦ୍ୱାରା କିଭଳି ପ୍ରଭାବିତ ଥିଲେ, ତାହା ଗୋଟିଏ ଘଟଣାରୁ ସ୍ପଷ୍ଟ ଜଣାପଡ଼େ ।

ହଜରତ ଜୈଦଙ୍କୁ ସେତେବେଳେ ତିରିଶି ବର୍ଷ । ତାଙ୍କ ବାପା ଓ ଦାଦା ତାଙ୍କୁ ଘରକୁ ନେଇଯିବା ପାଇଁ ଆସି ପହଞ୍ଚିଲେ ଏବଂ ମହାମାନ୍ୟ ମୁହମ୍ମଦଙ୍କୁ କହିଲେ ଯେ, ଆମେ ଜୈଦ୍‌ଙ୍କୁ ନେଇଯିବା ପାଇଁ ଆସିଛୁ, ତାଙ୍କୁ ଛାଡ଼ି ଦିଅନ୍ତୁ ।

---

moods—his wife, his slave, his cousin, his father-in-law the latter themselves men of character and position." (Marcus Dods, Mohammed, Buddha and Christ, London, p.21)

ମହାମାନ୍ୟ ମୁହମ୍ମଦ ଉତ୍ତର ଦେଲେ ଯେ, ଠିକ୍ ଅଛି, ମୁଁ ତାଙ୍କୁ ଡାକିଦେଉଛି । ଯଦି ସେ ତୁମ ସାଙ୍ଗରେ ଯିବାପାଇଁ ଚାହେଁ ତ ଯାଇପାରେ । ତା'ପରେ ସେ ଜୈଦ୍‌ଙ୍କୁ ଡାକି ପଚାରିଲେ—ତୁମ ବାପା ତୁମକୁ ନେବାପାଇଁ ଆସିଛନ୍ତି, ଯଦି ତୁମେ ଯିବାକୁ ଚାହଁ, ତେବେ ଯାଇପାର । ଜୈଦ୍‌ଙ୍କ ବାପା ଓ ଦାଦା ମଧ୍ୟ ତାଙ୍କୁ ସାଙ୍ଗରେ ଘରକୁ ଯିବାପାଇଁ ଡାକିଲେ । କିନ୍ତୁ ନିଜ ପ୍ରଭୁଙ୍କ ବ୍ୟକ୍ତିତ୍ୱ ତାଙ୍କୁ ଏଭଳି ଭାବେ ପ୍ରଭାବିତ କରିଥିଲା ଯେ, ସେ ମହାମାନ୍ୟ ମୁହମ୍ମଦଙ୍କୁ ଛାଡ଼ି ନିଜ ବାପାଙ୍କ ସହ ଯିବାକୁ ସ୍ପଷ୍ଟ ମନା କରିଦେଲେ ।

ଆଉ ଜଣେ ବ୍ୟକ୍ତି ହେଲେ ମହାମାନ୍ୟ ମୁହମ୍ମଦଙ୍କ ପରମ ମିତ୍ର ହଜରତ **ଅବୁବକର ସିଦ୍ଦିକ** । ଦୀର୍ଘ କୋଡିଏ ବର୍ଷ କାଳ ଉଭୟଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତ୍ୱ ଥିଲା । ଏକାଠି ଖିଆ-ପିଆ, ବସା-ଉଠା ହେଉଥିଲା, ତେଣୁ ସେ ବନ୍ଧୁଙ୍କୁ ଅତି ନିକଟରୁ ଦେଖିଥିଲେ ଏବଂ ତାଙ୍କ ଚରିତ୍ର ସହ ଭଲରୂପେ ପରିଚିତ ଥିଲେ । ଯେତେବେଳେ ମହାମାନ୍ୟ ମୁହମ୍ମଦ ତାଙ୍କୁ କହିଲେ ଯେ, ଈଶ୍ୱର ତାଙ୍କପ୍ରତି ଦୈବବାଣୀ କରିଛନ୍ତି ଏବଂ ତାଙ୍କୁ ଧର୍ମଦୂତ ନିଯୁକ୍ତ କରିଛନ୍ତି, ସେ ତତ୍‌କ୍ଷଣାତ୍ ବିନା ଦ୍ୱିଧାରେ ଏହା ସତ୍ୟ ବୋଲି ମାନିନେଲେ ଏବଂ ନିଜ ଧର୍ମ ପରିବର୍ତ୍ତନ କରିଦେଲେ । ଜଣେ ବନ୍ଧୁ, ବନ୍ଧୁ ପାଇଁ ବହୁତ କିଛି କରିପାରେ ଏବଂ ଦରକାର ପଡ଼ିଲେ ତା' ପାଇଁ ଜୀବନ ମଧ୍ୟ ଦେଇପାରେ । କିନ୍ତୁ ବନ୍ଧୁ କଥାରେ ନିଜ କୌଳିକ ଧର୍ମ ତ୍ୟାଗ କରି ଏକ ନୂତନ ଧର୍ମ ଗ୍ରହଣ କରିନେବା ସହଜ କଥା ନୁହେଁ । କୋଡିଏ ବର୍ଷର ଅନ୍ତରଙ୍ଗ ସମ୍ପର୍କ ମଧ୍ୟରେ ସେ ନିଜ ବନ୍ଧୁଙ୍କୁ ଏଭଳି ସାଧୁ ଓ ସଚ୍ଚୋଟ ମନେ କରୁଥିଲେ ଯେ ଏଭଳି ବ୍ୟକ୍ତି ଈଶ୍ୱରଙ୍କ ପ୍ରତିନିଧି ହେବା କୌଣସି ବଡ଼ କଥା ନୁହେଁ ବୋଲି ତାଙ୍କର ଦୃଢ଼ବିଶ୍ୱାସ ଥିଲା ।

ନିଜର ପ୍ରଭାବଶାଳୀ ବ୍ୟକ୍ତିତ୍ୱ ଦ୍ୱାରା ମହାମାନ୍ୟ ମୁହମ୍ମଦ ମଣିଷର ମନକୁ ଜିଣି ପାରୁଥିଲେ ବୋଲି ବର୍ଣ୍ଣନା କରି ପ୍ରସିଦ୍ଧ ଐତିହାସିକ ଗୀବ୍ କୁହନ୍ତି—

> ''ଆମ ପାଇଁ ଏହା କହିବା ଅନାବଶ୍ୟକ ଯେ ମୁହମ୍ମଦ ତାଙ୍କ ଅନୁଗାମୀମାନଙ୍କ ହୃଦୟକୁ ନିଜ ବ୍ୟକ୍ତିତ୍ୱର ପ୍ରଭାବ ଦ୍ୱାରା ହିଁ ଜୟ କରିଥିଲେ । ଏହା ହୋଇ ନଥିଲେ ସେମାନେ ଈଶ୍ୱରଦୂତଙ୍କ କଥା ପ୍ରତି କୌଣସି ଗୁରୁତ୍ୱ ଦେଇ ନ ଥାଆନ୍ତେ ।''[19]

[19] "For us it goes without saying that the hold which Mohammed gained over the wills and affections of his Companions was due to

ମ୍ୟାଜିକ୍ ଭଳି ମହାମାନ୍ୟ ମୁହମ୍ମଦ ଅଗଣିତ ହୃଦୟ ଜୟ କରି ଚାଲିଲେ । ମାତ୍ର ୨୩ବର୍ଷ ମଧ୍ୟରେ ଲକ୍ଷାଧିକ ଲୋକଙ୍କର ବିଶ୍ୱାସ ଓ ଜୀବନଶୈଳୀରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଆଣିବା ସହ ଏକ ବିଶାଳ ସାମ୍ରାଜ୍ୟ ଗଢ଼ିଦେବା ଭଳି ଚମତ୍କାର କ'ଣ ଈଶ୍ୱରଙ୍କ ପ୍ରତ୍ୟକ୍ଷ ସହାୟତା ବିନା ସମ୍ଭବ ? ଐତିହାସିକ ବୋସୱାର୍ଥ ସ୍ମିଥ୍ ଏହା ଉପରେ ଆଲୋକପାତ କରି କୁହନ୍ତି—

> ''ଏକ ସ୍ଥାୟୀ ସେନା ବିନା, ନିରାପତ୍ତାରକ୍ଷୀ ବିନା, ରାଜପ୍ରାସାଦ ବିନା ଏବଂ ଏକ ନିର୍ଦ୍ଦିଷ୍ଟ ରାଜସ୍ୱ ବିନା ନ୍ୟାୟପୂର୍ଣ୍ଣ ଭାବରେ ଶାସନ କରିଛି ବୋଲି ଯଦି କାହାରି କହିବାର ଅଧିକାର ଥାଏ, ତେବେ ସେ ହେଉଛନ୍ତି ମୁହମ୍ମଦ, କାରଣ କୌଣସି ସାଧନ ବା ସହାୟତା ନଥାଇ ମଧ୍ୟ ତାଙ୍କର ସବୁକିଛି କରିପାରିବାର ସାମର୍ଥ୍ୟ ଥିଲା ।''[20]

ମହାମାନ୍ୟ ମୁହମ୍ମଦଙ୍କ ବ୍ୟକ୍ତିତ୍ୱର ମୂଲ୍ୟାଙ୍କନ କରି ଫରାସୀ ଐତିହାସିକ ଆଲ୍‌ଫୋନ୍‌ସ ଡି. ଲାମର୍‌ଟାଇନ୍ କୁହନ୍ତି—

> ''ଯଦି ଉଦ୍ଦେଶ୍ୟର ମହାନତା, ସାଧନର ଅଭାବ ଆଉ ବିସ୍ମୟକର ପରିଣାମ ମଣିଷର ପ୍ରତିଭାକୁ ମାପିବା ପାଇଁ ତିନିଗୋଟି ମାନଦଣ୍ଡ ହୁଏ, ତେବେ ଆଧୁନିକ ଇତିହାସରେ କୌଣସି ମହାନ ବ୍ୟକ୍ତିଙ୍କ ସହ ମୁହମ୍ମଦଙ୍କୁ ତୁଳନା କରିବାର ସାହସ କିଏ କରିପାରିବ ?''[21]

---

the influence of his personality. Without that they would have paid little heed to the claims of the Prophet." (H.A.R. Gibb, Mohammedanism, An Historical Survey, New York, 1962, pp.33-34)

(20) "Without a standing army, without a body guard, without a palace, without a fixed revenue, if ever any man had the right to say that he ruled by a right Divine, it was Mohammed; for he had all the power without its instruments and without its supports." (R. Bosworth Smith, Mohammed and Mohammedanism, London, p.235)

(21) "If greatness of purpose, smallness of means, and astounding results, are the three criteria of human genius, who could dare to

ଏଭଳି ମହାପୁରୁଷଙ୍କୁ ଈଶ୍ୱରଦୂତ କହିବା ବୋଧହୁଏ ଯଥାର୍ଥ ହେବ ବୋଲି ମତଦେଇ ଐତିହାସିକ ତଥା ନ୍ୟୁୟର୍କ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଜନ୍ ଉଇଲିୟମ୍ ଡ୍ରାପର୍ କୁହନ୍ତି—

> ''ଏକ ତୃତୀୟାଂଶ ମାନବ ଜଗତକୁ ସେମାନଙ୍କ ଦୈନନ୍ଦିନ ଜୀବନରେ ମାର୍ଗଦର୍ଶନ କରୁଥିବା ବହୁ ସାମ୍ରାଜ୍ୟର ଏହି ଧର୍ମାଧୀଶ ବୋଧହୁଏ 'ଈଶ୍ୱରଦୂତ' ପଦବୀର ଯଥାର୍ଥତା ପ୍ରତିପାଦନ କରୁଛନ୍ତି ।''[22]

## ସମ୍ରାଟ ହର୍କ୍ୟୁଲେସ୍ ଏବଂ ମହାମାନ୍ୟ ମୁହମ୍ମଦ

ରୋମର ସମ୍ରାଟ ହର୍କ୍ୟୁଲେସ (୫୭୫-୬୪୧)ଜଣେ ଖ୍ରୀଷ୍ଟଧର୍ମାବଲମ୍ବୀ ଏବଂ ବିଜ୍ଞ ବ୍ୟକ୍ତି ଥିଲେ । ତାଙ୍କ ଦ୍ୱାରା ମହାମାନ୍ୟ ମୁହମ୍ମଦଙ୍କ ସତ୍ୟତା ସମ୍ବନ୍ଧରେ ପରୀକ୍ଷା ଇସ୍‌ଲାମ ଇତିହାସର ଏକ ଉଲ୍ଲେଖନୀୟ ଘଟଣା ।

୬୨୮ ଖ୍ରୀଷ୍ଟାବ୍ଦରେ ମହାମାନ୍ୟ ମୁହମ୍ମଦ ହର୍କ୍ୟୁଲେସ୍‌ଙ୍କ ନିକଟକୁ ଏକ ପତ୍ର ଲେଖି ତାଙ୍କୁ ଇସଲାମ ଗ୍ରହଣ କରିବା ପାଇଁ ଆମନ୍ତ୍ରିତ କରିଥିଲେ ।[23] ତେଣୁ ମହାମାନ୍ୟ ମୁହମ୍ମଦ ପ୍ରକୃତରେ ଈଶ୍ୱରଦୂତ କି ନୁହେଁ, ଏହା ଭଲରୂପେ ଅନୁସନ୍ଧାନ କରିବା ପାଇଁ ସମ୍ରାଟ ସ୍ଥିର କଲେ ।

ଅବୁ ସୁଫିୟାନ ବିନ୍ ହରବ ନାମକ ମକ୍କାର ଜଣେ ବ୍ୟକ୍ତି ଯିଏ କି ସେତେବେଳେ ମହାମାନ୍ୟ ମୁହମ୍ମଦଙ୍କର ଜଣେ ବଡ଼ ଶତ୍ରୁ ଥିଲେ, ସେହି ସମୟରେ ବ୍ୟବସାୟ ଉଦ୍ଦେଶ୍ୟରେ ପାଲେଷ୍ଟାଇନ୍ ଯାଇଥିଲେ ।

ମହାମାନ୍ୟ ମୁହମ୍ମଦଙ୍କ ପତ୍ର ପାଇବାପରେ ହର୍କ୍ୟୁଲେସ ଅବୁ ସୁଫିୟାନ ଏବଂ ତାଙ୍କ ସାଥିମାନଙ୍କୁ ନିଜ ଦରବାରକୁ ଡକାଇଲେ । ତେଣୁ ସେମାନେ

---

compare any great man in modern history with Muhammad…?" (Alphonse De Lamartine, Histoire De La Turquie, Paris)

(22) "To be the religious head of many empires, to guide the daily life of one-third of the human race, may perhaps justify the title of a Messenger of God". (John William Draper, History of the Intellectual Development of Europe, London, p.330)

(23) Dictionary of Islam, J. P. Hughes, London, 1885, P.-173.

ଜେରୁଜେଲମରେ ହର୍କ୍ୟୁଲେସଙ୍କୁ ସାକ୍ଷାତ କରିବା ପାଇଁ ପହଞ୍ଚିଲେ । ବରିଷ୍ଠ ପଦାଧିକାରୀମାନେ ଦରବାରରେ ଉପସ୍ଥିତ ଥାଆନ୍ତି । ହର୍କ୍ୟୁଲେସ ନିଜର ଅନୁବାଦକ ମାଧ୍ୟମରେ ଅବୁ ସୁଫିୟାନ ଏବଂ ତାଙ୍କ ସାଥିମାନଙ୍କୁ ପଚାରିଲେ—

‘‘ତୁମମାନଙ୍କ ମଧ୍ୟରେ ଈଶ୍ୱରଦୂତ ବୋଲି ଦାବି କରୁଥିବା ବ୍ୟକ୍ତିଙ୍କର ଅତି ନିକଟ ସମ୍ପର୍କୀୟ କେହି ଅଛନ୍ତି ?’’

ଅବୁ ସୁଫିୟାନ ଉତ୍ତର ଦେଲେ—‘‘ମୁଁ ତାଙ୍କର ନିକଟ ସମ୍ପର୍କୀୟ ।’’ ତେଣୁ ସମ୍ରାଟ ତାଙ୍କୁ ନିଜ ପାଖକୁ ଡାକିଲେ ଏବଂ ତାଙ୍କ ସାଥିମାନଙ୍କୁ ପଛରେ ଛିଡ଼ା ହେବାପାଇଁ ଆଦେଶ ଦେଲେ । ସେ ନିଜ ଅନୁବାଦକକୁ କହିଲେ ଯେ ସେ ଅବୁ ସୁଫିୟାନଙ୍କୁ କେତୋଟି ପ୍ରଶ୍ନ ପଚାରିବା ପାଇଁ ଚାହାନ୍ତି ଏବଂ ଯଦି ସେ କୌଣସି ସ୍ଥାନରେ ମିଛ କହନ୍ତି ତେବେ ତାଙ୍କ ସାଥିମାନେ ସଂଶୋଧନ କରିବେ । ଅବୁ ସୁଫିୟାନ କୁହନ୍ତି ଯେ, ‘‘ଈଶ୍ୱରଙ୍କ ରାଣ ! ଯଦି ସାଙ୍ଗମାନେ ମୋତେ ମିଛୁଆ ଭାବିବାର ଡର ନ ଥାଆନ୍ତା, ତେବେ ମୁଁ ମୁହମ୍ମଦଙ୍କ ବିଷୟରେ ଆଦୌ ସତକଥା କହିନଥାଆନ୍ତି ।’’ ଅବୁ ସୁଫିୟାନଙ୍କର ସେ ସମୟରେ ମହାମାନ୍ୟ ମୁହମ୍ମଦଙ୍କ ସହ ଶତ୍ରୁତା ଥିଲା । ସେ କୁହନ୍ତି—

ପ୍ରଥମ ପ୍ରଶ୍ନ ମୁହମ୍ମଦଙ୍କ ବିଷୟରେ ସେ ମୋତେ ପଚାରିଲେ—‘‘ସେହି ବ୍ୟକ୍ତି ଜଣଙ୍କର ବଂଶ ପରମ୍ପରା କ’ଣ ?’’

ମୁଁ ଉତ୍ତର ଦେଲି—‘‘ସେ ଆମ ମଧ୍ୟରେ ଜଣେ ଉଚ୍ଚବଂଶଜ ।’’

ହର୍କ୍ୟୁଲେସ ପୁଣି ପଚାରିଲେ—‘‘ତୁମମାନଙ୍କ ମଧ୍ୟରୁ କେହି କେବେ ତାଙ୍କ ପୂର୍ବରୁ ଏଭଳି ଦାବି କରିଥିଲା ?’’

ମୁଁ ଉତ୍ତର ଦେଲି—‘‘ନା ।’’

ସେ ପ୍ରଶ୍ନ କଲେ—‘‘ତାଙ୍କ ପୂର୍ବଜଙ୍କ ମଧ୍ୟରେ କେହି ରାଜା ଥିଲେ କି ?’’

ମୁଁ ଉତ୍ତର ଦେଲି—‘‘ନା ।’’

ହର୍କ୍ୟୁଲେସ ପଚାରିଲେ—‘‘ଆଚ୍ଛା ଧନଶାଳୀ ଓ ସମ୍ଭ୍ରାନ୍ତ ଲୋକେ ତାଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରନ୍ତି ବା ଗରିବ ଶ୍ରେଣୀର ଲୋକେ ?’’

ମୁଁ ଉତ୍ତର ଦେଲି—‘‘ଗରିବମାନେ ।’’

ସେ ପଚାରିଲେ—‘‘ତାଙ୍କ ଅନୁଗାମୀଙ୍କ ସଂଖ୍ୟା ବଢୁଛି ବା କମୁଛି ?’’

ମୁଁ ଉତ୍ତର ଦେଲି—‘‘ଦିନକୁ ଦିନ ବଢୁଛି ।’’

ତା’ପରେ ସେ ପଚାରିଲେ—‘‘ତାଙ୍କ ଧର୍ମ ଗ୍ରହଣ କରିଥିବା ଲୋକମାନଙ୍କ ମଧ୍ୟରୁ ପରେ କେହି ଅସନ୍ତୁଷ୍ଟ ହୋଇ ଧର୍ମ ପରିତ୍ୟାଗ କରିଛନ୍ତି କି ?’’

ମୁଁ କହିଲି—‘‘ନା ।’’

ହର୍‌କ୍ୟୁଲେସ ପ୍ରଶ୍ନ କଲେ—‘‘ଏମିତି ଦାବି କରିବା ପୂର୍ବରୁ ସେ କେବେ ମିଛ କହିଛନ୍ତି କି ?’’

—‘‘ନା’’ ।

—‘‘ସେ କଥାଦେଇ କଥା ଭଙ୍ଗ କରନ୍ତି କି ?’’

—‘‘ନା, ବର୍ତ୍ତମାନ ତାଙ୍କ ସହ ଆମର ସନ୍ଧି ହୋଇଛି । ମୁଁ ଜାଣେନା ଯେ ସେ ଆଗକୁ କ’ଣ କରିବେ ।’’

ଅବୁ ସୁଫିୟାନ କହନ୍ତି, ‘‘ମୁଁ ତାଙ୍କ ବିରୁଦ୍ଧରେ ଏହାଠୁ ଅଧିକ କିଛି କହିବାର ସୁଯୋଗ ପାଇଲି ନାହିଁ ।’’

ହର୍‌କ୍ୟୁଲେସ ପଚାରିଲେ—‘‘ତୁମେମାନେ ତାଙ୍କ ସହ କେବେ ଯୁଦ୍ଧ କରିଛ କି ?’’

ମୁଁ ଉତ୍ତର ଦେଲି—‘‘ହଁ’’ ।

—‘‘ଯୁଦ୍ଧର ଫଳାଫଳ କ’ଣ ହୁଏ ।’’

ମୁଁ କହିଲି—‘‘କେତେବେଳେ ସେ ବିଜୟୀ ହୁଅନ୍ତି ଆଉ କେତେବେଳେ ଆମେ ଜିତିଯାଉ ।’’

ହର୍‌କ୍ୟୁଲେସ ପଚାରିଲେ—‘‘ସେ ତୁମମାନଙ୍କୁ କିଭଳି କର୍ମ କରିବାର ଆଦେଶ ଦିଅନ୍ତି ?’’

‘‘ସେ ଆମକୁ କେବଳ ଅଲ୍ଲାହଙ୍କର ଉପାସନା କରିବାକୁ କୁହନ୍ତି ଏବଂ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା ନ କରିବାକୁ କୁହନ୍ତି, ଆମ ପୂର୍ବଜଙ୍କ ପ୍ରଥାଗୁଡ଼ିକୁ ଛାଡ଼ିଦେବା ପାଇଁ କୁହନ୍ତି । ସେ ପ୍ରାର୍ଥନା କରିବା, ସର୍ବଦା ସତ୍ୟ କହିବା, ସତ୍ୟନିଷ୍ଠ ହେବା ଏବଂ ଆତ୍ମୀୟମାନଙ୍କ ସହ ସୁସମ୍ପର୍କ ରକ୍ଷା କରିବାର ଆଦେଶ ଦିଅନ୍ତି ।’’

ହର୍‌କ୍ୟୁଲେସ ନିଜ ଅନୁବାଦକ ଜରିଆରେ କହିଲେ—

''ମୁଁ ତୁମକୁ ସେହି ବ୍ୟକ୍ତିଙ୍କ ବଂଶ ବିଷୟରେ ପଚାରିଥିଲି ଏବଂ ତୁମେ ଉତ୍ତର ଦେଲ ଯେ, ସେ ଜଣେ ଉଚ୍ଚବଂଶୀୟ । ପ୍ରକୃତରେ ସବୁ ଈଶ୍ୱରଦୂତମାନେ ଉଚ୍ଚବଂଶରେ ଜନ୍ମଗ୍ରହଣ କରନ୍ତି । ମୁଁ ପଚାରିଥିଲି ଯେ ପୂର୍ବରୁ କେହି ତୁମମାନଙ୍କ ମଧ୍ୟରେ ଏଭଳି ଦାବୀ କରିଥିଲା କି ? ତୁମେ ଉତ୍ତର ଦେଲ—'ନା' । ଯଦି ତୁମେ 'ହଁ' କହିଥାଆନ୍ତ ମୁଁ ଭାବିଥାନ୍ତି ଯେ ସେ ତାଙ୍କ ପୂର୍ବଜଙ୍କ ଅନୁକରଣ କରୁଛନ୍ତି । ପୁଣି ମୁଁ ପଚାରିଲି ଯେ, ତାଙ୍କ ପୂର୍ବଜଙ୍କ ମଧ୍ୟରେ କେହି ରାଜା ଥିଲେ କି ନାହିଁ । ତୁମେ ନାହିଁ କଲ । ଯଦି 'ହଁ' କହିଥାଆନ୍ତ ମୁଁ ଭାବିଥାନ୍ତି ଯେ, ଏହି ଲୋକ ତା' ପୂର୍ବଜଙ୍କ ରାଜ୍ୟ ଅଧିକାର କରିବା ପାଇଁ ଚାହୁଁଛି । ପୁଣି, ଏମିତି ଦାବି କରିବା ପୂର୍ବରୁ ସେ କେବେ ମିଛ କହିଛନ୍ତି ନା ନାହିଁ ବୋଲି ମୁଁ ପଚାରିଲି । ତୁମର ଉତ୍ତର ନାସ୍ତିବାଚକ ଥିଲା । ଏଣୁ ମୁଁ ଆଶ୍ଚର୍ଯ୍ୟ ହେଲି ଯେ ଜଣେ ଲୋକ ଯିଏ ଅନ୍ୟକୌଣସି ବିଷୟରେ ମିଛ କହିନାହିଁ, ଈଶ୍ୱରଙ୍କ ବିଷୟରେ କିପରି ମିଛ କହିପାରିବ ? ତା'ପରେ ମୁଁ ପଚାରିଲି ଯେ, ଧନୀ କିମ୍ବା ଗରିବମାନେ ତାଙ୍କର ଅନୁସରଣ କରୁଛନ୍ତି । ତୁମେ ଉତ୍ତର ଦେଲ ଯେ, ଗରିବମାନେ । ପ୍ରକୃତରେ ଗରିବଶ୍ରେଣୀର ଲୋକେ ହିଁ ଈଶ୍ୱରଦୂତମାନଙ୍କୁ (ପ୍ରଥମେ) ଅନୁକରଣ କରନ୍ତି । ତା'ପରେ ମୁଁ ପଚାରିଲି ଯେ, ତାଙ୍କ ଅନୁଗାମୀମାନଙ୍କ ସଂଖ୍ୟା ବଢୁଛି ବା କମୁଛି ? ତୁମେ କହିଲ 'ବଢୁଛି' ଏବଂ ପ୍ରକୃତରେ ଏହାହିଁ ସତ୍‌ମାର୍ଗର ବୈଶିଷ୍ଟ୍ୟ, ଯେପର୍ଯ୍ୟନ୍ତ ଏହା ସମ୍ପୂର୍ଣ୍ଣ ନ ହୋଇଛି । ପୁଣି ମୁଁ ପଚାରିଲି ଯେ, କେହି ତାଙ୍କ ପ୍ରଚାରିତ ଧର୍ମ ଗ୍ରହଣ କରିବାପରେ ଅସନ୍ତୁଷ୍ଟ ହୋଇ ଧର୍ମତ୍ୟାଗ କରୁଛି କି ? ତୁମେ ନାହିଁ କଲ । ସତରେ, ଏହା ସତ୍‌ଧର୍ମର ସଙ୍କେତ । ତା' ଜ୍ୟୋତି ଅନ୍ତର ମଧ୍ୟରେ ପ୍ରବେଶ କରି ଲୀନ ହୋଇଯାଏ । ମୁଁ ପଚାରିଥିଲି ଯେ ସେ ବିଶ୍ୱାସ ଭଙ୍ଗ କରନ୍ତି କି ନାହିଁ ? ତୁମେ ନାହିଁ କଲ ଏବଂ ଈଶ୍ୱରଦୂତମାନେ କଦାପି ବିଶ୍ୱାସଘାତକତା କରନ୍ତି ନାହିଁ । ତା'ପରେ ମୁଁ ପ୍ରଶ୍ନ କରିଥିଲି ଯେ, ସେ କିଭଳି କର୍ମ କରିବା ପାଇଁ କୁହନ୍ତି ଏବଂ

ତୁମେ କହିଲ ସେ ଏକମାତ୍ର ଅଲ୍ଲାହଙ୍କର ଉପାସନା କରିବା ଏବଂ ତାଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା ନ କରିବା, ବିଗ୍ରହ ପୂଜା ନ କରିବା, ପ୍ରାର୍ଥନା କରିବା, ସତ କହିବା, ଧର୍ମନିଷ୍ଠ ହେବା ପାଇଁ କୁହନ୍ତି । ଯଦି ତୁମେ କହିଥିବା କଥା ସତ୍ୟ ହୋଇଥାଏ, ତେବେ ଖୁବ୍ ଶୀଘ୍ର ସେ ଏହି ସ୍ଥାନର ସ୍ୱାମୀ ହେବେ ଯେଉଁଠାରେ ମୋ ପାଦ ରହିଛି । ମୁଁ ଜାଣିଥିଲି ଯେ ସେ (ଈଶ୍ୱରଦୂତ) ଆସିବେ; କିନ୍ତୁ ଏହା ଜାଣିନଥିଲି ଯେ ସେ ତୁମମାନଙ୍କ ମଧ୍ୟରେ ପ୍ରକଟ ହେବେ । ଯଦି ମୁଁ ତାଙ୍କ ନିକଟରେ ପହଞ୍ଚିପାରନ୍ତି, ତେବେ ନିଶ୍ଚୟ ତାଙ୍କୁ ସାକ୍ଷାତ କରନ୍ତି ଏବଂ ତାଙ୍କର ପାଦ ପ୍ରକ୍ଷାଳନ କରନ୍ତି ।''

**(ସହୀ ବୁଖାରୀ, ୧ମ ଖଣ୍ଡ, ହଦିସ-୬)**

ହରକ୍ୟୁଲେସଙ୍କ ବିଷୟରେ ୱିକିପିଡ଼ିଆ ଲେଖିଛି ଯେ, ସେ ଇସ୍‌ଲାମ ପ୍ରତି ବିଶ୍ୱାସ କରୁଥିଲେ ଏବଂ ମହାମାନ୍ୟ ମୁହମ୍ମଦ ଯେ ପ୍ରକୃତରେ ଜଣେ ଈଶ୍ୱରଦୂତ ଏହା ମଧ୍ୟ ବିଶ୍ୱାସ କରୁଥିଲେ ।[24]

ସମ୍ରାଟ ହରକ୍ୟୁଲେସଙ୍କ ନିକଟକୁ ମହାମାନ୍ୟ ମୁହମ୍ମଦ ଲେଖିଥିଲେ : ''ଅନନ୍ତ ଦୟାବାନ ଅତୀବ କରୁଣାଶୀଳ ଅଲ୍ଲାହଙ୍କ ନାମରେ ରୋମର ସମ୍ରାଟ ହରକ୍ୟୁଲେସଙ୍କ ନିକଟକୁ ଅଲ୍ଲାହଙ୍କ ସେବକ ଓ ବାର୍ତ୍ତାବହ ମୁହମ୍ମଦଙ୍କ ତରଫରୁ । ଯେଉଁମାନେ ସତ୍‌ମାର୍ଗ ଅନୁସରଣ କରନ୍ତି, ସେମାନଙ୍କର ମଙ୍ଗଳ ହେଉ । ମୁଁ ଆପଣଙ୍କୁ ଇସ୍‌ଲାମ ପ୍ରତି ଆମନ୍ତ୍ରଣ କରୁଛି । ଇସ୍‌ଲାମ ଗ୍ରହଣ କରିନିଅନ୍ତୁ, ଶାନ୍ତିଲାଭ କରିବେ । ଅଲ୍ଲାହ ଦ୍ୱିଗୁଣ ପ୍ରତିଦାନ ଦେବେ । ଯଦି ପ୍ରତ୍ୟାଖ୍ୟାନ କରନ୍ତି, ତେବେ ଆପଣଙ୍କ ପ୍ରଜାଙ୍କର ପାପଭାର ମଧ୍ୟ ଆପଣ ହିଁ ବହନ କରିବେ । ହେ ଗ୍ରନ୍ଥଧାରୀମାନେ ! ଆସ ଏପରି ଏକ (ନ୍ୟାୟୋଚିତ) କଥା ପ୍ରତି ଯାହା ଆମ ଓ ତୁମ ମଧ୍ୟରେ ସମାନ ଭାବରେ ଗୃହୀତ (ଏବଂ ତାହା ହେଉଛି) ଏହି ଯେ, ଆମେ ଅଲ୍ଲାହଙ୍କ ବ୍ୟତୀତ ଆଉ କାହାରି ଉପାସନା କରିବା ନାହିଁ ଏବଂ

[24] "He was a true believer of Islam and viewed Mohammad as the true prophet" (Heraclius – Wikipedia, the free Encyclopedia)

ଅନ୍ୟ କାହାରିକୁ ତାଙ୍କ ସହ ସମକକ୍ଷ କରିବା ନାହିଁ ଏବଂ ଆମେ ନିଜ ନିଜ ମଧ୍ୟରୁ କେହି କାହାରିକୁ ଅଲ୍ଲାହଙ୍କ ବ୍ୟତୀତ ନିଜର ପ୍ରଭୁ (ସ୍ୱାମୀ) କରିବା ନାହିଁ । ଯଦି ସେମାନେ ନ ମାନନ୍ତି, ତେବେ ପରିଷ୍କାର କହିଦିଅ ଯେ ତୁମେମାନେ ସାକ୍ଷୀ ରୁହ ଯେ ଆମେମାନେ ଈଶ୍ୱରଙ୍କର ଆଜ୍ଞାଧୀନ ।''

**(ସହୀ ବୁଖାରୀ ୧ଖଣ୍ଡ, ହଦିସ୍ ସଂ. ୬)**



(ହରକ୍ୟୁଲେସ୍‌ଙ୍କ ନିକଟକୁ ମହାମାନ୍ୟ ମୁହମ୍ମଦଙ୍କ ପତ୍ର)

ଅନେକ ଲୋକ ମହାମାନ୍ୟ ମୁହମ୍ମଦଙ୍କୁ ଈଶ୍ୱରଦୂତ ବୋଲି ଅନ୍ତର ସହ ବିଶ୍ୱାସ କରୁଥିଲେ । ତାଙ୍କ ପ୍ରତି ସେମାନଙ୍କର କୌଣସି ପ୍ରକାର ସନ୍ଦେହ ନଥିଲା । କିନ୍ତୁ ନିଜ ପୂର୍ବଜମାନଙ୍କର କୌଳିକ ଧର୍ମ ଛାଡ଼ିଲେ କୁଳମର୍ଯ୍ୟାଦା ହାନି ହେବ ବା ସେମାନଙ୍କ ସାମାଜିକ ପ୍ରତିଷ୍ଠା କ୍ଷୁର୍ଣ୍ଣ ହେବ ବୋଲି ସେମାନେ ଇସ୍‌ଲାମ ଗ୍ରହଣ କରିନଥିଲେ । ମହାମାନ୍ୟ ମୁହମ୍ମଦଙ୍କ ନିଜ କକା ଅବୁ ତାଲିବ, ଯିଏ ତାଙ୍କର ଲାଳନ ପାଳନ କଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କୁ ସବୁ ପ୍ରକାର ସୁରକ୍ଷା ଦେଲେ, ପୁତୁରା ଯେ ସତ କହୁଛନ୍ତି ଏହା ସେ ବିଶ୍ୱାସ କରୁଥିଲେ, କିନ୍ତୁ ସମାଜ ନିକଟରେ ନିଜର ପ୍ରତିଷ୍ଠା କ୍ଷୁର୍ଣ୍ଣ ହୋଇଯିବ ବୋଲି ସେ ଇସ୍‌ଲାମ ଧର୍ମ ଗ୍ରହଣ କଲେନାହିଁ ।



## ଚତୁର୍ଥ ଅଧ୍ୟାୟ

# ମହାମାନ୍ୟ ମୁହମ୍ମଦଙ୍କର ଚମତ୍କାରିତା

କେବଳ ଉତ୍ତମ ଚରିତ୍ର ବା ବ୍ୟକ୍ତିତ୍ୱ ଦ୍ୱାରା ନୁହେଁ, ବରଂ ଈଶ୍ୱରଙ୍କ ମହାମାନ୍ୟ ପ୍ରତିନିଧିଗଣ ସମାଜର ବିଶ୍ୱାସଭାଜନ ହେବାପାଇଁ ଏମିତି କେତେକ ଅଲୌକିକ କାର୍ଯ୍ୟ କରିଥାନ୍ତି, ଯାହା ଜଣେ ମନୁଷ୍ୟ ପକ୍ଷରେ କରିବା ସମ୍ଭବ ନୁହେଁ । ଏଗୁଡ଼ିକୁ ଚମତ୍କାର ବା ନିଦର୍ଶନ କୁହାଯାଏ । ମହାମାନ୍ୟ ଈଶ୍ୱରଦୂତଗଣ ଈଶ୍ୱରଙ୍କ ପ୍ରତିନିଧିତ୍ୱର ପ୍ରମାଣ ସ୍ୱରୂପ ଏହି ଚମତ୍କାର ପ୍ରଦର୍ଶନ କରିଥାଆନ୍ତି, ଯାହାଫଳରେ ସାଧାରଣ ଲୋକଙ୍କ ପକ୍ଷରେ ସେମାନଙ୍କୁ ଈଶ୍ୱରଦୂତ ବୋଲି ଗ୍ରହଣ କରିବା ସହଜ ହୁଏ । ଜନ୍ମାନ୍ଧକୁ ଚକ୍ଷୁଦାନ କରିବା, ମୃତ ବ୍ୟକ୍ତିକୁ ଜୀବଦାନ କରିବା, ସ୍ପର୍ଶ ଦ୍ୱାରା ରୋଗ ଦୂର କରିବା ଆଦି କାର୍ଯ୍ୟଗୁଡ଼ିକୁ ଚମତ୍କାରିତା କୁହାଯାଏ । ଏମିତି ଅନେକ ଚମତ୍କାରିତାର ବର୍ଣ୍ଣନା ବିଭିନ୍ନ ଧର୍ମଶାସ୍ତ୍ରଗୁଡ଼ିକରେ ମଧ୍ୟ ଦେଖିବାକୁ ମିଳେ । ମହାମାନ୍ୟ ମୁହମ୍ମଦ ମଧ୍ୟ ଅନେକ ଅଲୌକିକ କାର୍ଯ୍ୟ କରି ନିଜ ଦାବି ସପକ୍ଷରେ ପ୍ରମାଣ ଦେଇଛନ୍ତି । ଖାଦ୍ୟ ବା ପାନୀୟର ଅଭାବ ହେଲେ ସେ ଅନେକ ଥର ପ୍ରାର୍ଥନା ବା ସ୍ପର୍ଶ ଦ୍ୱାରା ଏହି ଅଭାବ ପୂରଣ କରିଦିଅନ୍ତି, ଯାହାଦ୍ୱାରା ଶହ ଶହ ଲୋକଙ୍କର ଆବଶ୍ୟକତା ପୂରଣ ହୋଇଯାଏ ।''[1]

ମଦିନାରେ ଥରେ ମରୁଡ଼ି ପଡ଼ିଥିବା ସମୟରେ ପ୍ରାର୍ଥନା ଦ୍ୱାରା ମହାମାନ୍ୟ ମୁହମ୍ମଦ ସଙ୍ଗେ ସଙ୍ଗେ ବର୍ଷା କରାଇ ଦେଇଥିଲେ ।[2]

ମକ୍କାବାସୀ କୌଣସି ଏକ ଚମତ୍କାର ଦେଖାଇବାକୁ କହିବାରୁ ମହାମାନ୍ୟ ମୁହମ୍ମଦ ଆଙ୍ଗୁଳି ନିର୍ଦ୍ଦେଶ ଦ୍ୱାରା ଚନ୍ଦ୍ରକୁ ଦୁଇଭାଗରେ ବିଭକ୍ତ କରି ଦେଖାଇ ଦେଇଥିଲେ ।[3]

---

[1] ସହୀ ବୁଖାରୀ ୪ର୍ଥ ଖଣ୍ଡ, ହଦିସ ୭୭୧, ୭୭୨, ୭୭୩, ୭୭୪, ୭୭୫, ୭୭୭, ୭୭୮, ୭୭୯, ୭୮୧

[2] ସହୀ ବୁଖାରୀ ୪ର୍ଥ ଖଣ୍ଡ, ହଦିସ ୭୮୨

[3] ସହୀ ବୁଖାରୀ ୪ର୍ଥ ଖଣ୍ଡ, ହଦିସ ୮୩୧, ୮୩୨

ଏହିଭଳି ଅନେକ ଚମତ୍କାରିତା ସେ ପ୍ରଦର୍ଶନ କରିଥିବାର ଇତିହାସରେ ଉଲ୍ଲେଖ ରହିଛି । କିନ୍ତୁ ତାଙ୍କର ସର୍ବଶ୍ରେଷ୍ଠ ଚମତ୍କାର ହେଉଛି ପବିତ୍ର କୁର୍‌ଆନ ।

## କୁର୍‌ଆନ କ'ଣ ?

କୁର୍‌ଆନ ଅର୍ଥ 'ପାଠ୍ୟ' । ମହାମାନ୍ୟ ମୁହମ୍ମଦଙ୍କ ମିସନ୍‌ରେ ମାର୍ଗଦର୍ଶନ କରି ଏବଂ ମାନବଜଗତ ପାଇଁ ବିଧିବିଧାନ ଧାରଣ କରି ଦୀର୍ଘ ତେଇଶି ବର୍ଷ ମଧ୍ୟରେ ତାଙ୍କ ପ୍ରତି ଯେଉଁ ଦୈବବାଣୀ ପ୍ରକଟ ହେଲା ତାର ସଂକଳନକୁ 'କୁର୍‌ଆନ' କୁହାଯାଏ । ଏହା ୬୧୦ ଖ୍ରୀଷ୍ଟାବ୍ଦରେ ଆରବୀ ଭାଷାରେ ପ୍ରକଟ ହେଲା । ଏଥିରେ ୧୧୪ଟି ଅଧ୍ୟାୟ ଅଛି ।

## କୁର୍‌ଆନର ଚମତ୍କାର

ମକ୍କାବାସୀ ମହାମାନ୍ୟ ମୁହମ୍ମଦଙ୍କୁ କିଛି ଅଲୌକିକ କାର୍ଯ୍ୟ କରି ଦେଖାଇବା ପାଇଁ କହୁଥିଲେ । ସେମାନେ କହୁଥିଲେ—ଆମେ ଆପଣଙ୍କ କଥାରେ ବିଶ୍ୱାସ କରିବୁ ନାହିଁ ଯେପର୍ଯ୍ୟନ୍ତ ଆପଣ ଏହି ମରୁଭୂମିରେ ଝରଣାଟିଏ ସୃଷ୍ଟି ନ କରିଛନ୍ତି ବା ଆକାଶରେ ଚଢ଼ି ସ୍ୱର୍ଗରୁ ଆମ ପାଇଁ ଗ୍ରନ୍ଥଟିଏ ନ ଆଣିଛନ୍ତି ବା ଈଶ୍ୱର ଏବଂ ସ୍ୱର୍ଗଦୂତମାନଙ୍କୁ ଆମ ସମ୍ମୁଖରେ ଉପସ୍ଥାପନ ନ କରିଛନ୍ତି, ତେବେ ଯାଇ ଆମେ ବିଶ୍ୱାସ କରିବୁ ଯେ ଆପଣ ଈଶ୍ୱରଦୂତ । କୁର୍‌ଆନ ଏ ସମ୍ପର୍କରେ କୁହେ—

> ''ଏବଂ ସେମାନେ କହୁଛନ୍ତି ଯେ କାହିଁକି ତାଙ୍କ ଈଶ୍ୱରଙ୍କ ନିକଟରୁ ତାଙ୍କ ପ୍ରତି ନିଦର୍ଶନ (ଚମତ୍କାର) ଆସୁନାହିଁ ?''
>
> **(କୁର୍‌ଆନ, ୨୯ : ୫୦)**

ସେମାନଙ୍କ ଏହି ପ୍ରଶ୍ନର ଉତ୍ତର କୁର୍‌ଆନ ପରବର୍ତ୍ତୀ ଶ୍ଳୋକରେ ଦେଇ କହୁଛି—

> ''କ'ଣ ସେମାନଙ୍କ ପାଇଁ ଏହା ଯଥେଷ୍ଟ ନୁହେଁ ଯେ, ଆମ୍ଭେ ତୁମପ୍ରତି ଏକ ଗ୍ରନ୍ଥ (କୁର୍‌ଆନ) ଅବତୀର୍ଣ୍ଣ କରିଛୁ, ଯାହାକୁ ପାଠ କରି ସେମାନଙ୍କୁ ଶୁଣାଇ ଦିଆଯାଉଛି ?''
>
> **(କୁର୍‌ଆନ, ୨୯ : ୫୧)**

ଅର୍ଥାତ୍ ସେମାନେ ଯଦି କୌଣସି ଚମତ୍କାରିତା ମାଗୁଛନ୍ତି, ତେବେ କୁର୍‌ଆନ ପ୍ରତି ଧ୍ୟାନ ଦିଅନ୍ତୁ । ଏହା ଏକ ବିରାଟ ଚମତ୍କାର । ସେମାନେ

ତ ନିଜ ସାଥୀ ମୁହମ୍ମଦଙ୍କୁ ଭଲରୂପେ ଜାଣନ୍ତି, ଯିଏ କିଛି ଲେଖିପଢ଼ି ପାରନ୍ତି ନାହିଁ । ତାଙ୍କ ମୁହଁରୁ କୁର୍‌ଆନ ନାମକ ଯେଉଁ ବାଣୀ ନିଃସୃତ ହେଉଛି, ତାହା କ'ଣ କମ୍ ଚମତ୍କାର ?

ଆସନ୍ତୁ, କୁର୍‌ଆନ ସହ ପରିଚିତ ହେବା, ଏହାର ବୈଶିଷ୍ଟ୍ୟଗୁଡ଼ିକ ସମ୍ପର୍କରେ ଜାଣିବା ଏବଂ ଏହା ମଧ୍ୟ ଜାଣିବା ଯେ ଏହା କିଭଳି ଚମତ୍କାର ?

## ଅନୁପମ ଶୈଳୀ

କୁର୍‌ଆନ ଯଦିଓ ଆରବୀ ଭାଷାରେ ପ୍ରକଟ ହେଲା, କିନ୍ତୁ ଏହାର ଭାଷା ପ୍ରଚଳିତ ଆରବୀ ସାହିତ୍ୟର ଭାଷାଠାରୁ ଢେର ଉନ୍ନତ । ଏହା ଗଦ୍ୟ ଓ ପଦ୍ୟର ଏକ ଅପୂର୍ବ ସଂଯୋଜନା । ଭାଷାର ଲାଳିତ୍ୟ, ଶବ୍ଦର ମାଧୁର୍ଯ୍ୟ, ତାଳ ଓ ଲୟର ଅପୂର୍ବ ସମନ୍ୱୟ ସହ ଅଭୂତପୂର୍ବ ସାହିତ୍ୟିକ ଶୈଳୀରେ ଏକ ଜୀବନସଂହିତା ଉପସ୍ଥାପନ କରି କୁର୍‌ଆନ ଆରବୀ ସାହିତ୍ୟ ଜଗତକୁ ଆଶ୍ଚର୍ଯ୍ୟଚକିତ କରିଦେଇଥିଲା । ଲଣ୍ଡନ୍‌ରୁ ପ୍ରକାଶିତ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା କରଆନର ଅଭୁତ ଶୈଳୀର ପ୍ରଶଂସା କରି ଲେଖିଛି—

> ''ସୁନ୍ଦର ଲାଳିତ୍ୟ ଓ ଭାଷାର ଶୁଦ୍ଧତା ସହ କୁର୍‌ଆନ ଆରବର ସବୁଠାରୁ ଅଧିକ ଭଦ୍ର ଓ ଆଭିଜାତ୍ୟ ସମ୍ପନ୍ନ କୁରେଶ ସମ୍ପ୍ରଦାୟର ଭାଷାରେ ଲେଖାଯାଇଥିବା ସାର୍ବଜନୀନ ଭାବେ ସ୍ୱୀକୃତ ।''[4]

ସମାନ ମତାମତ ଜନ ଲରିସ୍ ବ୍ଲେକ୍‌ଙ୍କର ଫ୍ୟାମିଲି ଏନ୍‌ସାଇକ୍ଲୋପିଡ଼ିଆ ମଧ୍ୟ ଦେଇଛି ।[5]

ସପ୍ତମ ଶତାବ୍ଦୀର ଆରବ ସାହିତ୍ୟରେ ବେଶ୍ ସମୃଦ୍ଧ ଥିଲା । କିନ୍ତୁ କୁର୍‌ଆନ ଏକ ସମ୍ପୂର୍ଣ୍ଣ ଭିନ୍ନ ଧରଣର ସାହିତ୍ୟ । କୌଣସି ଆରବୀ କାବ୍ୟକବିତା, ସାହିତ୍ୟ କିମ୍ବା ସ୍ୱୟଂ ମହାମାନ୍ୟ ମୁହମ୍ମଦଙ୍କର ବାଣୀ (ହଦିସ) ମଧ୍ୟ ଏହାର

---

[4] "The Koran is universally allowed to be written with the utmost elegance and purity of language in the dialect of the tribe Koreish, the most noble and polite of all the Arabians…"(Encyclopedia Britannica or A Dictionary of Arts and Sciences, London, Vol.III, p.10)

[5] The Family Encyclopedia of Useful Knowledge and General Literature, John Lauris Blake, New York, 1834, p.507.

ସମତୂଲ୍ୟ ନୁହେଁ । ଆରବୀ ଭାଷାର ଜ୍ଞାନ ଥିବା ବ୍ୟକ୍ତି ଉଭୟ ବାଣୀ ମଧ୍ୟରେ ଥିବା ପାର୍ଥକ୍ୟକୁ ଅତି ସହଜରେ ଉପଲବ୍ଧି କରିପାରିବେ । ଯଦିଓ ଦୁଇଟିଯାକ ବାଣୀ ମହାମାନ୍ୟ ମୁହମ୍ମଦଙ୍କ ମୁଖରୁ ନିସୃତ, ତଥାପି ଉଭୟଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ରହିଛି । ଏହା ବ୍ୟତୀତ କୁର୍‌ଆନକୁ ସହଜରେ ଆବୃତ୍ତି କରାଯାଇପାରେ, କିନ୍ତୁ ହଦିସ ବା ମହାମାନ୍ୟ ମୁହମ୍ମଦଙ୍କ ବାଣୀକୁ ଆବୃତ୍ତି କରାଯାଇପାରେ ନାହିଁ । ଅନେକ ପାଶ୍ଚାତ୍ୟ ଲେଖକ କୁର୍‌ଆନର ଶୈଳୀର ପ୍ରଶଂସା କରିଛନ୍ତି । ଜଣେ ଖ୍ରୀଷ୍ଟିଆନ ଧର୍ମଯାଜକ ଟି.ପି. ହଗସ୍ ତାଙ୍କର 'ଡିକ୍ସନାରୀ ଅଫ୍ ଇସ୍‌ଲାମ'ରେ ଏ ବିଷୟରେ ଉଦାହରଣ ସହ ଆଲୋଚନା କରିଛନ୍ତି ।[6] ଆସନ୍ତୁ କୁର୍‌ଆନର ଅପୂର୍ବ ଶୈଳୀର ଏକ ନମୂନା ଦେଖିବା—

**ବିସ୍‌ମିଲ୍ଲାହି-ର୍-ରହମାନି-ର୍-ରହିମ**

(ଅସୀମ ଦୟାବାନ, ଅନନ୍ତ କରୁଣାଶୀଳ ଅଲ୍ଲାହଙ୍କ ନାମରେ)

୧) ଓ୍ୱଇଲୁଲ୍ଲି କୁଲ୍ଲି ହୁମଜତିଲ୍ ଲୁମଜାଃ ।
(ପ୍ରତ୍ୟେକ ଚୁଗୁଲିଆ ଓ ପରଛିଦ୍ରାନ୍ୱେଷୀର ସର୍ବନାଶ ।)

୨) ଅଲ୍-ଲଜୀ ଜମଆ ମା ଲଉଁ ଓ ଅଦ୍-ଦଦାଃ ।
(ଯିଏ ଧନ ସଂଚୟ କରେ ଓ ତାକୁ ଗଣୁଥାଏ ।)

୩) ୟହସବୁ ଅନ୍ନା ମା-ଲହୁ ଅଖଲଦାଃ ।
(ସେ ମନେକରେ ଯେ, ତା' ଧନ ତାକୁ ଚିରଜୀବୀ କରିରଖିବ ।)

୪) କଲ୍ଲା ଲୟୁମ୍ ବଜନ୍ନା ଫିଲ୍ ହୁତମାଃ ।
(ଏହା କଦାପି ହେବନାହିଁ, ସେ ନିଶ୍ଚୟ ସର୍ବଗ୍ରାସୀ ନରକରେ ନିକ୍ଷିପ୍ତ ହେବ ।)

୫) ଓମା ଅଦ୍‌ରାକ ମଲ୍ ହୁତମାଃ ।
(ହେ ମୁହମ୍ମଦ) ତୁମକୁ କ'ଣ ଜଣା ଯେ ସର୍ବଗ୍ରାସୀ ନର୍କ କ'ଣ ?)

୬) ନାରୁଲ୍-ଲ୍ଲାହିଲ୍ ମୁ କଦାଃ ।
(ଏହା ଅଲ୍ଲାହଙ୍କ ଦ୍ୱାରା ପ୍ରଜ୍ୱଳିତ ଅଗ୍ନି ।)

---

(6) A Dictionary of Islam, Thomas Patrick Hughes, London, 1885, P.-521.

୭) ଅଲ୍-ଲତି ତତ୍-ତଲିଉ ଅଲଲ୍ ଅଫ୍ ଇଦାଃ ।
(ଯାହା ହୃଦୟର ଅନ୍ତଃସ୍ଥଳ ଭେଦ କରିବ ।)

୮) ଇନ୍ନହା ଅଲୈହିମ୍ ମୁସଦାଃ ।
(ତା'ପରେ ତାକୁ ସବୁ ଦିଗରୁ ବନ୍ଦ କରିଦିଆଯିବ ।)

୯) ଫି ଅମଦିମ୍ ମୁମଦ୍-ଦଦାଃ ।
(ସେମାନେ ଉଚ୍ଚ ଉଚ୍ଚ ସ୍ତମ୍ଭରେ ବନ୍ଧା ହୋଇଥିବେ ।)

**(କୁର୍‌ଆନ, ୧୦୪ : ୧-୯)**

## ପାରିପାର୍ଶ୍ୱିକ ପ୍ରଭାବ ମୁକ୍ତ

ଜଣେ କବି ବା ଲେଖକର ଚିନ୍ତାଧାରା ତା' ରଚନାକୁ ପ୍ରଭାବିତ କରିଥାଏ । ଲେଖା, ଲେଖକର ମାନସିକ ଓ ପାରିପାର୍ଶ୍ୱିକ ଅବସ୍ଥା ଦ୍ୱାରା ପ୍ରଭାବିତ ହୁଏ ଏବଂ ସେଥିରେ ତାର ପ୍ରେମ, ଦୁଃଖ, କ୍ରୋଧ ବା ବିତୃଷ୍ଣା ଭାବର ପ୍ରତିଫଳନ ଦେଖାଯାଏ । ଯାହାର ଅନ୍ତର ଦୁଃଖ-ବେଦନାପୂର୍ଣ୍ଣ, ତା' କଲମ ହାସ୍ୟ କବିତା ଲେଖିପାରେ ନାହିଁ । ଯେତେବେଳେ ତା' ଜୀବନରେ ସୁଖ ଆସେ, ସେତେବେଳେ ପୁଣି ତା' ଲେଖାର ଭାବଧାରା ମଧ୍ୟ ବଦଳିଯାଏ ।

ମହାମାନ୍ୟ ମୁହମ୍ମଦଙ୍କ ଜୀବନ ବହୁ ସଂଘର୍ଷ ମଧ୍ୟଦେଇ ଗତି କରିଛି । ତାଙ୍କୁ ଲାଞ୍ଛନା ଦିଆଗଲା, ସାମାଜିକ ବାସନ୍ଦ କରାଗଲା, ତାଙ୍କ ସହଯୋଗୀମାନଙ୍କୁ ନାନାପ୍ରକାର ନିର୍ଯ୍ୟାତନା ଦିଆଗଲା, କେତେକଙ୍କୁ ହତ୍ୟା ମଧ୍ୟ କରି ଦିଆଗଲା, ଏପରିକି ତାଙ୍କୁ ତାଙ୍କ ଜନ୍ମମାଟିରୁ ତଡ଼ି ଦିଆଗଲା । ଏଭଳି ଦୁଃଖୀ ମଣିଷଟିଏ ଯଦି କିଛି ଲେଖେ, ତେବେ ତା' ଅନ୍ତରର କୋହ କ'ଣ କାଗଜପୃଷ୍ଠାରେ ଫୁଟିଉଠିବ ନାହିଁ ? ଦୁଃଖ, ଅବସାଦ, ବିତୃଷ୍ଣା ବା ଆନ୍ଦୋଳନାତ୍ମକ ଭାବ ତା' ଲେଖାରେ ପ୍ରତିଫଳିତ ହେବା ସ୍ୱାଭାବିକ । କିନ୍ତୁ କୁର୍‌ଆନକୁ ଦେଖନ୍ତୁ, ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଗୋଟିଏ ମୁଦ୍ରାରେ ରହିଛି । ମହାମାନ୍ୟ ମୁହମ୍ମଦଙ୍କ ଦୁଃଖବେଦନା ବା ବ୍ୟକ୍ତିଗତ ଭାବନାକୁ ପ୍ରତିଫଳିତ ନକରି ଏହା ଶାନ୍ତ ଓ ନିର୍ବିକାର ଭାବରେ ନିଜ ଲକ୍ଷ୍ୟ ସମ୍ପର୍କରେ ବରାବର ନିର୍ଦ୍ଦେଶ ଦେଇ ଚାଲିଛି ।

ଈଶ୍ୱର ସୁଖ-ଦୁଃଖ ଆଦି ପ୍ରଭାବରୁ ମୁକ୍ତ । ତେଣୁ ତାଙ୍କ ବାଣୀରେ ମାନବୀୟ ଦୁର୍ବଳତାର କୌଣସି ଝଲକ ନଥାଏ । ବ୍ରହ୍ମବାଣୀର ଶୈଳୀ ସବୁ ଯୁଗରେ ଏବଂ ସବୁ ଅବସ୍ଥାରେ ସମାନ ଥାଏ । ଭାଷା ବଦଳେ; କିନ୍ତୁ କଥାର ଭାବଧାରା ବଦଳେ ନାହିଁ । କୁର୍‌ଆନକୁ ଅଧ୍ୟୟନ କଲେ ଜଣାପଡ଼େ ଯେ, ତେଇଶି ବର୍ଷ ଅବଧି ମଧ୍ୟରେ ଏହା କେବଳ ନିଜ ମିଶନ୍‌କୁ କେନ୍ଦ୍ରୀଭୂତ କରିଛି । ଏହାର କୌଣସି ବାକ୍ୟରେ ମାନବୀୟ ଦୁର୍ବଳତାର ଚିହ୍ନ ନାହିଁ ।

## ତ୍ରୁଟିବିହୀନ ରଚନା

ମଣିଷମାତ୍ରେ ଭୁଲ କରିବା ସ୍ୱାଭାବିକ । ଯେତେ ବଡ଼ ଲେଖକ ହେଉ, ସେ ଏହା ଦାବି କରିପାରିବ ନାହିଁ ଯେ ତା' ଲେଖାରେ କୌଣସି ଦୋଷ ଦୁର୍ବଳତା ନାହିଁ ବା ଭାଷାଗତ, ବର୍ଣ୍ଣନାଗତ ବା ତଥ୍ୟଗତ କୌଣସି ବୈଷମ୍ୟ ନାହିଁ । ଆମେ ଚିଠି ଖଣ୍ଡେ ଲେଖିଲେ ସେଥିରେ ମଧ୍ୟ ଭୁଲ ହୋଇଯାଏ ଏବଂ ଆମକୁ କାଟି ସଂଶୋଧନ କରିବାକୁ ପଡ଼େ । କୁର୍‌ଆନ ଗୋଟିଏ ବିଶାଳ ଗ୍ରନ୍ଥ ହୋଇଥିବା ସତ୍ତ୍ୱେ ସେଥିରେ କୌଣସି ପ୍ରକାର ତ୍ରୁଟି ଦେଖିବାକୁ ମିଳେନାହିଁ । ଏହା ତ୍ରୁଟିମୁକ୍ତ ବୋଲି ନିଜେ ଘୋଷଣା କରି କହେ—

> ''କ'ଣ ସେମାନେ କୁର୍‌ଆନକୁ ମନଯୋଗ ଦେଇ ଅନୁଧ୍ୟାନ କରୁନାହାନ୍ତି ? ଯଦି ଏହା ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହା ଦ୍ୱାରା ରଚନା କରାଯାଇଥାଆନ୍ତା, ତେବେ ଏଥିରେ ନିଶ୍ଚୟ ବହୁତ ବୈଷମ୍ୟ ଦେଖିବାକୁ ମିଳନ୍ତା ।''

**(କୁର୍‌ଆନ, ୪ : ୮୨)**

କୌଣସି ମଣିଷ ନିଜ ରଚନାକୁ ତ୍ରୁଟିମୁକ୍ତ ବୋଲି ଘୋଷଣା କରେନାହିଁ । ସେ ଯୁଗର ଆରବ ସାହିତ୍ୟ ଯଥେଷ୍ଟ ସମୃଦ୍ଧ ଥିଲା ଏବଂ କୁର୍‌ଆନକୁ ବ୍ରହ୍ମବାଣୀ ବୋଲି ଗ୍ରହଣ ନ କରୁଥିବା ଅନେକ ଲୋକ ମଧ୍ୟ ଆରବୀ ସାହିତ୍ୟରେ ପ୍ରବୀଣ ଥିଲେ । କୁର୍‌ଆନର ଦୋଷ ଦୁର୍ବଳତା ପ୍ରତି ସେମାନଙ୍କର ଆଗ୍ରହ ଥିବା ସ୍ୱାଭାବିକ । ଯଦି ଏହି ଗ୍ରନ୍ଥରେ କୌଣସି ପ୍ରକାରର ତ୍ରୁଟି ଥାଆନ୍ତା, ସେମାନେ ନିଶ୍ଚୟ ତାହା ପ୍ରକାଶ କରି କୁର୍‌ଆନକୁ ମାନବ ରଚନା ବୋଲି ପ୍ରମାଣିତ କରିବାକୁ ଚେଷ୍ଟା କରିଥାଆନ୍ତେ । କିନ୍ତୁ ସେମାନେ ମଧ୍ୟ କୁର୍‌ଆନର ବାଗ୍ମୀତା ସମ୍ମୁଖରେ ଅସହାୟ ହୋଇ ପଡ଼ିଥିଲେ ।

## ଅସମ୍ଭବ ପୁନରାବୃତ୍ତି

ମଣିଷ ବହିଟିଏ ଲେଖିଲେ ଗୋଟିଏ କଥାକୁ ଶହ ଶହ ଥର ପୁନରାବୃତ୍ତି କରେନାହିଁ । ଯଦି ସେ କୌଣସି କଥାକୁ ପ୍ରାଧାନ୍ୟ ଦିଏ, ତେବେ ଅତି ବେଶୀରେ ବିଭିନ୍ନ ସ୍ଥାନରେ ଦୁଇ ଚାରି ଥର ବା ପାଞ୍ଚ ଥର ଉଲ୍ଲେଖ କରିପାରେ । ଶହ ଶହ ଥର ଲେଖେନାହିଁ । କୁର୍‌ଆନ କିନ୍ତୁ ପ୍ରମୁଖ ଶିକ୍ଷାଗୁଡ଼ିକୁ ଶହ ଶହ ଥର ପୁନରାବୃତ୍ତି କରିଛି, ଯଥା—କେବଳ ଜଣେ ଈଶ୍ୱରଙ୍କର ଉପାସନା କରିବା, ନମାଜ ସ୍ଥାପନ କରିବା ବା ଦାନ ଦେବାର ନିର୍ଦ୍ଦେଶ ଶୈଳୀ ବଦଳାଇ ଶହ ଶହ ଥର ପୁନରାବୃତ୍ତି କରାଯାଇଛି । ସେହିପରି ମହାପ୍ରଳୟ, ପୁନର୍ଜୀବନ, ସ୍ୱର୍ଗ ଓ ନର୍କ ବିଷୟରେ ମଧ୍ୟ ଶତାଧିକ ଥର ପୁନରାବୃତ୍ତି ହୋଇଛି । କୌଣସି ମନୁଷ୍ୟ ଗୋଟିଏ କଥାକୁ ବାରମ୍ବାର ଏତେଥର ନିଜ ପୁସ୍ତକରେ ଲେଖେନାହିଁ । ତେଣୁ ଏହା ଯେ ମାନବ ରଚନା ନୁହେଁ, ଏହା ସହଜରେ ବୁଝିହୁଏ ।

## କୁର୍‌ଆନ ପାଠ ଶାନ୍ତିପ୍ରଦ

ଇତିହାସ, ଭୂଗୋଳ ବା ବିଜ୍ଞାନ ହେଉ କିମ୍ବା ନଭେଲ ବା କୌତୂହଳଜନକ କୌଣସି କାହାଣୀ, ଥରେ ବା ଦୁଇଥର ବା ପାଞ୍ଚଥର ପଢ଼ିବା ପାଇଁ ଜଣକର ଆଗ୍ରହ ଥାଇପାରେ । ତା'ପରେ ସେହି ବହିଟିକୁ ବାରମ୍ବାର ପଢ଼ିବାକୁ ଇଚ୍ଛା ହୁଏନାହିଁ, ବରଂ ବିରକ୍ତ ଲାଗେ । କିନ୍ତୁ ବ୍ରହ୍ମବାଣୀର ଗୋଟିଏ ବିଶେଷତ୍ୱ ହେଉଛି ଯେ ତାକୁ ଯେତେ ପଢ଼ିଲେ ମଧ୍ୟ ଆହୁରି ପଢ଼ିବାକୁ ଇଚ୍ଛା ହୁଏ । ବିରକ୍ତିବୋଧ ହୁଏ ନାହିଁ । ଶରୀର କ୍ଳାନ୍ତ ହୋଇଯାଇ ପାରେ, କିନ୍ତୁ ମନ ଥକିଯାଏ ନାହିଁ । ମାନବ ରଚିତ ପୁସ୍ତକଗୁଡ଼ିକ ମଣିଷକୁ ଆନନ୍ଦ ଦେଇପାରେ ବା ମନ ଖୁସି କରିପାରେ; କିନ୍ତୁ ଆତ୍ମାର ତୃଷା ନିବାରଣ କରିପାରେ ନାହିଁ । ଈଶ୍ୱରବାଣୀ ଆତ୍ମାକୁ ପରିତୃପ୍ତ କରେ ଏବଂ ମନକୁ ଶାନ୍ତି ଦିଏ । କାରଣ ଏହାକୁ ପାଠ କରୁଥିବା ବ୍ୟକ୍ତି ଈଶ୍ୱରଙ୍କର ସାନ୍ନିଧ ଲାଭ କରେ ।

ଈଶ୍ୱରଙ୍କ ପବିତ୍ର ନାମଜପ ବା ସ୍ମରଣ ଦ୍ୱାରା ମଧ୍ୟ ମନକୁ ଶାନ୍ତି ମିଳେ ଏବଂ ମଣିଷର ଆଧାତ୍ମିକ ଶକ୍ତି ବୃଦ୍ଧି ପାଏ । ଖାଦ୍ୟ ଓ ଜଳ ଯେପରି ଶରୀରର ଏକ ପ୍ରାକୃତିକ ଆବଶ୍ୟକତା, ସେହିପରି ସ୍ରଷ୍ଟାଙ୍କର ନାମ ସ୍ମରଣ ଆତ୍ମାର ଏକ ପ୍ରାକୃତିକ ଆବଶ୍ୟକତା, ଯାହାଦ୍ୱାରା ଆତ୍ମାର ତୃଷା ନିବାରଣ ହୁଏ । କୁର୍‌ଆନ ଏହି ସତ୍ୟକୁ ପ୍ରକାଶ କରି କହିଛି—

''ଜାଣିରଖ, ଅଲ୍ଲାହଙ୍କୁ ସ୍ମରଣ କରିବାଦ୍ୱାରା ହୃଦୟଗୁଡ଼ିକ ଶାନ୍ତି ପ୍ରାପ୍ତ କରନ୍ତି ।''

**(କୁର୍‌ଆନ ୧୩ : ୨୮ )**

କୋଟି କୋଟି ଲୋକ ଦୈନିକ କୁର୍‌ଆନ ପାଠ କରନ୍ତି ଏବଂ ଅନେକ ଏହାକୁ ପ୍ରତି ମାସରେ ମୂଳରୁ ଶେଷ ପର୍ଯ୍ୟନ୍ତ ପାଠ କରନ୍ତି । ତଥାପି ସେମାନଙ୍କୁ ବିରକ୍ତିବୋଧ ହୁଏନାହିଁ । ଏହା ବ୍ୟତୀତ ଯେଉଁମାନେ ଅର୍ଥ ବୁଝନ୍ତି, ସେମାନଙ୍କୁ କୁର୍‌ଆନ ପ୍ରତିଥର ଭିନ୍ନ ଭିନ୍ନ ସ୍ୱାଦ ଦିଏ । ବ୍ରହ୍ମବାଣୀର ଏହା ହେଉଛି ଏକ ଆଧ୍ୟାତ୍ମିକ ଚମତ୍କାରିତା । ମାନବ ରଚନାରେ ଏହି ବିଶେଷତ୍ୱ ନଥାଏ ।

## ଏକ ପରିପୂର୍ଣ୍ଣ ବିଧାନ

ଏହି ଗ୍ରନ୍ଥଟି ଏକ ଅସାଧାରଣ ଗ୍ରନ୍ଥ । ଏହା ମନୁଷ୍ୟର ସବୁ ସମସ୍ୟାର ଏକ ସ୍ଥାୟୀ ସମାଧାନ ଦେଇଛି । ବିଶ୍ୱରେ ଏମିତି କୌଣସି ଲେଖକ ନାହାନ୍ତି, ଯିଏ ମନୁଷ୍ୟର ଆଧ୍ୟାତ୍ମିକ, ନୈତିକ, ସାମାଜିକ, ଅର୍ଥନୈତିକ, ରାଜନୈତିକ ତଥା ଜୀବନର ସମସ୍ତ କ୍ଷେତ୍ର ପାଇଁ ସମାନ ଭାବରେ ନିର୍ଭୁଲ ନୀତି ନିର୍ଦ୍ଧାରଣ କରି ଗ୍ରନ୍ଥଟିଏ ଲେଖିଛନ୍ତି । ଏହା ମାନବ ପକ୍ଷରେ ସମ୍ଭବପର ମଧ୍ୟ ନୁହେଁ ।

## ଶବ୍ଦଗୁଡ଼ିକର ଚମତ୍କାର ପୁନରାବୃତ୍ତି

ଏହି ପବିତ୍ର ଗ୍ରନ୍ଥଟିରେ ପରସ୍ପର ସହିତ ସମ୍ପୃକ୍ତ ଥିବା କେତେକ ଶବ୍ଦର ଆଶ୍ଚର୍ଯ୍ୟଜନକ ଭାବେ ପୁନରାବୃତ୍ତି ଦେଖିବାକୁ ମିଳେ ।[7] ଆସନ୍ତୁ, କେତୋଟି ଉଦାହରଣ ଦେଖିବା ।

କୁର୍‌ଆନରେ 'ସପ୍ତ ଆକାଶ' କଥା ସାତଥର ଉଲ୍ଲେଖ ଥିବାବେଳେ 'ଆକାଶର ସୃଷ୍ଟି' ମଧ୍ୟ ସାତଥର ଉଲ୍ଲେଖ କରାଯାଇଛି ।

'ଦିନ' ଶବ୍ଦର ଏକ ବଚନରେ ୩୬୫ଥର ପୁନରାବୃତ୍ତି କରାଯାଇଥିବା ବେଳେ ବହୁବଚନରେ ଏହା ୩୦ଥର ଏବଂ 'ମାସ' ଶବ୍ଦର ଚମତ୍କାର ଭାବେ ୧୨ଥର ପୁନରାବୃତ୍ତି ହୋଇଛି ।

---

(7) Harun Yahia, Learning form the Qur'an, Turkey, 2003, pp.535-536

'ଇହଲୋକ' (ଦୁନିଆ) ଶବ୍ଦଟିର ୩୩୨ଥର ପୁନରାବୃତ୍ତି ହୋଇଛି । ସେହିପରି ଏହାର ବିପରୀତ 'ପରଲୋକ' (ଆଖିରତ) ଶବ୍ଦଟିର ମଧ୍ୟ ୩୩୨ ଥର ପୁନରାବୃତ୍ତି ହୋଇଛି ।

'ସ୍ୱର୍ଗ' (ଜନ୍ନତ) ଏବଂ 'ନର୍କ' (ଜହନ୍ନମ) ଉଭୟ ଶବ୍ଦର ୭୭ଥର ପୁନରାବୃତ୍ତି କରାଯାଇଛି ।

'ବିଶ୍ୱାସ' (ଇମାନ୍) ଏବଂ 'ଅବିଶ୍ୱାସ' (କୁଫ୍‌ର୍) ଉଭୟ ଶବ୍ଦ ବିଭିନ୍ନ ସ୍ଥାନରେ ୨୫ଥର ଲେଖାଏଁ ପୁନରାବୃତ୍ତି ହୋଇଛି ।

'ପୁରୁଷ' ଓ 'ସ୍ତ୍ରୀ' ଉଭୟ ଶବ୍ଦର ୨୩ଥର ପୁନରାବୃତ୍ତି ଘଟିଛି ।

'ସ୍ୱର୍ଗଦୂତ' ଏବଂ 'ଦାନବ' ଉଭୟ ଶବ୍ଦର ୮୮ଥର ପୁନରାବୃତ୍ତି କରାଯାଇଛି ।

'ସୂର୍ଯ୍ୟ' ୩୩ଥର ଉଲ୍ଲେଖ ଥିବାବେଳେ 'ଆଲୋକ' ମଧ୍ୟ ୩୩ଥର ଉଲ୍ଲେଖ ରହିଛି ।

ସେହିପରି 'କର୍ମ' ଓ 'କର୍ମଫଳ' ଉଭୟ ଶବ୍ଦ ପ୍ରତ୍ୟେକ ୧୦୮ଥର ବ୍ୟବହାର କରାଯାଇଛି ।

ଦୀର୍ଘ ୨୩ବର୍ଷ ଧରି ଅଳ୍ପ ଅଳ୍ପ ପ୍ରକଟ ହୋଇଥିବା ଏହି ବିଶାଳ ଗ୍ରନ୍ଥଟିରେ ଶବ୍ଦଗୁଡ଼ିକର ଆଶ୍ଚର୍ଯ୍ୟଜନକ ପୁନରାବୃତ୍ତି ମଧ୍ୟ କୌଣସି କମ୍ ଚମତ୍କାର ନୁହେଁ ।

## ଅଭୂତପୂର୍ବ ସୁରକ୍ଷା

ଥୋମାସ କାର୍ଲାଇଲ କୁହନ୍ତି—

''କୁହାଯାଇପାରେ ଯେ ବିଶୁଦ୍ଧତା ଓ ବାସ୍ତବତା ହେଉଛି କୁର୍‌ଆନ ଗ୍ରନ୍ଥଟିର ପ୍ରାଥମିକ ବୈଶିଷ୍ଟ୍ୟ ।''[8]

---

[8] "One would say, the primary character of the Koran is this of its genuineness, of its being a bona fide book"(Thomas Carlyle, Heroes and Hero Worship, p.90)

କୁର୍‌ଆନ ଈଶ୍ୱରଙ୍କର ଏକମାତ୍ର ଗ୍ରନ୍ଥ ନୁହେଁ । ଏହା ପୂର୍ବରୁ ଏକାଧିକ ଦିବ୍ୟଗ୍ରନ୍ଥ ଅବତରଣ ହୋଇଛି । କିନ୍ତୁ କୁର୍‌ଆନ ହିଁ ଏକମାତ୍ର ଦିବ୍ୟଗ୍ରନ୍ଥ ଯାହାର ସମ୍ପୂର୍ଣ୍ଣ ସୁରକ୍ଷା ପାଇଁ ସ୍ରଷ୍ଟା ବଚନବଦ୍ଧ । ସୁତରାଂ ସେ କୁର୍‌ଆନରେ ଘୋଷଣା କରନ୍ତି—

''ଆମ୍ଭେ ହିଁ ଏହି କୁର୍‌ଆନକୁ ଅବତୀର୍ଣ୍ଣ କରିଅଛୁ ଏବଂ ସ୍ୱୟଂ ଆମ୍ଭେ ହିଁ ଏହାର ସଂରକ୍ଷକ ।''

**(କୁର୍‌ଆନ ୧୫ : ୯)**

ପଣ୍ଡିତ ଓ ଧର୍ମଗୁରୁମାନେ ନ୍ୟସ୍ତ ସ୍ୱାର୍ଥ ପାଇଁ ବିଭିନ୍ନ ଯୁଗରେ ଦିବ୍ୟଗ୍ରନ୍ଥଗୁଡ଼ିକୁ ସଂଶୋଧନ କଲେ ଏବଂ ସେଗୁଡ଼ିକରେ ମନଇଚ୍ଛା ପରିବର୍ତ୍ତନ ଆଣିଲେ, ଯାହାଫଳରେ ଈଶ୍ୱରଙ୍କ ଧର୍ମ ତାହାର ସ୍ୱରୂପ ହରାଇଲା ଏବଂ ସମାଜରେ ଅନ୍ୟାୟ, ଅନୀତି ଓ କୁସଂସ୍କାର ପ୍ରବେଶ କଲା । ତେଣୁ କୁର୍‌ଆନର ସୁରକ୍ଷାର ଦାୟିତ୍ୱ ସ୍ୱୟଂ ଈଶ୍ୱର ବହନ କଲେ ଏବଂ ସେଥିରେ ଏକଥା ଘୋଷଣା ମଧ୍ୟ କରିଦେଲେ ।

ଚଉଦ ଶହ ବର୍ଷ ଧରି ଏହି ଗ୍ରନ୍ଥର ପ୍ରତ୍ୟେକଟି ଅକ୍ଷର ସୁରକ୍ଷିତ ରହିଛି ଏବଂ ଭବିଷ୍ୟତରେ ମଧ୍ୟ ରହିବ । ବିଶ୍ୱର ପ୍ରତ୍ୟେକ ଦେଶରେ ସମାନ କୁର୍‌ଆନ ପ୍ରଚଳିତ । ଏହାର କୌଣସି ସଂଶୋଧିତ ସଂସ୍କରଣ ନାହିଁ । ଐତିହାସିକ ଗୀବନ କୁହନ୍ତି ଯେ, କୁର୍‌ଆନର ବିଭିନ୍ନ ସଂସ୍କରଣଗୁଡ଼ିକ ଚମତ୍କାର ଭାବରେ ସମାନତା ଓ ଶୁଦ୍ଧତା ରକ୍ଷା କରିଛି ।[9]

ସାର୍ ଉଇଲିୟମ୍ ମୁର୍ ମଧ୍ୟ ପବିତ୍ର କୁର୍‌ଆନ ବିଷୟରେ ଲେଖିଛନ୍ତି—

''ବୋଧହୁଏ ବିଶ୍ୱରେ ଅନ୍ୟ କୌଣସି ଲେଖା ଏତେ ବିଶୁଦ୍ଧ ରୂପେ ବାରଶହ ଶତାବ୍ଦୀ ଧରି ତିଷ୍ଠି ରହିପାରି ନାହିଁ ।''[10]

---

(9) "The various editions of the Koran assert the same miraculous privilege of a uniform and incorruptible text." (Edward Gibbon, Life of Mahomet, pp. 86-87)

(10) "There is probably in the world no other work which has remained twelve centuries with so pure a text." (Sir William Muir, The Life of Mahomet, London, 1861, Vol.I, p.xv Introduction)

ପବିତ୍ର କୁର୍‌ଆନ ୬୧୦ ଖ୍ରୀଷ୍ଟାବ୍ଦରେ ଧିରେ ଧିରେ ପ୍ରକଟ ହେବା ଆରମ୍ଭ ହେଲା ଏବଂ ତା' ସହିତ ଏହାର ସଂରକ୍ଷଣ ମଧ୍ୟ ଆରମ୍ଭ ହେଲା । ଯେହେତୁ ପୂର୍ବ ଦିବ୍ୟଗ୍ରନ୍ଥମାନଙ୍କରେ ସଂଶୋଧନ ଓ ପ୍ରକ୍ଷେପଣ ହୋଇ ଯାଇଥିଲା, ତେଣୁ କୁର୍‌ଆନର ସୁରକ୍ଷା ପ୍ରତି ମହାମାନ୍ୟ ମୁହମ୍ମଦ ଅଧିକ ସତର୍କତା ଅବଲମ୍ବନ କଲେ । ମୁଖ୍ୟତଃ ଦୁଇଟି ଉପାୟରେ କୁର୍‌ଆନର ସଂରକ୍ଷଣ ହେଲା—କଣ୍ଠସ୍ଥ ହେବା ଦ୍ୱାରା ଏବଂ ଲେଖା ଦ୍ୱାରା ।

କୁର୍‌ଆନର ଶ୍ଳୋକଗୁଡ଼ିକ ପ୍ରକଟ ହେବାକ୍ଷଣି ମହାମାନ୍ୟ ମୁହମ୍ମଦ ସେଗୁଡ଼ିକୁ କଣ୍ଠସ୍ଥ କରି ନେଉଥିଲେ । ପ୍ରାରମ୍ଭରେ ଦୈବବାଣୀ ହେବାମାତ୍ରେ ସେ ତାକୁ ମନେ ରଖିବା ପାଇଁ ବ୍ୟସ୍ତ ହୋଇ ପଡୁଥିଲେ ଏବଂ ଦୈବବାଣୀ ହେଉଥିବା ସମୟରେ ଭୁଲିଯିବାର ଆଶଙ୍କା କରି ସେ ତାକୁ ବାରମ୍ବାର ଆବୃତ୍ତି କରୁଥିଲେ । କିନ୍ତୁ ଦୈବବାଣୀକୁ କଣ୍ଠସ୍ଥ କରିବାର କୌଣସି ପ୍ରୟାସ ନ କରିବା ପାଇଁ ତାଙ୍କୁ ଈଶ୍ୱରଙ୍କ ଦ୍ୱାରା ବାରଣ କରାଗଲା—

> ''(ହେ ମୁହମ୍ମଦ) ଏହି ଦୈବବାଣୀକୁ ଶୀଘ୍ର ଶୀଘ୍ର ମୁଖସ୍ଥ କରିନେବା ପାଇଁ ତୁମେ ନିଜର ଜିହ୍ୱା ଚାଳନା କରନାହିଁ । ଏହାକୁ ମୁଖସ୍ଥ କରାଇବା ଏବଂ (ତୁମଦ୍ୱାରା) ପଢ଼ାଇ ଦେବା ଆମ୍ଭର ଦାୟିତ୍ୱ । ସୁତରାଂ, ଯେତେବେଳେ ଆମ୍ଭେ ଏହାକୁ ପାଠ କରୁ, ତୁମେ ତାର ଅନୁକରଣ କର । ପୁଣି ଏହାର ବ୍ୟାଖ୍ୟା ମଧ୍ୟ ଆମ୍ଭର ଦାୟିତ୍ୱ ।''

**(କୁର୍‌ଆନ, ୭୫ : ୧୬-୧୯)**

ଏହାଦ୍ୱାରା କୁର୍‌ଆନକୁ ତାଙ୍କ ସ୍ମୃତିରେ ସଂରକ୍ଷିତ ରଖିବାର ବଚନ ଦିଆଗଲା । ତେଣୁ ମହାମାନ୍ୟ ମୁହମ୍ମଦ ଆଉ ଏଭଳି କରିବାର ପ୍ରୟାସ କଲେନାହିଁ । କଣ୍ଠସ୍ଥ କରିବାର କୌଣସି ଅଭ୍ୟାସ ନ କରି ସୁଦ୍ଧା ସମ୍ପୂର୍ଣ୍ଣ କୁର୍‌ଆନ ତାଙ୍କୁ ମନେ ଥିଲା ଏବଂ ସେ ତାକୁ ପଢ଼ି ଶୁଣାଇ ପାରୁଥିଲେ । କୌଣସି ଲେଖକ ତା' ଗ୍ରନ୍ଥକୁ ନ ଦେଖି ବା ମୁଖସ୍ଥ ନ କରି ଆମୂଳଚୂଳ ପଢ଼ି ଦେଇପାରିବ ନାହିଁ ।

ଦ୍ୱିତୀୟତଃ ତାଙ୍କର ଅନେକ ସହଯୋଗୀ ସମ୍ପୂର୍ଣ୍ଣ କୁର୍‌ଆନ କଣ୍ଠସ୍ଥ କରୁଥିଲେ ।[11] ଏହା ବ୍ୟତୀତ ଦୈନିକ ନମାଜରେ କୁର୍‌ଆନ ପାଠ ଅନିବାର୍ଯ୍ୟ ହୋଇଥିବା ଯୋଗୁଁ ପ୍ରତ୍ୟେକ ମୁସଲମାନ ମଧ୍ୟ ଏହାର କିଛି ଅଂଶ ମୁଖସ୍ଥ କରୁଥିଲେ ।[12] ଏଭଳି ଲୋକମାନଙ୍କର ସଂଖ୍ୟା ମହାମାନ୍ୟ ମୁହମ୍ମଦଙ୍କ ଅନ୍ତିମ ସମୟରେ ଏକ ଲକ୍ଷରୁ ଅଧିକ ଥିଲା ।

କୁର୍‌ଆନ ସଂରକ୍ଷଣର ଦ୍ୱିତୀୟ ଉପାୟ ଥିଲା ଏହାର ଲିଖିତ ସଂରକ୍ଷଣ । ଦୈବବାଣୀ ହେବା ପରେ ପରେ ମହାମାନ୍ୟ ମୁହମ୍ମଦ ତାକୁ ନିଜର କେତେକ ସହଯୋଗୀମାନଙ୍କ ଦ୍ୱାରା ପଶୁଚର୍ମ, ଅସ୍ଥି ବା ଶିଳାରେ ଲେଖାଇ ନେଉଥିଲେ ।[13]

ଉଇଲିୟମ୍ ମୁର୍‌ଙ୍କ ବ୍ୟତୀତ ଐତିହାସିକ ଗୀବନ ମଧ୍ୟ ଲେଖିଛନ୍ତି ଯେ, ଈଶ୍ୱରବାଣୀ ଏବଂ ଈଶ୍ୱରଦୂତଙ୍କ ବାଣୀ ଉଭୟ ତାଙ୍କ ଶିଷ୍ୟମାନଙ୍କ ଦ୍ୱାରା ଅତି ଯତ୍ନର ସହ ଲିପିବଦ୍ଧ କରାଯାଉଥିଲା ।[14] ଦୈବବାଣୀ ଲିପିବଦ୍ଧ କରିବାପାଇଁ ସ୍ୱତନ୍ତ୍ର ଭାବରେ କେତେକ ଲିପିକାର ନିଯୁକ୍ତ ଥିଲେ । ସେମାନଙ୍କ ନିକଟରେ

---

(11) "(William Muir, The Life of Mahomet, London, 1861, Vol.I, p.xxi Introduction)

(12) "The Coran was accordingly committed to memory more or less by every adherent of Islam …" (Ibid, p.v Introduction)

(13) "At the moment of inspiration or shortly after, each passage was recited by Mohammad before the friends or followers who happened to be present, and was generally committed to writing by some one amongst them, at the time or afterwards, upon palm-leaves, leather, stones, or such other rude material as conveniently came to hand."(Sir William Muir, The Life of Mohammed from Original Sources, 1923 p.xiv)

(14) "The word of God, and of the apostle, was diligently recorded by his disciples on palm-leaves, and the shoulder-bones of mutton; and the pages, without order and connection, were cast into a domestic chest in the custody of one of his wives. Two years after the death of Mahomet, the sacred volume was collected and published by his

କୁର୍‌ଆନର ଆଲେଖଗୁଡ଼ିକ ସୁରକ୍ଷିତ ରହୁଥିଲା ଏବଂ ମହାମାନ୍ୟ ମୁହମ୍ମଦ ସ୍ୱୟଂ ନିଜ ପାଖରେ ମଧ୍ୟ ରଖୁଥିଲେ । ଏହାଛଡ଼ା ତାଙ୍କର ଅନେକ ଶିଷ୍ୟ ମଧ୍ୟ କୁର୍‌ଆନ ଲିଖିତ ରୂପେ ରଖୁଥିଲେ ।(15)

ମହାମାନ୍ୟ ମୁହମ୍ମଦଙ୍କ ବିୟୋଗ ପରେ ହଜରତ ଅବୁ ବକର ସିଦ୍ଦିକ୍ (୬୩୨-୬୩୪) ପ୍ରଥମ ଖଲିଫା ହେଲେ । ହଜରତ ଉମରଙ୍କ ପରାମର୍ଶରେ ସେ କୁର୍‌ଆନର ଆଲେଖଗୁଡ଼ିକୁ ଏକତ୍ରିତ କରି ମହାମାନ୍ୟ ମୁହମ୍ମଦଙ୍କ ନିର୍ଦ୍ଦେଶ ଅନୁଯାୟୀ ଅଧ୍ୟାୟଗୁଡ଼ିକୁ କ୍ରମ ଦେଲେ । ଏଥିପାଇଁ ମହାମାନ୍ୟ ମୁହମ୍ମଦଙ୍କ ସ୍ୱତନ୍ତ୍ର ଲିପିକାର ହଜରତ ଜୈଦ ବିନ୍ ସାବିତ୍‌ଙ୍କୁ ଦାୟୀତ୍ୱ ଦିଆଗଲା ।

କୁର୍‌ଆନ କଣ୍ଠସ୍ଥ କରିଥିବା ହାଫିଜମାନଙ୍କ ଦ୍ୱାରା ଆଲେଖଗୁଡ଼ିକର ତୁଳନାତ୍ମକ ପରୀକ୍ଷା କରାଯାଇ ସମ୍ପୂର୍ଣ୍ଣ କୁର୍‌ଆନର ଏକ ପ୍ରତିଲିପି ପ୍ରସ୍ତୁତ ହେଲା । ପବିତ୍ର କୁର୍‌ଆନର ଏହି ମୂଳ କପିଟିକୁ ହଜରତ ଅବୁ ବକର ସିଦ୍ଦିକ ନିଜ ପାଖରେ ରଖିଲେ । ତାଙ୍କ ମୃତ୍ୟୁ ପରେ ଏହା ପରବର୍ତ୍ତୀ ଖଲିଫା ହଜରତ ଉମର (୬୩୪-୬୪୪) ଏବଂ ତାଙ୍କ ପରେ ତାଙ୍କ କନ୍ୟା ତଥା ମହାମାନ୍ୟ ମୁହମ୍ମଦଙ୍କ ପତ୍ନୀ ହଜରତ ହଫ୍‌ସାଙ୍କ ତତ୍ତ୍ୱାବଧାନରେ ରହିଲା ।(16) ଚତୁର୍ଥ ଖଲିଫା ହଜରତ ଉସମାନ (୬୪୪-୬୫୬) ଏହି ମାଷ୍ଟର କପିରୁ କୁର୍‌ଆନର କେତୋଟି ନକଲ ପ୍ରସ୍ତୁତ କରି ବିଭିନ୍ନ ଇସ୍‌ଲାମିକ ରାଷ୍ଟ୍ରଗୁଡ଼ିକୁ ପଠାଇଲେ ।

ସାର୍ ଉଇଲିୟମ୍ ମୁର୍ କୁହନ୍ତି—

> "ଉସମାନ୍‌ଙ୍କ ଦ୍ୱାରା ପ୍ରସ୍ତୁତ ସେହି କୁର୍‌ଆନର ପ୍ରତିଲିପି ଏବେ ଆମ ନିକଟରେ ଅପରିବର୍ତ୍ତିତ ରୂପେ ରହିଛି । ଏତେ ସାବଧାନତାର ସହ ଏହା ସୁରକ୍ଷିତ ଯେ ଏଥିରେ କୌଣସି ଉଲ୍ଲେଖଯୋଗ୍ୟ ପ୍ରଭେଦ ନାହିଁ, ଆମେ କହିପାରୁ ଯେ ଇସ୍‌ଲାମର ବିଶାଳ ଦୁନିଆରେ ଛାଇ ରହିଥିବା କୁର୍‌ଆନର ଅସଂଖ୍ୟ

---

friend and successor Abubeker" (Edward Gibbon, Life of Mahomet,1735, p.85-86)

(15) ସହୀ ବୁଖାରୀ, ୬ଷ୍ଠ ଖଣ୍ଡ, ହଦିସ ୫୨୫

(16) ସହୀ ବୁଖାରୀ, ୬ଷ୍ଠ ଖଣ୍ଡ, ହଦିସ ୫୦୯

ପ୍ରତିଲିପିଗୁଡ଼ିକ ମଧ୍ୟରେ ଆଦୌ କୌଣସି ପ୍ରଭେଦ ଦେଖିବାକୁ ମିଳେନାହିଁ ।''(17)

ବ୍ରିଟିଶ ଐତିହାସିକ ବୋସୱାର୍ଥ ସ୍ମିଥ୍ ମଧ୍ୟ ଲେଖିଛନ୍ତି—

''ନିଃସନ୍ଦେହ ଭାବରେ ଆମ ନିକଟରେ ଥିବା କୁର୍‌ଆନରେ ମୁହମ୍ମଦଙ୍କ ମୁଖରୁ ନିଃସୃତ ହୋଇଥିବା ଅବିକଳ ସେହି ଶବ୍ଦଗୁଡ଼ିକ ରହିଛି, ଯେଉଁଥିରେ କିଛି କମ୍ ବେଶୀ ହୋଇନାହିଁ ।''(18)

ସପ୍ତମ ଶତାବ୍ଦୀଠାରୁ ଆଜି ପର୍ଯ୍ୟନ୍ତ ଏହି ଗ୍ରନ୍ଥଟି ସାରା ବିଶ୍ୱରେ ଠିକ୍ ସେହି ରୂପରେ ରହିଛି । ଏହାର ଗୋଟିଏ ଅକ୍ଷର ମଧ୍ୟ ବଦଳି ନାହିଁ । ବିଶ୍ୱର ବିଭିନ୍ନ ସଂଗ୍ରହାଳୟଗୁଡ଼ିକରେ ସେହି କୁର୍‌ଆନର ପ୍ରତିଲିପି ଏବେ ମଧ୍ୟ ସଂରକ୍ଷିତ ରହିଛି ।



ବ୍ରିଟିଶ ମ୍ୟୁଜିୟମ୍‌ରେ ଥିବା ୭ମ ଶତାବ୍ଦୀର କୁର୍‌ଆନ

(17) "The recension of 'Othman has been handed down to us unaltered. So carefully, indeed, has it been preserved, that there are no variations of importance—we might almost say no variations at all—to be found in the innumerable copies scattered throughout the vast bounds of the empire of Islam." (William Muir, The Life of Mohammed, Edinburgh, 1923, p.xxii, Introduction)

(18) "In the Koran we have, beyond all doubt, the exact words of Mohammed without subtraction and without addition." (Bosworth Smith, Mohammed and Mohammedansim, p.21)

ଉପରେ ଅଧ୍ୟୟନ କରିଆସୁଛନ୍ତି । ଆମ ପ୍ରଚେଷ୍ଟାକୁ ଆମେ ଅତି କ୍ଷୁଦ୍ରଭାଗ ମଧ୍ୟରେ କେନ୍ଦ୍ରୀଭୂତ କରିଛୁ, କାରଣ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ଆମେ ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡ ବିଷୟରେ କଳ୍ପନା ନକରି କେବଳ ଏହାର ଆକାଶର କିଛି ଅଂଶକୁ ଦେଖିପାରୁଛୁ ।

ତେଣୁ ମୁଁ ଭାବୁଛି କୁର୍‌ଆନର ଅଧ୍ୟୟନ ଦ୍ୱାରା ଏବଂ ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦେବାଦ୍ୱାରା ମୁଁ ଭବିଷ୍ୟତରେ ବ୍ରହ୍ମାଣ୍ଡ ବିଷୟରେ ଅନୁସନ୍ଧାନ କରିବାପାଇଁ ପଥ ପାଇପାରିବି ।''[9]

ସମୁଦ୍ରବିଜ୍ଞାନୀ ପ୍ରଫେସର ଉଇଲିୟମ୍ ହେ କୁହନ୍ତି—

''ଏଇ ଧରଣର ସୂଚନା କୁର୍‌ଆନ ଭଳି ପ୍ରାଚୀନ ଗ୍ରନ୍ଥରେ ରହିଥିବା ମୋତେ ଭାରି କୌତୂହଳଜନକ ଲାଗୁଛି ଏବଂ ଏଗୁଡ଼ିକ ସେଠାକୁ କିପରି ଆସିଲା ଏହା ଜାଣିବାର ମୋ ପାଖରେ କୌଣସି ବାଟ ନାହିଁ । କିନ୍ତୁ ମୁଁ ଭାବୁଛି ଏହା ଅତିଶୟ କୌତୂହଳଜନକ ଯେ, ସେଗୁଡ଼ିକ ସେଥିରେ ଅଛି ଏବଂ ଏଭଳି କାର୍ଯ୍ୟ କୁର୍‌ଆନର ଅନେକ ଶ୍ଳୋକର ଅର୍ଥ ଆବିଷ୍କାର କରିବ ।''

କୁର୍‌ଆନର ରଚୟିତା କିଏ ବୋଲି ପ୍ରଶ୍ନ କରାଯିବାରୁ ପ୍ରଫେସର ହେ ଉତ୍ତର ଦେଲେ—

''ମୁଁ ଭାବୁଛି ଏହା ନିଶ୍ଚୟ ଐଶ୍ୱରୀୟ ସତ୍ତା ।''[10]

---

(9) "I say, I am very much impressed by finding true astronomical facts in Qur'an, and for us the modern astronomers have been studying very small piece of the universe. We concentrated our efforts for understanding of very small part. Because by using telescopes, we can see only very few parts of the sky without thinking about the whole universe. So by reading Qur'an and by answering to the questions, I think I can find my future way for investigation of the universe." (Dr. Yoshihide Kusan, Director of the National Astronomical Observatory, Tokyo, Japan)

(10) "I find it very interesting that this sort of information is in the ancient scriptures of the Holy Qur'an, and I have no way of knowing

କାନାଡ଼ାର ମାନିଟୋବା ବିଶ୍ୱବିଦ୍ୟାଳୟର ବୈଜ୍ଞାନିକ ଟି.ଭି.ଏନ୍. ପରସଦ କୁହନ୍ତି—

> ''ମୋର ମନେହୁଏ ଯେ ମୁହମ୍ମଦ ଜଣେ ଅତି ସାଧାରଣ ବ୍ୟକ୍ତି ଥିଲେ, ଯିଏ ପଢ଼ି ବା ଲେଖି ପାରୁନଥିଲେ ଏବଂ ପ୍ରକୃତରେ ନିରକ୍ଷର ଥିଲେ ।
>
> ଆମେ ୧୪୦୦ବର୍ଷ ପୂର୍ବକଥାର ଆଲୋଚନା କରୁଛୁ । ଆପଣ ଦେଖୁଛନ୍ତି ଯେ, ଜଣେ ନିରକ୍ଷର ବ୍ୟକ୍ତି ବିଜ୍ଞାନ ସମ୍ବନ୍ଧୀୟ ତଥ୍ୟଗୁଡ଼ିକ ବିଷୟରେ ଆଶ୍ଚର୍ଯ୍ୟଜନକ ରୂପେ ଅତି ନିର୍ଭୁଲ ଘୋଷଣା କରୁଛନ୍ତି ।
>
> ମୁଁ ନିଜେ ଜାଣିପାରୁ ନାହିଁ ଯେ ଏହା କେବଳ ଆକସ୍ମିକ ଭାବରେ କିପରି ସମ୍ଭବ (କାରଣ) ବହୁତ ନିର୍ଭୁଲ ତଥ୍ୟ ରହିଛି ଏବଂ ଡକ୍ଟର ମୁର୍‌ଙ୍କ ପରି ମୋର ଏଥିରେ ସମ୍ମତ ହେବାରେ କୌଣସି ଅସୁବିଧା ନାହିଁ ଯେ ତାଙ୍କର (ମୁହମ୍ମଦଙ୍କର) ବକ୍ତବ୍ୟଗୁଡ଼ିକ ଦୈବୀପ୍ରେରଣ ବା ଦୈବୀବାଣୀ ବଳରେ ଦିଆଯାଇଛି ।''[11]

---

where they would have come from. But I think it is extremely interesting that they are there and this work is going on to discover it, the meaning of some of the passages."

And when he was asked about the source of the Qur'an, he replied, "Well, I would think it must be the divine being." (William Hay, Professor of Oceanogprahy, University of Colorado, Boulder, Colorado, USA.)

[11] "It seems to me that Muhammad was a very ordinary man, he couldn't read, didn't know how to write, in fact he was an illiterate….

We're talking about 1400 years ago, you have some illiterate person making profound statements that are amazingly accurate, of a scientific nature...

## ମରିସ୍ ବୁକାଏଙ୍କ କୁର୍ଆନ ଉପରେ ଗବେଷଣା

ଡକ୍ଟର ମରିସ୍ ବୁକାଏ ପ୍ୟାରିସ୍ ବିଶ୍ୱବିଦ୍ୟାଳୟର ଫ୍ରେଞ୍ଚ ଏକାଡେମୀ ଅଫ୍ ମେଡ଼ିସିନ୍ର ଜଣେ ସଭ୍ୟ । କୁର୍ଆନରେ ଥିବା ଗୋଟିଏ ବାକ୍ୟ ପଢ଼ି ସେ ଆଶ୍ଚର୍ଯ୍ୟ ହୋଇଗଲେ । ଏହି ବାକ୍ୟଟିରେ ମିଶରର ଜଣେ ଦୂରାଚାରୀ ଶାସକର ଶବକୁ ସଂରକ୍ଷିତ ରଖିବାର ପ୍ରତିଶ୍ରୁତି ରହିଛି ।

> ''କିନ୍ତୁ ଆଜି ଆମ୍ଭେ ତୋ ଶରୀରକୁ ଉଦ୍ଧାର କରିବୁ ଯଦ୍ଦ୍ୱାରା ଏହା ତୋର ପରବର୍ତ୍ତୀ ଲୋକମାନଙ୍କ ପାଇଁ ଏକ ଶିକ୍ଷାର ପ୍ରତୀକ ହୋଇରହିବ ଏବଂ ଅଧିକାଂଶ ଲୋକ ଆମ୍ଭ ନିଦର୍ଶନଗୁଡ଼ିକ ପ୍ରତି (ଆଦୌ) ଧ୍ୟାନ ଦେଉନାହାନ୍ତି ।''

**(କୁର୍ଆନ, ୧୦ : ୯୨)**

ଫ୍ୟାରୋ (Pharaoh) ନାମକ ଏହି ଅତ୍ୟାଚାରୀ ଶାସକ ବିଷୟରେ ଉଭୟ କୁର୍ଆନ ଓ ବାଇବଲ୍ରେ ବର୍ଣ୍ଣନା କରାଯାଇଛି । ସେ ପ୍ରଜାମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର କରୁଥିଲା ଏବଂ ଈଶ୍ୱରଦୂତ ମହାମାନ୍ୟ ମୁସାଙ୍କୁ ଧରିବା ପାଇଁ ଯିବା ସମୟରେ ସମୁଦ୍ରରେ ବୁଡ଼ି ପ୍ରାଣ ହରାଇଥିଲା । କୁର୍ଆନ କହିଲା ଯେ, ବୁଡ଼ିଯାଇଥିବା ସତ୍ତ୍ୱେ ତା' ଶବ ସୁରକ୍ଷିତ ରହିବ । ସେହି ଫ୍ୟାରୋର ଶବ ବର୍ତ୍ତମାନ କାଏରୋ ମ୍ୟୁଜିୟମ୍ର ରୟାଲ ମମି ହଲ୍ରେ ସଂରକ୍ଷିତ ରହିଛି । ଡଃ ବୁକାଏ ଯେହେତୁ ଜଣେ ଖ୍ରୀଷ୍ଟିୟାନ୍ ଥିଲେ, ବାଇବଲ୍ରେ ଏହି ଘଟଣା ବିଷୟରେ ପଢ଼ିଥିଲେ । ସେ ଆଶ୍ଚର୍ଯ୍ୟ ହେଲେ ଯେ, କୁର୍ଆନ ଈଶ୍ୱରଦୂତ ମହାମାନ୍ୟ ମୁସାଙ୍କ କାଳର ଜଣେ ଶାସକର ଶବ ବିଷୟରେ ଏଭଳି କଥା କିପରି କହିପାରେ ? ତେଣୁ ସେ ନିଜେ ଯାଇ କାଏରୋ ମ୍ୟୁଜିୟମ୍ରେ ଥିବା ଫ୍ୟାରୋର ଶବକୁ ପରୀକ୍ଷା କଲେ । କୁର୍ଆନର ସତ୍ୟତା

---

I personally can't see how this could be mere chance, there are too many accuracies and like Dr. Moore, I have no difficulty in my mind reconciling that this is a divine inspiration or revelation which lead him to these statements." (Prof. T.V.N.Persaud, Professor of Anatomy, and Professor of Paediatrics and Child Health, University of Manitoba, Winnipeg, Manitoba, Canada) [Video clips of the scientists can be watched at the website www.Islam-guide.com]

ଦ୍ୱାରା ସେ ଏଭଳି ପ୍ରଭାବିତ ହେଲେ ଯେ ପଚାଶବର୍ଷ ବୟସରେ ସେ ଆରବୀ ଭାଷା ଶିଖି କୁର୍‌ଆନର ସମ୍ପୂର୍ଣ୍ଣ ଅଧ୍ୟୟନ କଲେ । ତା'ପରେ ସେ ଇସଲାମ ଉପରେ ଗବେଷଣା କରି ୧୯୭୬ରେ ନିଜର ପ୍ରସିଦ୍ଧ ପୁସ୍ତକ "The Bible, The Quran and Science" ଲେଖିଲେ । ଏହି ପୁସ୍ତକରେ ଡଃ ବୁକାଏ କୁର୍‌ଆନ ଓ ବାଇବଲ୍ ଉପରେ ବିଭିନ୍ନ ଦିଗରୁ ବିଶେଷକରି ବୈଜ୍ଞାନିକ ଦୃଷ୍ଟିକୋଣରୁ ତୁଳନାତ୍ମକ ଆଲୋଚନା କରିଛନ୍ତି ଏବଂ ନିଜ ପୁସ୍ତକରେ ସେ ଏହା ପ୍ରମାଣିତ କରିଛନ୍ତି ଯେ କୁର୍‌ଆନ ସମ୍ପୂର୍ଣ୍ଣ ବିଜ୍ଞାନସମ୍ମତ ଏବଂ ଏଥିରେ କୌଣସି ବୈଜ୍ଞାନିକ ତ୍ରୁଟି ନାହିଁ । ଡକ୍ଟର ବୁକାଏ କହନ୍ତି—

> ''ପ୍ରଥମେ ମୋର ଇସଲାମରେ ବିଶ୍ୱାସ ନଥିଲା । ମୁଁ ସମ୍ପୂର୍ଣ୍ଣ ଖୋଲା ମନରେ ଏବଂ ସମ୍ପୂର୍ଣ୍ଣ ନିରପେକ୍ଷ ଭାବେ (କୁର୍‌ଆନର) ଲେଖାଗୁଡ଼ିକୁ ପରୀକ୍ଷା କରିବା ଆରମ୍ଭ କଲି ।''
>
> ''କୁର୍‌ଆନକୁ ପଢ଼ିବା ଏବଂ ଏହାର ସମାଲୋଚନାମୂଳକ ଅଧ୍ୟୟନ ପାଇଁ ଦରକାର ହେଉଥିବା ବିଭିନ୍ନ ଭାଷ୍ୟଗୁଡ଼ିକ ସାହାଯ୍ୟରେ ଏହାର ପ୍ରତିଟି ବାକ୍ୟକୁ ବିଶ୍ଳେଷଣ କରିବା ମୋର ପ୍ରଥମ ଲକ୍ଷ୍ୟ ଥିଲା ।''
>
> ''ବାଇବଲ୍‌ରେ ବଡ଼ ଧରଣର ତ୍ରୁଟି ରହିଥିବାବେଳେ ମୁଁ କୁର୍‌ଆନରେ ଗୋଟିଏ ହେଲେ ତ୍ରୁଟି ଖୋଜିପାଇଲି ନାହିଁ । ଟିକିଏ ରହି ମୁଁ ନିଜକୁ ପଚାରିଲି—ଯଦି ଜଣେ ମଣିଷ କୁର୍‌ଆନର ସ୍ରଷ୍ଟା ହୁଏ, ତେବେ କିପରି ସେ ସପ୍ତମ ଶତାବ୍ଦୀରେ ଏଭଳି ତଥ୍ୟଗୁଡ଼ିକ ଲେଖିଥିବ ଯାହାକି ଆଜିର ଆଧୁନିକ ବିଜ୍ଞାନଦ୍ୱାରା ସମ୍ପୂର୍ଣ୍ଣ ସମର୍ଥିତ ?
>
> ମୁହମ୍ମଦଙ୍କୁ କୁର୍‌ଆନର ଲେଖକ ବୋଲି ମନେ କରୁଥିବା ଲୋକମାନଙ୍କର ଅନୁମାନ ଯଥାର୍ଥ ନୁହେଁ ବୋଲି ଉପରୋକ୍ତ ପର୍ଯ୍ୟବେକ୍ଷଣ ପ୍ରମାଣିତ କରୁଛି । ଜଣେ ନିରକ୍ଷର ବ୍ୟକ୍ତି କିପରି ସମଗ୍ର ଆରବ ସାହିତ୍ୟ ଜଗତରେ ସାହିତ୍ୟିକ ମୂଲ୍ୟବୋଧ ଭିତ୍ତିକ ଏକ ମହାନ ଗ୍ରନ୍ଥ ଲେଖିଦେଇପାରିବ ? କିପରି ସେ ବୈଜ୍ଞାନିକ ପ୍ରକୃତିର କୌଣସି ସତ୍ୟର ଘୋଷଣା କରିପାରିବ,

ଯାହାକି ସେ ସମୟରେ କୌଣସି ମଣିଷ ଦ୍ୱାରା ଜାଣିବା ସମ୍ଭବ ନଥିଲା ଏବଂ ତାହା ମଧ୍ୟ ବିଷୟବସ୍ତୁରେ ଥରେ ହେଲେ ସାମାନ୍ୟ ତ୍ରୁଟି ନ କରି ?''(12)

କୁର୍‌ଆନରେ ଥିବା ଯେଉଁ ବୈଜ୍ଞାନିକ ତଥ୍ୟଗୁଡ଼ିକ ସମ୍ପର୍କରେ ଆମେ ଆଲୋଚନା କଲୁ, ସେଗୁଡ଼ିକୁ ନିର୍ଭୁଲ ଭାବରେ ଜାଣିବା ସପ୍ତମ ଶତାବ୍ଦୀର କୌଣସି ମଣିଷ ପକ୍ଷରେ ସମ୍ଭବ ନଥିଲା । ଏହା ସ୍ପଷ୍ଟ ରୂପେ ପ୍ରମାଣିତ କରେ ଯେ, ପବିତ୍ର କୁର୍‌ଆନ ମହାମାନ୍ୟ ମୁହମ୍ମଦଙ୍କ ନିଜ ସୃଷ୍ଟି ନୁହେଁ, ଏହା ଈଶ୍ୱରବାଣୀ ।



(12) "In the beginning I had no faith whatsoever in Islam. I began this examination of the texts with a completely open mind and a total objectivity…."

"My first goal was to read the Qur'an and to make a sentence-by-sentence analysis of it with the help of various commentaries essential to critical study….."

"Whereas monumental errors are to be found in the Bible, I could not find a single error in the Qur'an. I had to stop and ask myself : if a man was the author of the Qur'an, how could he have written facts in the Seventh century A.D that today are shown to be in keeping with modern scientific knowledge ?..."

"The above observation makes the hypothesis advanced by those who see Muhammad as the author of the Qur'an quite untenable. How could a man, from being illiterate, become the most important author, in terms of literary merit, in the whole of Arabic literature? How could he then pronounce truths of a scientific nature that no other human being could possibly have developed at the time, and all this without once making the slightest error in his pronouncements on the subject ? ( Dr. Maurice Bucaille, The Bible, the Qur'an and Science, Idara Isha'at-e-Diniyat, New Delhi, 2002, pp.119-125)

## ଷଷ୍ଠ ଅଧ୍ୟାୟ

# ମହାମାନ୍ୟ ମୁହମ୍ମଦଙ୍କର ଭବିଷ୍ୟବାଣୀ

ଈଶ୍ୱରଙ୍କର ମହାମାନ୍ୟ ପ୍ରତିନିଧିଗଣ ନିଜ ପରିଚୟର ଯେଉଁ ପ୍ରମାଣ ଦିଅନ୍ତି, ସେଗୁଡ଼ିକ ମଧ୍ୟରୁ ଭବିଷ୍ୟବାଣୀ ଅନ୍ୟତମ । ସେମାନେ ଅତୀତ ଓ ଭବିଷ୍ୟତର ଘଟଣାବଳୀ ସମ୍ପର୍କରେ ନିର୍ଭୁଲ ତଥ୍ୟ ଦିଅନ୍ତି । କୌଣସି ଗଣନା ବା ଜ୍ୟୋତିଷବିଦ୍ୟା ଦ୍ୱାରା ନୁହେଁ, ବରଂ ସେମାନେ ସ୍ୱୟଂ ଈଶ୍ୱରଙ୍କର ପ୍ରବକ୍ତା ହୋଇଥିବାରୁ ତାଙ୍କରି ଦ୍ୱାରା ଆଦିଷ୍ଟ ହୋଇ କୁହନ୍ତି । ତେଣୁ ସେମାନଙ୍କର ଭବିଷ୍ୟତବାଣୀ ମିଥ୍ୟା ହେବା ସମ୍ଭବ ନୁହେଁ । ଅନ୍ୟ ଈଶ୍ୱରଦୂତମାନଙ୍କ ପରି ମହାମାନ୍ୟ ମୁହମ୍ମଦ ମଧ୍ୟ ଅନେକ ଘଟଣା ବିଷୟରେ କହିଥିବାର ଇତିହାସରେ ଉଲ୍ଲେଖ ଅଛି, ଯାହାକି ପରବର୍ତ୍ତୀ ସମୟରେ ସତ୍ୟ ପ୍ରମାଣିତ ହୋଇଥିଲା । ଏଠାରେ ଆମେ କେତୋଟି ପ୍ରସିଦ୍ଧ ଘଟଣାବଳୀ ଉପରେ ଆଲୋଚନା କରିବା ।

### ନିଜର ଓ ନିଜ ଝିଅଙ୍କର ମୃତ୍ୟୁ

ଜୀବନର ଅନ୍ତିମ ସମୟରେ ମହାମାନ୍ୟ ମୁହମ୍ମଦ ଭୀଷଣ ଭାବରେ ଅସୁସ୍ଥ ହେଲେ । ଏହି ଅସୁସ୍ଥତା ବେଳେ ସେ ନିଜର ଓ ନିଜ ଝିଅ ହଜରତ ଫାତିମାଙ୍କ ମୃତ୍ୟୁ ବିଷୟରେ ଭବିଷ୍ୟବାଣୀ କରିଥିଲେ । ମହାମାନ୍ୟ ଧର୍ମଦୂତଙ୍କ ପତ୍ନୀ ହଜରତ ଆଇଶା (ର.ଅ.) କୁହନ୍ତି—ମହାମାନ୍ୟ ଈଶ୍ୱରଦୂତ ରୋଗଶଯ୍ୟାରେ ଝିଅ ହଜରତ ଫାତିମାଙ୍କୁ ଡକାଇ ତାଙ୍କ କାନରେ ଗୁପ୍ତ ଭାବରେ କିଛି କହିଲେ, ଯାହା ଶୁଣି ଫାତିମା କାନ୍ଦିବାକୁ ଲାଗିଲେ । ତେଣୁ ମହାମାନ୍ୟ ଧର୍ମଦୂତ ପୁଣିଥରେ ତାଙ୍କ କାନରେ କିଛି କହିଲେ । ଏଥର ହଜରତ ଫାତିମା ହସିଲେ । ହଜରତ ଆଇଶା କୁହନ୍ତି ଯେ, ମୁଁ ଫାତିମାଙ୍କୁ ଏହାର କାରଣ ପଚାରିଲି । ଫାତିମା ଉତ୍ତର ଦେଲେ, ‘‘ମହାମାନ୍ୟ ଈଶ୍ୱରଦୂତ ପ୍ରଥମଥର ତାଙ୍କ କାନରେ କହିଲେ ଯେ, ସେ ଏହି ରୋଗରେ ମୃତ୍ୟୁବରଣ କରିବେ ଯାହା ଶୁଣି ମୁଁ କାନ୍ଦିବାକୁ ଲାଗିଲି । ଏହା ଦେଖି ପୁଣି ସେ ମୋ କାନରେ

କହିଲେ ଯେ, ତାଙ୍କ ମୃତ୍ୟୁପରେ ତାଙ୍କ ପରିବାରରୁ ସର୍ବପ୍ରଥମେ ମୁଁ ଦେହତ୍ୟାଗ କରି ତାଙ୍କ ସହ ଭେଟ ହେବି । ତେଣୁ ମୁଁ ହସିଲି ।’’[1]

ଏହି ଭବିଷ୍ୟବାଣୀ ସତ୍ୟ ହେଲା । କିଛିଦିନ ପରେ ମହାମାନ୍ୟ ମୁହମ୍ମଦ ଦେହତ୍ୟାଗ କଲେ ଏବଂ ଏହାର ପ୍ରାୟ ଛ’ମାସ ପରେ ତାଙ୍କ ଝିଅ ହଜରତ ଫାତିମାନଙ୍କ ମୃତ୍ୟୁ ହେଲା ।

ନିଜର ବା ନିଜ ସନ୍ତାନର ମୃତ୍ୟୁ ବିଷୟରେ ଏଭଳି ନିର୍ଭୁଲ ଭବିଷ୍ୟବାଣୀ ସାଧାରଣ ମଣିଷ ପକ୍ଷରେ ସମ୍ଭବ ନୁହେଁ ।

## ଯୁଦ୍ଧରେ ନିହତ ହେବାକୁ ଥିବା ଶତ୍ରୁ

ମକ୍କାରୁ ମଦିନା ସ୍ଥାନାନ୍ତର ହେବାର ବର୍ଷକ ପରେ ମକ୍କାର ଶତ୍ରୁପକ୍ଷଙ୍କ ସହ ମହାମାନ୍ୟ ମୁହମ୍ମଦଙ୍କର ପ୍ରଥମ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧ ବଦର ନାମକ ଏକ ସ୍ଥାନରେ ହୋଇଥିଲା ଏବଂ ଏଥିରେ ମାତ୍ର ୩୧୩ଜଣ ମୁସଲମାନଙ୍କ ଦ୍ୱାରା ୧୦୦୦ ସଶସ୍ତ୍ର ମକ୍କାବାସୀ ଶୋଚନୀୟ ଭାବେ ପରାସ୍ତ ହୋଇଥିଲେ । ଏହି ଯୁଦ୍ଧ ହେବା ପୂର୍ବରୁ ମହାମାନ୍ୟ ମୁହମ୍ମଦ ଶତ୍ରୁପକ୍ଷର କେତେକ ସୈନ୍ୟଙ୍କ ମୃତ୍ୟୁ ବିଷୟରେ ଭବିଷ୍ୟବାଣୀ କରିଥିଲେ । ସେ କେବଳ ଯୁଦ୍ଧରେ ନିହତ ହେବାକୁ ଥିବା ଶତ୍ରୁର ନାଁ କହିନଥିଲେ, ବରଂ କେଉଁ ବ୍ୟକ୍ତି କେଉଁ ଜାଗାରେ ନିହତ ହୋଇ ପଡ଼ିବ ଗୋଟି ଗୋଟି କରି ଯେ ଜାଗାଗୁଡ଼ିକ ଦେଖାଇଦେଇଥିଲେ ଏବଂ ଯୁଦ୍ଧରେ ଅବିକଳ ସେହି ସ୍ଥାନମାନଙ୍କରେ ସେହି ଲୋକମାନେ ନିହତ ହୋଇଥିଲେ ।[2]

## ଇଥିଓପିଆ ରାଜାଙ୍କ ମୃତ୍ୟୁ

ଇଥିଓପିଆର ଜଣେ ରାଜା ‘ନଜାସୀ’ ପ୍ରଥମେ ଖ୍ରୀଷ୍ଟିୟାନ ଥିଲେ ଏବଂ ପରେ ଇସ୍‌ଲାମ ଗ୍ରହଣ କରିଥିଲେ । ‘ନଜାସୀ’ ତାଙ୍କର ଉପାଧି ଥିଲା । ତାଙ୍କର ମୃତ୍ୟୁ ହୋଇଗଲା । ସୁଦୂର ଆଫ୍ରିକାରେ ମୃତ୍ୟୁବରଣ କରିଥିବା ଏହି ଶାସକଙ୍କ ମୃତ୍ୟୁଦିନ ହିଁ ମହାମାନ୍ୟ ମୁହମ୍ମଦ ମଦିନାରେ ନିଜ ସାଥିମାନଙ୍କୁ

---

(1) ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ ୮୨୦

(2) ସହୀ ମୁସଲିମ, ୩ୟ ଖଣ୍ଡ, ହଦିସ ସଂ. ୧୭୭୯

ତାଙ୍କ ମୃତ୍ୟୁର ଖବର ଦେଲେ ଏବଂ ତାଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ସମବେତ ପ୍ରାର୍ଥନା କଲେ ଯାହାକୁ ଆରବୀରେ 'ଜନାଜା' କୁହନ୍ତି ।[3]

## ଇରାନ ଓ ରୋମ ବିଜୟ

ଇରାନର ଶାସକଙ୍କୁ 'ଖୁସ୍ରୁ' ଏବଂ ରୋମର ଶାସକଙ୍କୁ 'ସିଜର' କୁହାଯାଉଥିଲା । ଏହି ଦୁଇଟି ଦେଶ ସେତେବେଳେ ଦୁଇଟି ମହାଶକ୍ତି ଥିଲେ । ମହାମାନ୍ୟ ମୁହମ୍ମଦଙ୍କ ତିରୋଧାନର ଅନେକ ବର୍ଷ ପରେ ଏହି ଦୁଇ ଦେଶ ମୁସଲମାନମାନଙ୍କ ଅଧୀନକୁ ଆସିଥିଲା । କିନ୍ତୁ ନିଜ ଜୀବନକାଳରେ ମହାମାନ୍ୟ ମୁହମ୍ମଦ ମୁସଲମାନମାନଙ୍କ ଦ୍ୱାରା ଆରବ, ରୋମ ଏବଂ ପର୍ସିଆ (ଇରାନ) ବିଜୟର ଭବିଷ୍ୟବାଣୀ କରିଥିଲେ ।[4]

ଏହାବ୍ୟତୀତ ସେ ଏହା ମଧ୍ୟ ଭବିଷ୍ୟବାଣୀ କରିଥିଲେ ଯେ, ଖୁସ୍ରୁ ପରାଜିତ ହେବାପରେ ଆଉ କେହି 'ଖୁସ୍ରୁ' ହେବେନାହିଁ ଏବଂ 'ସିଜର୍'ର ମଧ୍ୟ ପତନ ହେବ ଏବଂ ତା'ପରେ ରୋମରେ କେହି ସିଜର୍ ହେବେନାହିଁ ।[5]

ପ୍ରକୃତରେ ତାଙ୍କ କଥା ସତ୍ୟ ହେଲା । ଇରାନ ଓ ରୋମ ସାମ୍ରାଜ୍ୟର ପତନ ଘଟିଲା ଏବଂ ଏହାପରଠାରୁ କୌଣସି ଶାସକ ଖୁସ୍ରୁ ବା ସିଜର ଉପାଧି ଧାରଣ କରିନାହାନ୍ତି । ଏହା ବ୍ୟତୀତ ମହାମାନ୍ୟ ମୁହମ୍ମଦ ଇଜିପ୍ଟ ବିଜୟ[6] ଏବଂ ସିରିୟା ଓ ଇରାକ ବିଜୟ ସମ୍ପର୍କରେ ମଧ୍ୟ ଭବିଷ୍ୟବାଣୀ କରିଥିଲେ ।[7] ଯାହା ପରେ ସତ୍ୟ ପ୍ରମାଣିତ ହୋଇଥିଲା ।

## ଉୱେଶ କରନୀଙ୍କ ମଦିନା ଆଗମନ

ୟେମେନ୍‌ରୁ ଉୱେଶ କରନୀ ନାମକ ଜଣେ ଧର୍ମନିଷ୍ଠ ବ୍ୟକ୍ତି ଭବିଷ୍ୟତରେ ମଦିନା ଆସିବେ ବୋଲି ନିଜ ସାଥିମାନଙ୍କୁ ମହାମାନ୍ୟ ମୁହମ୍ମଦ କହିଥିଲେ । ସେ ତାଙ୍କର ପରିଚୟ ଦେଇ କହିଥିଲେ ଯେ, ଏହି ବ୍ୟକ୍ତିଜଣଙ୍କର

(3) ସହୀ ବୁଖାରୀ, ୨ୟ ଖଣ୍ଡ, ହଦିସ ୩୩୭, ୪୦୬, ୪୧୨

(4) ସହୀ ମୁସଲିମ, ୪ର୍ଥ ଖଣ୍ଡ, ହଦିସ ସଂ. ୨୯୦୦

(5) ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ ୮୧୫, ୮୧୬; ସହୀ ମୁସଲିମ, ୪ର୍ଥଖଣ୍ଡ, ହଦିସ୍ ସଂ. ୨୯୧୭

(6) ସହୀ ମୁସଲିମ, ୪ର୍ଥ ଖଣ୍ଡ, ହଦିସ ସଂ. ୨୫୪୩

(7) ସହୀ ମୁସଲିମ, ୩ୟ ଖଣ୍ଡ, ହଦିସ ସଂ. ୧୩୮୮

ଧଳାଛଉ ଥିଲା, ଯାହା ପ୍ରାୟ ଭଲ ହୋଇଯାଇଛି; କିନ୍ତୁ ଏହା ଗୋଟିଏ ମୁଦ୍ରା ଆକାରରେ ରହିଯାଇଛି । ସେହି ବ୍ୟକ୍ତିଜଣକ ଅତ୍ୟନ୍ତ ମାତୃଭକ୍ତ ଏବଂ ନିଜ ମାଆଙ୍କର ଖୁବ୍ ସେବା କରନ୍ତି । ସେ ଏତେ ଧର୍ମପ୍ରାଣ ଯେ, ଯଦି ସେ ଈଶ୍ୱରଙ୍କ ନାମ ନେଇ କୌଣସି କଥା କୁହନ୍ତି, ତେବେ ଈଈଶ୍ୱର ତାଙ୍କ କଥା ମିଥ୍ୟା ହେବାକୁ ଦେବେନାହିଁ ।[8]

ଏହି ଘଟଣା ମହାମାନ୍ୟ ମୁହମ୍ମଦଙ୍କ ଅନେକ ବର୍ଷ ପରେ ହଜରତ ଉମରଙ୍କ ଶାସନ କାଳରେ ସତ୍ୟ ପ୍ରମାଣିତ ହୋଇଥିଲା ।

## ହଜରତ ଉମର ଓ ଉସ୍‌ମାନ

ଥରେ ଉହଦ ପାହାଡ଼ ଉପରେ ହଜରତ ଅବୁବକ୍କର, ଉସ୍‌ମାନ ଓ ଉମର୍‌ଙ୍କ ସହ ଥିବା ସମୟରେ ମହାମାନ୍ୟ ମୁହମ୍ମଦ ଭବିଷ୍ୟବାଣୀ କରିଥିଲେ ଯେ ହଜରତ ଉମର୍ ଏବଂ ହଜରତ ଉସ୍‌ମାନ ଶହୀଦ ହେବେ, ଅର୍ଥାତ୍ ତାଙ୍କୁ ଶତ୍ରୁମାନେ ହତ୍ୟା କରିବେ ।[9] ଉଭୟେ ହଜରତ ଉସ୍‌ମାନ ଏବଂ ଉମର୍ ଖଲିଫା ଥିବା ସମୟରେ ଶତ୍ରୁମାନଙ୍କ ଦ୍ୱାରା ନିହତ ହେଲେ ।

## ନାତି ହଜରତ ହସନ

ଥରେ ମହାମାନ୍ୟ ମୁହମ୍ମଦ ନିଜ ନାତି ହଜରତ ହସନ୍‌ଙ୍କ ବିଷୟରେ ଭବିଷ୍ୟବାଣୀ କରି କହିଥିଲେ ଯେ, ତାଙ୍କଦ୍ୱାରା ଦୁଇଟି ମୁସଲମାନ ଗୋଷ୍ଠୀ ମଧ୍ୟରେ ବୁଝାମଣା ହେବ ।[10] ପ୍ରକୃତରେ ହଜରତ ଅଲୀଙ୍କ ପରେ ତାଙ୍କ ପୁତ୍ର ହଜରତ ହସନ୍ ପ୍ରାୟ ୬ମାସ ଖଲିଫା ଥିଲେ ଏବଂ ଦୁଇ ଗୋଷ୍ଠୀ ମଧ୍ୟରେ ଏକ ଭୟଙ୍କର ଯୁଦ୍ଧକୁ ଏଡ଼ାଇ ଦେବାପାଇଁ ସେ ହଜରତ ଅମିର୍ ମୁଆୱିୟାଙ୍କ ସହ ସନ୍ଧି କରିଥିଲେ ।

## ଖିଲାଫତ କାଳର ଅବଧି

ଖିଲାଫତ୍ ଅର୍ଥ ଈଶ୍ୱରଦୂତଙ୍କର ପ୍ରତିନିଧିତ୍ୱ । ଇସ୍‌ଲାମର ଖଲିଫାମାନଙ୍କର ଶାସନକାଳ ୩୦ବର୍ଷ ହେବ ବୋଲି ମହାମାନ୍ୟ ମୁହମ୍ମଦ କହିଥିଲେ ।[11]

---

(8) ସହୀ ମୁସଲିମ, ୪ର୍ଥ ଖଣ୍ଡ, ହଦିସ ସଂ. ୨୫୪୨

(9) ସହୀ ବୁଖାରୀ, ୫ମ ଖଣ୍ଡ, ହଦିସ ସଂ. ୪୬

(10) ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ ସଂ. ୮୨୩

(11) ଅବୁ ଦାଉଦ, ହଦିସ ସଂ. ୪୦ : ୪୬୨୯

ଏହା ସତ୍ୟ ହେଲା । ମହାମାନ୍ୟ ମୁହମ୍ମଦଙ୍କ ପରେ ହଜରତ ଅବୁବକର ୨ବର୍ଷ, ତା'ପରେ ହଜରତ ଉମର୍ ୧୦ବର୍ଷ, ହଜରତ ଉସ୍‌ମାନ ୧୨ବର୍ଷ, ଏବଂ ହଜରତ ଅଲୀ ୬ବର୍ଷ ଶାସନ କରିଥିଲେ ।

## ମୋତା ଯୁଦ୍ଧର ଧାରା ବିବରଣୀ

ମହାମାନ୍ୟ ମୁହମ୍ମଦ ବସରାର ଶାସକଙ୍କ ନିକଟକୁ ଜଣେ ଦୂତଙ୍କ ହାତରେ ଗୋଟିଏ ଚିଠି ପଠାଇଥିଲେ । କିନ୍ତୁ ଦୂତ ବସରା ପହଞ୍ଚିବା ପୂର୍ବରୁ ମୋତା ନାମକ ଏକ ସ୍ଥାନରେ ରୋମ ସମ୍ରାଟଙ୍କ ଦ୍ୱାରା ନିଯୁକ୍ତ ସେଠାର ଶାସକ ମହାମାନ୍ୟ ମୁହମ୍ମଦଙ୍କ ଦୂତଙ୍କୁ ଗିରଫ କରି ତାଙ୍କୁ ହତ୍ୟା କରିଦେଲେ । ଏଭଳି ଅନ୍ୟାୟର ଖବର ଶୁଣିବାପରେ ମହାମାନ୍ୟ ମୁହମ୍ମଦ ୩୦୦୦ ସୈନ୍ୟ ସହିତ ହଜରତ ଜୈଦ ବିନ୍ ହାରିସ୍‌ଙ୍କୁ ସେନାପତି ନିଯୁକ୍ତ କରି ଉଦ୍ଧତ ରୋମୀୟ ପ୍ରଶାସକଙ୍କୁ ଉଚିତ ଶିକ୍ଷା ଦେବାପାଇଁ ପଠାଇଲେ । ମୌତା ନାମକ ସ୍ଥାନରେ ୩୦୦୦ ମୁସଲମାନଙ୍କର ପ୍ରାୟ ଏକଲକ୍ଷ ରୋମୀୟ ସେନାଙ୍କ ସହ ଘମାଘୋଟ ଯୁଦ୍ଧ ହେଲା ।

ସେଠି ମୋତାରେ ଯୁଦ୍ଧ ଚାଲିଥିବାବେଳେ ଏଠି ମଦିନାରେ ମହାମାନ୍ୟ ମୁହମ୍ମଦ ଦୈବବାଣୀ ବଳରେ ଯୁଦ୍ଧର ବିବରଣୀ ପ୍ରଦାନ କରିଥିଲେ । ସେ ଲୋକମାନଙ୍କୁ ଏକତ୍ରିତ କରି କହିଲେ ଯେ, ହଜରତ ଜୈଦ୍ ପତାକା ଧରି ଯୁଦ୍ଧ ପରିଚାଳନା କଲେ ଏବଂ ସେ ଶହୀଦ ହୋଇଗଲେ, ତା'ପରେ ହଜରତ ଜାଫର୍ ନେତୃତ୍ୱ ନେଲେ, ସେ ମଧ୍ୟ ଶହୀଦ ହୋଇଗଲେ, ତା'ପରେ ଅବ୍ଦୁଲ୍ଲାହ ବିନ୍ ରଓ୍ୱାହ ଯୁଦ୍ଧର ନେତୃତ୍ୱ ନେଲେ ଏବଂ ସେ ମଧ୍ୟ ଶହୀଦ ହୋଇଗଲେ । ଏହା କହିଲାବେଳେ ମହାମାନ୍ୟ ମୁହମ୍ମଦଙ୍କର ଆଖି ଛଳଛଳ ହୋଇ ଉଠିଥିଲା । ତା'ପରେ ସେ କହିଲେ ଯେ, ଶେଷରେ ହଜରତ ଖାଲିଦ୍ ବିନ୍ ଓ୍ୱଲିଦ ଯୁଦ୍ଧର ନେତୃତ୍ୱ ନେଲେ ଏବଂ ବିଜୟୀ ହେଲେ ।[12] ସେତେବେଳେ ଯୁଦ୍ଧର ଫଳାଫଳର ଖବର ମଦିନରେ ପହଞ୍ଚି ନଥିଲା ।

ଏହି ଭବିଷ୍ୟତବାଣୀଗୁଡ଼ିକ ମଧ୍ୟ ପ୍ରମାଣିତ କରୁଛି ଯେ, ମହାମାନ୍ୟ ମୁହମ୍ମଦ ଈଶ୍ୱରଙ୍କର ଆଦିଷ୍ଟପୁରୁଷ ଥିଲେ ।



---

[12] ସହୀ ବୁଖାରୀ, ୨ୟ ଖଣ୍ଡ, ହଦିସ୍ ୩୩୮; ୫ମ ଖଣ୍ଡ, ହଦିସ ୫୬୧, ୧୦୨; ୪ର୍ଥ ଖଣ୍ଡ, ହଦିସ୍ ୨୯୮, ୮୨୪

**ସପ୍ତମ ଅଧ୍ୟାୟ**

# ମହାମାନ୍ୟ ମୁହମ୍ମଦ ପ୍ରକୃତରେ ଜଣେ ଈଶ୍ୱରଦୂତ

ଏହି ମହାନ ବ୍ୟକ୍ତିଙ୍କ ସମ୍ପର୍କରେ ପୂର୍ବ ଅଧ୍ୟାୟଗୁଡ଼ିକରେ ବିଶଦ ଭାବରେ ଆମେ ଆଲୋଚନା କଲୁ ଏବଂ ବିଭିନ୍ନ ଦିଗରୁ ତାଙ୍କର ଦାବିକୁ ପରୀକ୍ଷା ମଧ୍ୟ କଲୁ। ଏହାଦ୍ୱାରା ଆମେ ଯାହା ଜାଣିଲୁ ତାର ସାର ମର୍ମ ହେଉଛି ଯେ–

- ସେ ଜଣେ ନିରାଟ ସତ୍ୟବାଦୀ ବ୍ୟକ୍ତି ଥିଲେ ।
- ତାଙ୍କ ଚରିତ୍ର ଅତି ଉଚ୍ଚକୋଟୀର ଥିଲା ।
- ବ୍ୟବହାର ଅତ୍ୟନ୍ତ ମଧୁର ଥିଲା ।
- ସମାଜ ତାଙ୍କୁ ଜଣେ ସଚ୍ଚୋଟ ଓ ବିଶ୍ୱସନୀୟ ବ୍ୟକ୍ତି ରୂପେ ଗ୍ରହଣ କରିଥିଲା ।
- ସେ ଜଣେ ବାଦାନ୍ୟ, ନ୍ୟାୟପ୍ରିୟ ଓ ପରୋପକାରୀ ବ୍ୟକ୍ତି ଥିଲେ ।
- ସେ ଅତି ସରଳ ଜୀବନ ଯାପନ କରୁଥିଲେ ।
- ତାଙ୍କର ଧନ-ସମ୍ପତ୍ତିର ମୋହ ବା ପ୍ରତିଷ୍ଠା ଓ ପ୍ରତିପତ୍ତିର ଉଚ୍ଚାଭିଳାଷ ନଥିଲା ।
- ଇତିହାସର ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତି ରୂପେ ସେ ମାନ୍ୟତା ଲାଭ କରିଛନ୍ତି ।
- ସେ କୁର୍‌ଆନର ସ୍ରଷ୍ଟା ନୁହନ୍ତି ବରଂ ଏହାର ମାଧ୍ୟମ ।
- ସେ ଅନେକ ଅଲୌକିକ କାର୍ଯ୍ୟ କରିଛନ୍ତି ।
- ତାଙ୍କର ଭବିଷ୍ୟତବାଣୀଗୁଡ଼ିକ ସତ୍ୟ ପ୍ରମାଣିତ ହୋଇଛି ।

- ପୂର୍ବରୁ ଆସିଥିବା ସମସ୍ତ ଧର୍ମଗ୍ରନ୍ଥ ତଥା ସବୁ ଈଶ୍ୱରଦୂତମାନଙ୍କର ସେ ସମର୍ଥନ କରିଛନ୍ତି ।
- ସେ କୌଣସି ନୂତନ ଧର୍ମ ପ୍ରତିଷ୍ଠା କରି ନାହାନ୍ତି, ବରଂ ପୂର୍ବ ଦିବ୍ୟଧର୍ମର ପୁନଃସ୍ଥାପନା କରିଛନ୍ତି ଏବଂ ସେଥିରେ ପଶି ଆସିଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସଗୁଡ଼ିକୁ ଦୂର କରିଛନ୍ତି ।
- ଅନ୍ୟମାନଙ୍କୁ ଦେଉଥିବା ଉପଦେଶଗୁଡିକୁ ସେ ନିଜେ ମଧ୍ୟ ପାଳନ କରିଛନ୍ତି ।
- ସେ କେବେହେଲେ ନିଜକୁ ଈଶ୍ୱର ବୋଲି କହି ନାହାନ୍ତି, ବରଂ ସର୍ବଦା ଈଶ୍ୱରଙ୍କର ଜଣେ ପ୍ରତିନିଧି ବୋଲି ପରିଚୟ ଦେଇଛନ୍ତି ।

ଈଶ୍ୱରଦୂତମାନଙ୍କର ଯେଉଁ ବୈଶିଷ୍ଟ୍ୟ ଥାଏ, ସେ ସବୁଗୁଡ଼ିକ ମହାମାନ୍ୟ ମୁହମ୍ମଦଙ୍କର ରହିଛି । ତେଣୁ ତାଙ୍କ ସପକ୍ଷରେ ଯଥେଷ୍ଟ ପ୍ରମାଣ ପାଇବା ପରେ ତାଙ୍କ କଥାକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । କୌଣସି ବିଚାରଶୀଳ ବ୍ୟକ୍ତି ତାଙ୍କୁ ଈଶ୍ୱରଙ୍କର ପ୍ରତିନିଧି ରୂପେ ସ୍ୱୀକାର କରିବାକୁ ଦ୍ୱିଧାବୋଧ କରିବ ନାହିଁ । ଏହି କାରଣରୁ ବିଶ୍ୱର ଶହେ ସତାବନ କୋଟିରୁ ଊର୍ଦ୍ଧ୍ୱ ନରନାରୀ ତାଙ୍କୁ ଈଶ୍ୱରଙ୍କର ପ୍ରତିନିଧି ରୂପେ ଗ୍ରହଣ କରିଛନ୍ତି ।

## ପାଶ୍ଚାତ୍ୟ ଆରୋପଗୁଡ଼ିକ ମିଥ୍ୟା

ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ପ୍ରତାରଣା ବା ପ୍ରବଞ୍ଚନାର ଆରୋପ ଅସହିଷ୍ଣୁ ପାଶ୍ଚାତ୍ୟ ଲଖକମାନଙ୍କର ସଙ୍କୀର୍ଣ୍ଣ ମନୋଭାବର ପରିଚୟ ଦିଏ । ହୀନ ଉଦ୍ଦେଶ୍ୟ ସାଧନ ପାଇଁ ୟୁରୋପୀୟ ଲେଖକମାନଙ୍କ ଦ୍ୱାରା ଏପ୍ରକାର କୁତ୍ସାରଟନା କରାଯାଇଛି ବୋଲି ଅନେକ ଐତିହାସିକ ଓ ବିଦ୍ୱାନ୍ ମତବ୍ୟକ୍ତ କରିଛନ୍ତି । କୁତ୍ସାରଟନା ଏତେ ପରିମାଣରେ କରାଗଲା ଯେ 'ତିନି ତୁଣ୍ଡରେ ଛେଳି କୁକୁର' ପରି ଏକ ପବିତ୍ର ଧର୍ମ ବଦନାମ ହୋଇଗଲା । କିନ୍ତୁ ବିଚାରଶୀଳ ବ୍ୟକ୍ତିମାନଙ୍କୁ ଏହା ତିଳେମାତ୍ର ପ୍ରଭାବିତ କରିପାରି ନାହିଁ । ଅନେକ ପ୍ରସିଦ୍ଧ ଐତିହାସିକ ଓ ବିଦ୍ୱାନ୍ ମହାମାନ୍ୟ ମୁହମ୍ମଦଙ୍କ ପ୍ରତି କରାଯାଇଥିବା ମିଥ୍ୟାରୋପଗୁଡ଼ିକର ଦୃଢ଼ସ୍ୱରରେ ଖଣ୍ଡନ କଲେ । ଆସନ୍ତୁ, ସେମାନଙ୍କ ମୁହଁରୁ ଶୁଣିବା ।

**ଥୋମାସ୍ କାର୍ଲାଇଲ୍** ମିଥ୍ୟାରୋପଗୁଡ଼ିକୁ ଖଣ୍ଡନ କରି କୁହନ୍ତି—

''ମୁହମ୍ମଦଙ୍କ ବିଷୟରେ ଆମର ବର୍ତ୍ତମାନର କଳ୍ପନା ଯେ ସେ ଜଣେ ଚକ୍ରାନ୍ତକାରୀ ପ୍ରବଞ୍ଚକ, ଜଣେ ନକଲି ଅବତାର ଥିଲେ ଆଉ ତାଙ୍କର ଧର୍ମ ଏକ ଚରମ ନିର୍ବୋଧତା ଏବଂ ମୁର୍ଖ ବୈଦ୍ୟର ଚିକିତ୍ସା ଭଳି ଥିଲା, ଏବେ ଲୋକମାନଙ୍କ ପାଇଁ ଗ୍ରହଣଯୋଗ୍ୟ ନୁହେଁ । ଏହି ବ୍ୟକ୍ତିଜଣକର ଚାରିପଟେ ଗଦା କରାଯାଇଥିବା ତାହା ମିଛଗୁଡ଼ିକ ଆମପାଇଁ କେବଳ ଅପମାନ ବ୍ୟତୀତ ଆଉ କିଛି ନୁହେଁ ।''[1]

''ଏହି ପ୍ରବଞ୍ଚନାର ପରିକଳ୍ପନା ଆମ ପାଇଁ ପୂରାପୂରି ଅଗ୍ରହଣୀୟ, ଅସହ୍ୟ ଏବଂ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ ଯୋଗ୍ୟ ।''[2]

''ଜଣେମାତ୍ର ଲୋକ ଆଉ ସାରା ବିଶ୍ୱ ବିଶ୍ୱାସ କରିଗଲା ! ଜଣେ ଲୋକ ସମସ୍ତଙ୍କ ବିରୁଦ୍ଧରେ ? ଗୋଟାଏ ତରବାରୀ ଧରି ସେ ଧର୍ମ ପ୍ରଚାର କଲେ ବୋଲି କହିଦେଲେ ତାଙ୍କର କିଛି ହେବନାହିଁ ।''[3]

''(କୁହାଯାଉଛି ଯେ) ଜଣେ ନକଲି ମଣିଷ ଗୋଟାଏ ଧର୍ମ ପ୍ରତିଷ୍ଠା କରିଦେଲେ ? କାହିଁକି ? ଜଣେ ନକଲି ମିସ୍ତ୍ରୀ ଯଦି

---

[1] THOMAS CARLYLE, Heros and Hero Worship : "Our current hypothesis about Mahomet, that he was a scheming impostor, a Falsehood incarnate, that his religion is a mere mass of quackery and fatuity, begins really to be now untenable to any one. The lies, which well-meaning zeal has heaped round this man, are disgraceful to ourselves only." (p.61)

[2] "We will leave it altogether, this impostor hypothesis, as not credible; not very tolerable even, worthy chiefly of dismissal by us." (Ibid. p.77)

[3] "One man alone of the whole world believes it; there is one man against all men. That he take a sword, and try to propagate with that, will do little for him.."(Ibid.p.84)

ବାଲି, ମାଟି ଓ ସିମେଣ୍ଟ ଆଦିର ଗୁଣଧର୍ମ ବା ଭାଗମାପ ନ ଜାଣିଛି, ତେବେ ଇଟାର ଘରଟିଏ ଗଢ଼ିପାରିବ ନାହିଁ । ସେ ଗୋଟାଏ ମାଟି ସ୍ତୂପ ହିଁ ତିଆରି କରିବ ଯାହା ୧୮୦ ନିୟୁତ ଲୋକଙ୍କୁ ସ୍ଥାନ ଦେବାପାଇଁ ବାରଶହ ବର୍ଷ ତିଷ୍ଠି ପାରିବ ନାହିଁ । ଏହା ଭାଙ୍ଗି ପଡ଼ିବ ।''[4]

**ଗଡ୍ ଫ୍ରେ ହିଗିନ୍ସ**ଙ୍କ ବିଚାରଶୈଳୀ ନିଆରା । ସେ ଏକ ନ୍ୟାୟସଙ୍ଗତ ଯୁକ୍ତିବାଢ଼ି କୁହନ୍ତି—

''ମୁହମ୍ମଦଙ୍କର ଚରିତ୍ର ଆକଳନ କଲାବେଳେ ତାଙ୍କୁ ଜଣେ ଶଠ, କପଟୀ, ମିଥ୍ୟାବାଦୀ, ଖଳନାୟକ ଓ ଜଣେ ନୀତିହୀନ ବ୍ୟକ୍ତି ବୋଲି ଭାବିବାର ଆମର ଅଧିକାର ନାହିଁ । ବରଂ ସେ ଜଣେ ସକ୍ରେଟିସ୍ ଥିଲେ ବୋଲି ଧରିନେବାକୁ ହେବ ।

ଯେତେବେଳେ ମୁଁ ତାଙ୍କ ପ୍ରତି ହୋଇଥିବା ଏହି ଆରୋପଗୁଡ଼ିକ ବିଷୟରେ ଶୁଣେ, ସଙ୍ଗେ ସଙ୍ଗେ ମୁଁ ତାଙ୍କର ସାଧାରଣ ବ୍ୟବହାର ଓ ଚରିତ୍ରର ଆଶ୍ରୟ ନିଏ, ଯାହାର ସେ ତାଙ୍କ ଆଦ୍ୟ ଓ ମଧ୍ୟ ଜୀବନରେ ଅଧିକାରୀ ଥିଲେ ବୋଲି ଉଭୟ ପକ୍ଷ ସ୍ୱୀକାର କରନ୍ତି । ମୁଁ ଦେଖେ ତାହା ସମ୍ପୂର୍ଣ୍ଣ ନିଖୁଣ । ପୁଣି ମୁଁ ଏହାକୁ ଏକ ଛଳନା ବୋଲି କିପରି ବିଶ୍ୱାସ କରିନେବି ? ମୋତେ ମାନିବାକୁ କୁହାଯାଉଛି ଯେ, ପଚିଶି ବର୍ଷ ବୟସରୁ ଚାଳିଶି ବର୍ଷ ବୟସ ପର୍ଯ୍ୟନ୍ତ ମୁହମ୍ମଦ ଏହି ନାଟକ କଲେ । ପୁଣି ୨୫ବର୍ଷ ବୟସ ପୂର୍ବରୁ ତାଙ୍କ ଜୀବନ ଥିଲା ସଦାଚାରର ଏକ ଶିକ୍ଷ ଏବଂ ତାଙ୍କର ସାଧୁତା ସବୁପ୍ରକାର ସନ୍ଦେହରୁ ଊର୍ଦ୍ଧ୍ୱରେ ଥିଲା ।''[5]

---

[4] "A false man found a religion? Why, a false man cannot build a brick house ! If he do not know and follow truely the properties of mortar, burnt clay and what else he works in, it is no house that he makes, but a rubbish-heap. It will not stand for twelve centuries, to lodge a hundred-and-eighty millions; it will fall straight-way."(Ibid.p.62)

[5] GODFRAY HIGGINS, "An Apology For The Life And Character Of The Celebrated Prophet Of Arabia : "In estimating the character

ଇସ୍‌ଲାମକୁ ଅଯଥାରେ ଅପମାନିତ କରାଯାଉଛି ବୋଲି ମତଦେଇ ସେ କୁହନ୍ତି—

''ଅତି ଲଜ୍ୟାଜନକ ଅନ୍ଧବିଶ୍ୱାସ ଯୋଗୁଁ ସତ୍ୟ ଓ ପବିତ୍ର ଇସ୍‌ଲାମକୁ ଅପମାନିତ କରାଯାଉଛି ।''[6]

**ଉଇଲିୟମ୍ ମଣ୍ଟଗୋମେରୀ ୱାଟ୍** କୁହନ୍ତି—

''ଉତ୍ସଗୁଡ଼ିକୁ ତନ୍ନ ତନ୍ନ କରି ପରୀକ୍ଷା କଲେ ସ୍ପଷ୍ଟ ହୋଇଯାଏ ଯେ, ମୁହମ୍ମଦଙ୍କର ଯେଉଁ କାର୍ଯ୍ୟକଳାପଗୁଡ଼ିକ ଆଧୁନିକ ପାଶ୍ଚାତ୍ୟ ଜଗତ ଦ୍ୱାରା ଗ୍ରହଣୀୟ ହେଲାନାହିଁ, ସେଗୁଡ଼ିକ ତାଙ୍କର ସମକାଳୀନ ଲୋକମାନଙ୍କ ସମାଲୋଚନାର ଲକ୍ଷ୍ୟ ନଥିଲା । ପରିଣାମ ଭୟରେ ଅନ୍ଧବିଶ୍ୱାସପୂର୍ଣ୍ଣ ପକ୍ଷପାତିତା ଯୋଗୁଁ ସେମାନେ ତାଙ୍କର କେତେକ କାର୍ଯ୍ୟକଳାପକୁ ସମାଲୋଚନା କରୁଥିଲେ ।

ମୁହମ୍ମଦଙ୍କ ବିରୋଧରେ ଗୋଟିଏ ସାଧାରଣ ଅଭିଯୋଗ ହେଉଛି ଯେ, ସେ ଜଣେ ପ୍ରବଞ୍ଚକ ଥିଲେ ଯିଏ ନିଜର ଉଚ୍ଚାଭିଳାଷ ଓ ବାସନାର ପରିତୃପ୍ତି ପାଇଁ ଗୋଟିଏ ଧର୍ମର ପ୍ରଚାର କଲେ, ଯାହାକୁ ସେ ନିଜେ ଭୁଲ ବୋଲି ଜାଣିଥିଲେ । ଏଭଳି ନିଷ୍ଠାହୀନତା ଯାହା ସମ୍ପର୍କରେ ଆମେ (ପୃ-୧୭ରେ) ଆଲୋଚନା

---

of Mohamed, we have no more right to assume that he was a most consummate rogue, hypocrite, liar, and villain, totally destitute of all principle, than we have to assume that he was a Socrates. And when I hear him accused of being the former, I immediately have recourse to the general character and conduct which both parties agree he maintained in the early and middle part of his life. I find this to have been irreproachable. Then am I to believe at once that this was mere hypocrisy? Fourteen or fifteen years together, I am told to believe, that he carried this farce on—from twenty-five years old to forty. That until he was twenty-five years of age his life was that of meritorious industry: his integrity unsuspected. (pp.25-26)

(6) The religion of purity and truth, the foundation of Mohamedism, is yet disgraced by the most degrading superstitions."(Ibid.p.43)

କଲୁ, ଇସ୍‌ଲାମ ଧର୍ମର ପ୍ରଗତିକୁ ସମ୍ପୂର୍ଣ୍ଣ ଦୁର୍ବୋଧ କରିଦେଉଛି । ଆଜିଠାରୁ ଶହେବର୍ଷ ତଳେ ଥୋମାସ୍ କାର୍ଲାଇଲ୍ 'ବୀର'ମାନଙ୍କ ବିଷୟରେ ନିଜ ଭାଷଣରେ ଏହି କଥାଟିକୁ ଅତି ଦୃଢ଼ ଭାବରେ ଉପସ୍ଥାପନ କରିଥିଲେ ଏବଂ ସେବେଠାରୁ ବିଦ୍ୱାନ୍‌ମଣ୍ଡଳୀ ଦ୍ୱାରା ଏହା ଅଧିକ ଗ୍ରହଣୀୟ ହେବାରେ ଲାଗିଛି । ମୁହମ୍ମଦ ଓ ତାଙ୍କ ମିଶନ୍ ପ୍ରତି ଅଗାଧ ବିଶ୍ୱାସ ହିଁ ଏହା ସ୍ପଷ୍ଟ କରିଦିଏ ଯେ, ମକ୍କାରେ କଷ୍ଟ ଓ ନିର୍ଯ୍ୟାତନା ସହିବା ପାଇଁ ସେ କିଭଳି ସଦା ପ୍ରସ୍ତୁତ ଥିଲେ । ଯେତେବେଳେ ଧର୍ମନିରପେକ୍ଷତା ଦୃଷ୍ଟିକୋଣରୁ ମଧ୍ୟ ସଫଳତାର କୌଣସି ଆଶା ନଥିଲା, ସଚ୍ଚୋଟତା ବିନା କିପରି ସେ ଅବୁବକର ଏବଂ ଉମରଙ୍କ ଭଳି ସଚ୍ଚୋଟ ଓ ଦୃଢ଼ ଚରିତ୍ରର ମଣିଷମାନଙ୍କର ଭକ୍ତି ଓ ଆନୁଗତ୍ୟ ଜୟ କରିପାରି ଥାଆନ୍ତେ ? ଈଶ୍ୱରବାଦୀମାନଙ୍କ ପାଇଁ ଆଉ ଗୋଟିଏ ପ୍ରଶ୍ନ ହେଉଛି ଯେ, ଈଶ୍ୱର କିପରି ଇସ୍‌ଲାମ ପରି ଏକ ମହାନ ଧର୍ମକୁ ମିଥ୍ୟା ଓ ପ୍ରବଞ୍ଚନା ଆଧାରରେ ଅଗ୍ରଗତି କରିବା ପାଇଁ ଅନୁମତି ଦେଲେ ? ତେଣୁ ମୁହମ୍ମଦ ସଚ୍ଚୋଟ ବୋଲି କହିବାର ଦୃଢ଼ ଆଧାର ରହିଛି । ଯଦିବା ତାଙ୍କଦ୍ୱାରା କୌଣସି ଦୋଷତ୍ରୁଟି ହୋଇଯାଇଛି, ତେବେ ତାଙ୍କର ଏହି ଭୁଲ ସ୍ୱେଚ୍ଛାକୃତ ମିଥ୍ୟା ବା ପ୍ରବଞ୍ଚନା ଯୋଗୁଁ ହୋଇନାହିଁ ।

ମୁହମ୍ମଦଙ୍କ ସମୟର ଦୃଷ୍ଟିକୋଣରୁ ଦେଖିଲେ ତାଙ୍କ ପ୍ରତି ହୋଇଥିବା ପ୍ରତାରଣା ଓ ଇନ୍ଦ୍ରିୟପରାୟଣତାର ଅଭିଯୋଗ ଆଦୌ ଗ୍ରହଣୀୟ ହୋଇନପାରେ । ତାଙ୍କର ସମସାମୟିକ ଲୋକମାନେ ତାଙ୍କଠାରେ କୌଣସି ପ୍ରକାର ନୈତିକ ତ୍ରୁଟି ଦେଖିନାହାନ୍ତି । ଅନ୍ୟ ପକ୍ଷରେ ପାଶ୍ଚାତ୍ୟ ଲେଖକମାନଙ୍କଦ୍ୱାରା କେତେକ କାର୍ଯ୍ୟକଳାପର ସମାଲୋଚନାରୁ ପ୍ରମାଣିତ ହୁଏ ଯେ, ମୁହମ୍ମଦଙ୍କର ନୈତିକ ମାନ ତାଙ୍କ ସମୟର ଲୋକମାନଙ୍କ ଅପେକ୍ଷା ଉଚ୍ଚତର ଥିଲା । ତାଙ୍କ ସମୟରେ ଓ ତାଙ୍କ ପିଢ଼ିରେ ସେ ଥିଲେ ଜଣେ ସମାଜ ସଂସ୍କାରକ ଏବଂ ନୈତିକତା କ୍ଷେତ୍ରର ସଂସ୍କାରକ ମଧ୍ୟ । ସେ ଗୋଟିଏ ନୂତନ ସାମାଜିକ ନିରାପତ୍ତା ବ୍ୟବସ୍ଥା ଓ ଗୋଟିଏ ନୂତନ ପାରିବାରିକ ଢ଼ାଞ୍ଚା ଗଠନ କଲେ

ଏବଂ ଦୁଇଟିଯାକ ବ୍ୟବସ୍ଥା ପୂର୍ବପ୍ରଚଳିତ ପରମ୍ପରାଠାରୁ ଢେର୍ ଉନ୍ନତ ଥିଲା । ଯାଯାବରମାନଙ୍କର ସର୍ବୋତ୍ତମ ନୈତିକତାକୁ ନେଇ ଅନେକ ଜାତିର ଲୋକମାନଙ୍କ ପାଇଁ ସେ ଗୋଟିଏ ଆଧାର ଗଢ଼ିଲେ । ଏଭଳି କାର୍ଯ୍ୟ ଜଣେ ପ୍ରତାରକ ବା ଇନ୍ଦ୍ରିୟାସକ୍ତ ବ୍ୟକ୍ତି କରେନାହିଁ ।

ଏପର୍ଯ୍ୟନ୍ତ ମୁହମ୍ମଦଙ୍କ ସମ୍ପର୍କରେ ଐତିହାସିକ ଦୃଷ୍ଟିକୋଣରୁ ଆଲୋଚନା କରାଗଲା । ତଥାପି ଗୋଟିଏ ବିଶ୍ୱଧର୍ମର ପ୍ରତିଷ୍ଠାତା ରୂପେ ସେ ଏକ ତାତ୍ତ୍ୱିକ ବିଚାର ଆବଶ୍ୟକ କରନ୍ତି । ଉଦାହରଣ ସ୍ୱରୂପ, ଇମିଲ୍ ବୃନର୍ ତାଙ୍କର (ମୁହମ୍ମଦଙ୍କର) ଈଶ୍ୱରଦୂତର ଦାବିକୁ ବିଚାର କରି ମତ ଦିଅନ୍ତି ଯେ, ଯଦିଓ ଦୈବବାଣୀର ପ୍ରକୃତ ତଥ୍ୟ ଅନୁସାରେ ଏହା ଯୁକ୍ତିଯୁକ୍ତ ମନେ ହେଉନାହିଁ, କିନ୍ତୁ ସ୍ୱୀକାର କରନ୍ତି ଯେ ଯଦି ମୁହମ୍ମଦ ଆରବର ଜଣେ ପ୍ରାକ୍-ଖ୍ରୀଷ୍ଟିୟାନ ଧର୍ମଦୂତ ହୋଇଥାଆନ୍ତେ, ତେବେ ଈଶ୍ୱରଙ୍କର ପ୍ରକଟିତ ଜ୍ଞାନ ପାଇଁ ପଥ ପ୍ରସ୍ତୁତ କରିଥିବା ଧର୍ମଦୂତମାନଙ୍କ ତାଲିକାରୁ ତାଙ୍କୁ ବାଦ୍ ଦେବା ଏତେ ସହଜ ହୋଇ ନ ଥାଆନ୍ତା ।''[7]

---

[7] WILLIAM MONTGOMERY WATT, Prophet and Statesman, London : "When the sources are closely scrutinized, it is clear that those of Muhammad's actions which are disapproved by the modern West were not the object of the moral criticism of his contemporaries. They criticized some of his acts, but their motives were superstitious prejudice or fear of the consequences." (p.233)

"One of the common allegations against Muhammad is that he was an impostor, who to satisfy his ambition and his lust propagated religious teachings which he himself knew to be false. Such insincerity, it was argued above (p.17), makes the development of the Islamic religion incomprehensible This point was first vigorously made over a hundred years ago by Thomas Carlyle in his lectures on Heroes, and it has since been increasingly accepted by scholars. Only a profound belief in himself and his mission explains Mohammad's

**ଆର୍ଥର୍ ଗ୍ଲିନ୍ ଲିଓନାର୍ଡ** ଇସ୍‌ଲାମର ଧର୍ମଦୂତଙ୍କ ସମ୍ପର୍କରେ କୁହନ୍ତି—

‘‘ତେଣୁ କାର୍ଲାଇଲ୍ ଦୃଢ଼ ମନ୍ତବ୍ୟ ଦେଇଛନ୍ତି—ଜଣେ ନକଲି ଲୋକ ଗୋଟାଏ ଧର୍ମ ପ୍ରତିଷ୍ଠା କରିଦେଲେ । କାହିଁକି ଜଣେ ନକଲି ମିସ୍ତ୍ରୀ ଇଟାର ଘରଟିଏ ମଧ୍ୟ ଗଢ଼ିପାରିବ ନାହିଁ । ମୁଁ ପୂର୍ବରୁ କହିଛି ଯେ ମୁହମ୍ମଦ ନକଲି ବା ମିଥ୍ୟାବାଦୀ ନୁହନ୍ତି ।’’

---

readiness to endure hardship and persecution during the Meccan period when from a secular point of view there was no prospect of success. Without sincerity how could he have won the allegiance and even devotion of men of strong and upright character like Abu-Bakr and ‘Umar ? For the theist there is the further question how God could have allowed a great religion like Islam to develop on a basis of lies and deceit. There is thus a strong case for holding that Muhammad was sincere. If in some respect he was mistaken, his mistakes were not due to deliberate lying and imposture.” (p.232)

“From the standpoint of Muhammad’s time, then, the allegations of treachery and sensuality cannot be maintained. His contemporaries did not find him morally defective in any way. On the contrary, some of the acts criticized by the modern Westerner show that Muhammad’s standards were higher than those of his time. In his day and generation he was a social reformer, even a reformer in the sphere of morals. He created a new system of social security and a new family structure, both of which were a vast improvement on what went before. By taking what was best in the morality of the nomad and adapting it for settled communities, he established a religious and social framework for the life of many races of men. That is not the work of a traitor or an old lecher.” (p.234)

“So far Muhammad has been described from the point of view of the historian. Yet as the founder of a world-religion he also demands a theological judgement. Emil Brunner, for example, considers his claim to be a prophet, holds that it * does not seem to be in any way justified by the actual content of the revelations ‘, but admits that,’ had Mohammed been a pre-Christian prophet of Arabia, it would not be easy to exclude him from the ranks of the messengers who

''ଆରବ ଦୁନିଆରେ ଅବତରଣ କରିଥିବା ଇସ୍‌ଲାମ କୌଣସି ମିଥ୍ୟା ବା ଅପ୍ରାକୃତିକ ଆବେଗରେ ନୁହେଁ, ବରଂ ଗଭୀର ନିଷ୍ଠାପରତା ଓ ଆନ୍ତରିକତା ସହ ଉଭୟ ଆଧ୍ୟାତ୍ମିକ ଓ ବସ୍ତୁବାଦୀ ଦୃଷ୍ଟିକୋଣରୁ ନିଜର ଦୃଢ଼ତ୍ୱ ପ୍ରମାଣିତ କରିସାରିଛି, ଯାହା ବର୍ତ୍ତମାନର ଫଳାଫଳ କହେ । ଏହା କହିଲେ ଯଥେଷ୍ଟ ହେବ ଯେ, ଗୋଟିଏ ଧର୍ମପନ୍ଥା ଯାହାର ଅନୁଗାମୀମାନଙ୍କର ସଂଖ୍ୟା ୨୫୦,୦୦୦,୦୦୦ରୁ ଅଧିକ ବା ମାନବଜଗତର ଶତକଡ଼ା ୧୫ଭାଗ (ଅଧିକ ହୋଇପାରେ) କେବଳ ଏକ ସୁସ୍ଥ ଓ ତେଜସ୍ୱୀ ବୀଜରୁ ହିଁ ଉତ୍ପନ୍ନ ହୋଇପାରେ ଏବଂ ଏହି ବୀଜଟି ମାନବିକ ସମବେଦନା ତଥା ଆଶା ଓ ଆଶ୍ୱାସନାର ସ୍ଫୁଲିଙ୍ଗ ଦ୍ୱାରା ପ୍ରତିପାଳିତ ହୋଇ ଜୀବନ୍ତ ରହିଛି ।''[8]

**ଜନ ଡାଭେନ୍‌ପୋର୍ଟ** ନିଜ ପୁସ୍ତକର ମୁଖବନ୍ଧରେ କହିଛନ୍ତି—

''ମୁହମ୍ମଦଙ୍କ ଇତିହାସକୁ ମିଥ୍ୟା ଅପବାଦ ଓ ଅନୁଦାର ଅଭିଯୋଗଗୁଡ଼ିକରୁ ମୁକ୍ତ କରିବା ପାଇଁ ତଥା ମାନବଜାତିର

---

prepared the way for the revelation (Revelation and Reason,,translated by Olive Wyon, London, 1947, pp.230) (pp.237-238)

[8] MAJOR ARTHUR GLYN LEONARD, Islam, Her Moral And Spiritual Value : So Carlyle pithily observes: “A false man found a religion ? Why a false man cannot build a brick house !” I have already shown that Mohammed was not false”. (pp.31-32)

“Launched upon the world of Arabia in no false and unreal spirit, but with the spirit of grim sincerity and earnestness, Islam has proved its stability spiritually and materially, the present result of which speaks for itself. It is enough to say that a creed whose followers now number over 250,000,000, or some 15 per cent, of the human race (an under rather than an over-estimate), could have sprung from a healthy and vigorous seed only a seed that has been nourished and kept alive by the vital spark of human sympathies, hopes and aspirations.” (p.32)

ଜଣେ ଅତି ମହାନ ହିତକାରୀ ରୂପେ ତାଙ୍କର ଦାବିର ଯଥାର୍ଥତା ପ୍ରତିପାଦନ କରିବା ପାଇଁ ଏହି ପୁସ୍ତକ ହେଉଛି ଏକ ବିନମ୍ର ଆନ୍ତରିକପୂର୍ଣ୍ଣ ଉଦ୍ୟମ । ଯେଉଁ ଲେଖକମାନେ ନିଜର ଅନ୍ଧ ଆବେଗର ବଶବର୍ତ୍ତୀ ହୋଇ ଏକ ଈଶ୍ୱରଙ୍କ ଉପାସନାର ପୁନଃସ୍ଥାପକଙ୍କ ନିଷ୍କଳଙ୍କ ଛବି ପ୍ରତି ଆକ୍ରମଣ କରିଛନ୍ତି, ସେମାନେ ଯେ ଈଶ୍ୱର ଶିଖାଇଥିବା ବାଦାନ୍ୟତାର ଭାବାବେଗ ଦ୍ୱାରା ଆଦୌ ପ୍ରଭାବିତ ହୋଇନାହାନ୍ତି, ତାହା ନୁହେଁ, ସେମାନେ ଉଚିତ ନ୍ୟାୟ କରିବାରେ ମଧ୍ୟ ଭୁଲ୍ କରିଛନ୍ତି ।''[9]

ଐତିହାସିକ **ଷ୍ଟେନ୍‌ଲି ଲେନ୍‌ପୁଲ** ମହାମାନ୍ୟ ମୁହମ୍ମଦଙ୍କ ବିରୁଦ୍ଧରେ କରାଯାଇଥିବା ଅଭିଯୋଗଗୁଡ଼ିକୁ ଦୃଢ଼ଭାବେ ଖଣ୍ଡନ କରିଛନ୍ତି—

''ୟୁରୋପୀୟ ଜୀବନୀ ଲେଖକମାନଙ୍କ ଦ୍ୱାରା ମୁହମ୍ମଦଙ୍କ ଜୀବନର ଅଧିକାଂଶ ଘଟଣାବଳୀକୁ ବିକୃତ କରାଯାଇଛି ଏବଂ ହୀନ ଉଦ୍ଦେଶ୍ୟ ସାଧନ ପାଇଁ ତାଙ୍କପ୍ରତି ମିଥ୍ୟାରୋପ କରାଯାଇଛି ।''[10]

ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ନିର୍ଦ୍ଦୟତାର ଆରୋପ ବିରୁଦ୍ଧରେ ଯୁକ୍ତି ଉପସ୍ଥାପନ କରି ସେ କୁହନ୍ତି—

---

[9] JOHN DAVENPORT, "An apology for Mohammed and the Koran : "The present work is an humble but earnest endeavour to free the history of Mohammed from false accusations and illiberal imputations, and to vindicate his just claim to be regarded as one of the greatest benefactors of mankind. The writers who, misguided by a blind zeal, have thus assailed the fair fame of the Restorer of the Worship of the UNITY, have not only shown themselves to be wholly uninfluenced by the spirit of that charity so strongly and emphatically inculcated by the Saviour himself, but have also erred in judgement …(Preface)

[10] STANLEY LANE-POOLE, Studies in a Mosque : "Many of the events of Mohammad's life have been distorted and credited with ignoble motives by European biographers;… (p.76)

''ତାଙ୍କ ପ୍ରତି ନିର୍ଦ୍ଦୟତା, ଇନ୍ଦ୍ରିୟପରାୟଣତା ଓ ନିଷ୍ଠାହୀନତାର ଆରୋପ କରାଯାଇଛି ଏବଂ ତାଙ୍କୁ ଜଣେ ରକ୍ତପିପାସୁ, ସ୍ୱେଚ୍ଛାଚାରୀ, ବିଳାସୀ ଓ ପ୍ରବଞ୍ଚକ କୁହାଯାଇଛି । ନିର୍ଦ୍ଦୟତାର ଆରୋପ ପ୍ରାୟ ବିଚାରଯୋଗ୍ୟ ନୁହେଁ । ମୁଁ ୟହୁଦୀମାନଙ୍କର ଦଣ୍ଡ କଥା କହିସାରିଛି, ଯାହା ଅଭିଯୋଗର ଭିତ୍ତିଭୂମି ପ୍ରସ୍ତୁତ କରେ । ବଦର୍ ଯୁଦ୍ଧ ପରେ ଯୁଦ୍ଧବନ୍ଦୀମାନଙ୍କ ପ୍ରତି ମୁହମ୍ମଦଙ୍କ ବ୍ୟବହାର ଆମେ ଦେଖିବା ଉଚିତ । ଆମେ ଦେଖିବା ଉଚିତ ମଦିନାର ଶତ୍ରୁମାନଙ୍କ ପ୍ରତି ତାଙ୍କର ଧୈର୍ଯ୍ୟ ଓ ସହନଶୀଳତା, ଲୋକମାନଙ୍କ ପ୍ରତି ତାଙ୍କର ଭଦ୍ରୋଚିତ ବ୍ୟବହାର, ଛୋଟପିଲା ଓ ମୂକ ପଶୁପକ୍ଷୀଙ୍କ ପ୍ରତି ତାଙ୍କର ସ୍ନେହ ଏବଂ ସର୍ବୋପରି ବିନା ରକ୍ତପାତରେ ତାଙ୍କର ମକ୍କାରେ ପ୍ରବେଶ ଏବଂ ଦେଖିବା ଉଚିତ ଯେ ମକ୍କାର ଯେଉଁ ଶତ୍ରୁମାନେ ଦୀର୍ଘ ୧୮ବର୍ଷ କାଳ ତାଙ୍କୁ ନାନାପ୍ରକାର ଲାଞ୍ଛନା ଓ ନିର୍ଯ୍ୟାତନା ଦେଇଆସିଥିଲେ ଏବଂ ତାଙ୍କ ସହିତ ଯୁଦ୍ଧ କରିଥିଲେ, ସେମାନଙ୍କୁ କିପରି ସେ ସମ୍ପୂର୍ଣ୍ଣ ରାଜକ୍ଷମା ଦେଇଦେଲେ । ଏ କଥାଗୁଡ଼ିକ ପ୍ରମାଣିତ କରୁଛି ଯେ ମୁହମ୍ମଦଙ୍କ ସ୍ୱଭାବରେ ନିର୍ଦ୍ଦୟତାର କୌଣସି ଚିହ୍ନବର୍ଣ୍ଣ ନଥିଲା ।''[11]

ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ବିଳାସୀ ଓ ଇନ୍ଦ୍ରିୟପରାୟଣତାର ଅଭିଯୋଗକୁ ଖଣ୍ଡନ କରି ଲେନପୁଲ୍ କୁହନ୍ତି—

---

(11) "He has been accused of cruelty, sensuality, and insincerity; he has been called a bloodthirsty tyrant, a voluptuary, and an impostor. The charge of cruelty scarcely deserves consideration. I have already spoken of the punishment of the Jews, which forms the ground of the accusation. One has but to refer to Mohammad's conduct to the prisoners after the battle of Bedr, to his patient tolerance towards his enemies at Medina, his gentleness to his people, his love of children and the dumb creation, and above all, his bloodless entry into Mekka, and the complete amnesty he gave to those who had been his bitter enemies during eighteen years of insult and persecution and finally open war, to show that cruelty was no part of Mohammad's nature." (Ibid.pp.76-77)

''ମୁହମ୍ମଦ ବିଳାସୀ ଥିଲେ କହିବା ଭୁଲ । ଜୀବନର ଶେଷ ସମୟ ପର୍ଯ୍ୟନ୍ତ ନିଜ ଦୈନନ୍ଦିନ ଜୀବନରେ ସେ ଭୋଗିଥିବା ଦୁଃଖକଷ୍ଟ, ଶୋଇବା ପାଇଁ ତାଙ୍କର ଟାଣ ପଟିର ବିଛଣା, ତାଙ୍କର ମୋଟା ବଗଡ଼ା ଖାଦ୍ୟ, ସ୍ୱଇଚ୍ଛାରେ ଚାକର ପରି ତାଙ୍କର ଛୋଟ ଛୋଟ ଘରକାମ, ସର୍ବୋତ୍କୃଷ୍ଟ ଶବ୍ଦରେ ତାଙ୍କୁ ଜଣେ 'ବିଳାସୀ' ନୁହେଁ, ବରଂ ଜଣେ 'ବୈରାଗୀ ସନ୍ନ୍ୟାସୀ' ପ୍ରମାଣିତ କରେ ।''(12)

ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ଘୋର ଅବିଚାର ହୋଇଛି ବୋଲି ଅଭିଯୋଗ କରି ସେ କହିଛନ୍ତି—

''ନିଶ୍ଚିତ ଭାବରେ ମୁହମ୍ମଦଙ୍କ ଚରିତ୍ର ପ୍ରତି ଘୋର ଅବିଚାର କରାଯାଇଛି ।''(13)

ଐତିହାସିକ **ଏମ୍.ଏନ୍. ରାୟ** ଏକ ଭିନ୍ନ ଯୁକ୍ତି ଉପସ୍ଥାପନ କରିଛନ୍ତି । ଏଥିରେ ସନ୍ଦେହ ନାହିଁ ଯେ, ଆମ ଭାରତୀୟମାନଙ୍କର ଧର୍ମୀୟ ବୁଝାମଣା ଓ ସହିଷ୍ଣୁତା ସାରା ବିଶ୍ୱରେ ଅତୁଳନୀୟ । ଧର୍ମ ବିଷୟରେ ସେମାନଙ୍କର ପସନ୍ଦ ଭିନ୍ନ ଭିନ୍ନ ଥିଲେ ସୁଦ୍ଧା ସମସ୍ତେ ଗୋଟିଏ ପରିବାର ଭଳି ବସବାସ କରନ୍ତି । ସେମାନେ ଅନ୍ୟର ଧର୍ମବିଶ୍ୱାସକୁ ସମାଲୋଚନା କରି ତା' ଭାବନାକୁ ଆଘାତ କରନ୍ତି ନାହିଁ । ମୁସଲମାନମାନେ ତ ଆଦୌ କରନ୍ତି ନାହିଁ । କୌଣସି ମୁସଲମାନ ମହାମାନ୍ୟ ଯୀଶୁ, ମୁସା, ଶ୍ରୀକୃଷ୍ଣ, ରାମଚନ୍ଦ୍ର, ବୁଦ୍ଧଦେବ, ମହାବୀର ବା ଗୁରୁ ନାନକଙ୍କ ପ୍ରତି କୌଣସି ଅସମ୍ମାନସୂଚକ ଶବ୍ଦ କହିଥିବା ଶୁଣାଯାଏ ନାହିଁ । ଇସ୍‌ଲାମରେ ଏହାକୁ ନିଷିଦ୍ଧ କରାଯାଇଛି । ଆମ ଦେଶର ଅଣମୁସଲିମ୍ ଭାଇଭଉଣୀମାନେ ଅନ୍ୟ ଦେଶ ତୁଳନାରେ ଯଥେଷ୍ଟ ଅଧିକ ଉଦାର ଓ

(12) "But to say that Mohammad was a voluptuary is false. The simple austerity of his daily life, to the very last, his hard mat for sleeping on, his plain food, his self-imposed menial work, point him out as an ascetic rather than a voluptuary in most senses of the word" (Ibid.p.77)

(13) "Surely the character of Mohammad has been misjudged"(Ibid.p.84)

ସହନଶୀଳ । ମହାମାନ୍ୟ ମୁହମ୍ମଦଙ୍କ ଚରିତ୍ର ସଂହାର କରିଥିବା ଲେଖକମାନେ ପ୍ରାୟ ସମସ୍ତେ ପାଶ୍ଚାତ୍ୟ ଦେଶର । ସେମାନେ ତାଙ୍କୁ ଜଣେ ପ୍ରବଞ୍ଚକ ବୋଲି ପ୍ରଚାର କରିବା ସହିତ ତାଙ୍କପ୍ରତି ଅସମ୍ମାନଜନକ ଶବ୍ଦ ମଧ୍ୟ ପ୍ରୟୋଗ କରିଛନ୍ତି ।

ପ୍ରକୃତରେ ବିଚାର କଲେ, ଏମିତି କୌଣସି ଧର୍ମ ନାହିଁ ଯାହାକୁ ଶତପ୍ରତିଶତ ବିଶ୍ୱବାସୀ ଗ୍ରହଣ କରିନେଇଛନ୍ତି କିମ୍ବା ଏମିତି କୌଣସି ମହାପୁରୁଷ ବା ଧର୍ମପ୍ରବର୍ତ୍ତକ ଜନ୍ମ ହୋଇନାହାନ୍ତି ଯିଏ କାହାରି ସମାଲୋଚନାର ଶିକାର ହୋଇନାହାନ୍ତି । ମହାମାନ୍ୟ ଯୀଶୁଙ୍କ ଭଳି ଜଣେ ନିଷ୍ପାପ ଦିବ୍ୟପୁରୁଷଙ୍କ ପ୍ରତି ତ ପୁଣି ଅତ୍ୟାଚାର କରାଗଲା ! ତାଙ୍କର ଦୃଢ଼ ବିରୋଧ କରାଗଲା । ତାଙ୍କ ପ୍ରତି ମିଥ୍ୟାରୋପ କରି ତାଙ୍କୁ ହତ୍ୟା କରିବାର ହୀନ ଉଦ୍ୟମ କରାଗଲା ଏବଂ ତାଙ୍କୁ ମଧ୍ୟ ପ୍ରବଞ୍ଚକ ବା imposter କୁହାଗଲା । ଯେଉଁମାନେ ମହାମାନ୍ୟ ଯୀଶୁ ଓ ମୁସାଙ୍କ ପ୍ରତି ମିଥ୍ୟା ଆରୋପ କଲେ, ନିଶ୍ଚିତ ଭାବରେ ସେମାନେ ଘୋର ଅନୁଚିତ କାର୍ଯ୍ୟ କଲେ । ସେଇଭଳି ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ପ୍ରବଞ୍ଚନାର ମିଥ୍ୟାରୋପ କରିଥିବା ପାଶ୍ଚାତ୍ୟ ଲେଖକମାନେ ମଧ୍ୟ ଉଚିତ କାର୍ଯ୍ୟ କରିନାହାନ୍ତି । ଏହି କଥାକୁ ସ୍ପଷ୍ଟ କରି ଐତିହାସିକ ରାୟ କହିଛନ୍ତି—

> ''ଖ୍ରୀଷ୍ଟୀୟ ଔଦ୍ଧତ୍ୟ ଆରବୀୟ ଧର୍ମଦୂତଙ୍କୁ 'ପ୍ରବଞ୍ଚକ' ଆଖ୍ୟା ଦେଲା, ମାତ୍ର ଏହା ଭୁଲିଗଲା ଯେ ତାଙ୍କ ସମେତ ମୋସେସ ଓ ଯୀଶୁଙ୍କୁ ମଧ୍ୟ ଏହି ଆଖ୍ୟା ଦିଆଯାଇଥିଲା । ମଧ୍ୟଯୁଗର ଶେଷଆଡ଼କୁ ୟୁରୋପରେ ଚହଳ ପକାଇଥିବା ପ୍ରସିଦ୍ଧ ବେନାମୀ ପୁସ୍ତକ 'ତିନି ପ୍ରବଞ୍ଚକ' ଖ୍ରୀଷ୍ଟୀୟାନ ରାଜା ଫ୍ରେଡେରିକ ବାରବାରୋସା ଏବଂ ମୁସଲମାନ ଦାର୍ଶନିକ ଆଭେରୋଜଙ୍କ ନାମରେ ଆରୋପିତ ।''[14]

---

[14] M. N. ROY, The Historical Role of Islam, Bombay : "Christian arrogance called the Arabian Prophet an "Imposter". But it has been forgotten that he was given that name together with Moses and Jesus. The authorship of the famous book, anonymously published, "Three Imposters" which created sensation in Europe towards the close of the middle-ages, was attributed to the Christian King Frederic Barbarossa as well as to the Muslim philosopher Averroes."(pp.57-58)

ମୁହମ୍ମଦ କୌଣସି ପ୍ରବଞ୍ଚନା କରିନାହାନ୍ତି ଏବଂ ଦାର୍ଶନିକ ଭୋଲଟାୟାର ମଧ୍ୟ ଉପରୋକ୍ତ ଯୁକ୍ତି ବାଢ଼ିଥିଲେ ବୋଲି ଉଲ୍ଲେଖ କରି ଶ୍ରୀ ରାୟ କୁହନ୍ତି—

> ''ଏଥିରେ କୌଣସି ପ୍ରବଞ୍ଚନା ନାହିଁ । ଯୁକ୍ତିବାଦୀ ଭୋଲଟାୟାର ଆରବୀୟ ଧର୍ମଦୂତଙ୍କ ସପକ୍ଷରେ ଠିକ୍ ସେହି ଯୁକ୍ତି ଉପସ୍ଥାପନ କରି ନଥିଲେ କି ?''(15)

**ବୋସଓ୍ୱର୍ଥ ସ୍ମିଥ୍** ମତ ଦିଅନ୍ତି—

> ''ତାଙ୍କ ସଚ୍ଚୋଟପଣିଆର ଆଉ ଅଧିକ ବଡ଼ ପ୍ରମାଣ କ'ଣ ଦରକାର ? ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁହମ୍ମଦ ନିଜ ପାଇଁ କେବଳ ସେହି ପଦବୀ ପସନ୍ଦ କରିଥିଲେ ଯେଉଁ ପଦବୀ ସହ ସେ ନିଜର କାର୍ଯ୍ୟ ଆରମ୍ଭ କରିଥିଲେ, ଯାହାକି ମୋର ବିଶ୍ୱାସ ଦିନେ ସର୍ବଶ୍ରେଷ୍ଠ ଦର୍ଶନ ଆଉ ସଚ୍ଚୋଟତମ ଖ୍ରୀଷ୍ଟଧର୍ମ ମଧ୍ୟ ତାଙ୍କୁ ଜଣେ ଈଶ୍ୱରଦୂତ, ଜଣେ ପ୍ରକୃତ ଈଶ୍ୱରଦୂତ ରୂପେ ସ୍ୱୀକାର କରିବ ।''(16)



(15) "There was no imposture in it. Did not the rationalist Voltaire put forward the same argument more than a thousand years after it had found favour with the Arabian Prophet ?" (Ibid.p.58)

(16) R. BOSWORTH SMITH, Mohammed And Mohammedanism : "What more crowning proof of his sincerity is needed? Mohammed to the end of his life claimed for himself that title only with which he had begun, and which the highest philosophy and the truest Christianity will one day, I venture to believe, agree in yielding to him that of a Prophet, a very Prophet of God." (p.238)

# ମାନବଜଗତର ମାର୍ଗଦର୍ଶକ

ବର୍ତ୍ତମାନର ବିଶ୍ୱ ସଙ୍କୁଚିତ ହୋଇ ଗୋଟିଏ ପରିବାର ପାଲଟି ଯାଇଛି । ପ୍ରାଚୀନ କାଳରେ ଥିବା ଦୂରତ୍ୱର ପ୍ରତିବନ୍ଧକ ଆଉ ନାହିଁ । ସୂଚନା ଓ ପ୍ରସାରଣର ବିକାଶ ଫଳରେ ପ୍ରଚାର ଓ ପ୍ରସାର ଅତି ସହଜ ହୋଇଯାଇଛି । ଗଣମାଧ୍ୟମ ଦ୍ୱାରା କୌଣସି ଖବର ମାତ୍ର କେତୋଟି ମିନିଟ୍‌ରେ ବିଶ୍ୱର କୋଣ ଅନୁକୋଣରେ ପହଞ୍ଚି ପାରୁଛି । ଚାରି ପାଞ୍ଚ ହଜାର ବର୍ଷ ପୂର୍ବେ ସଭ୍ୟତାର ଏଭଳି ବିକାଶ ହୋଇନଥିଲା । ଗଧ, ଘୋଡ଼ା, ହାତୀ ବା ଓଟ ବ୍ୟତୀତ ଯାତାୟାତର କୌଣସି ଉତ୍ତମ ସାଧନ ନଥିଲା । ମଣିଷ ହିଁ ସମ୍ବାଦ ପ୍ରେରଣର ଏକମାତ୍ର ମାଧ୍ୟମ ଥିଲା । କାରଣ ସେ ସମୟରେ ସମ୍ବାଦପତ୍ର, ପୁସ୍ତକ ବା ରେଡ଼ିଓ ଆଦି ଉଦ୍ଭାବନ ହୋଇନଥିଲା । ଏହି କାରଣରୁ କୌଣସି ଦେଶର ଖବର ଅନ୍ୟ ଏକ ଦେଶରେ ପହଞ୍ଚିବା ପାଇଁ ମାସ ମାସ ସମୟ ଲାଗୁଥିଲା ।

ଏମିତି ଅବସ୍ଥାରେ ବିଶ୍ୱର ବିଭିନ୍ନ ଅଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କର ସତ୍‌ମାର୍ଗ ଦର୍ଶନ ପାଇଁ ପୃଥକ୍ ପୃଥକ୍ ମାର୍ଗଦର୍ଶକମାନଙ୍କର ଆବଶ୍ୟକତା ଥିଲା । କାରଣ ଜଣେ ମାର୍ଗଦର୍ଶକଙ୍କ ଉପଦେଶ ସାରା ବିଶ୍ୱରେ ପ୍ରଚାରିତ ହେବା ସମ୍ଭବପର ନଥିଲା । ତେଣୁ, ବିଭିନ୍ନ ସମ୍ପ୍ରଦାୟ ପାଇଁ ଜଣେ ଲେଖାଏଁ ମାର୍ଗଦର୍ଶକ ନିଯୁକ୍ତ ହେଉଥିଲେ ଯେଉଁମାନେ କି ଏକ ସୀମିତ ଅଞ୍ଚଳ ମଧ୍ୟରେ ଧର୍ମସଂସ୍ଥାପନା ବା ପୁନଃସ୍ଥାପନାର କାର୍ଯ୍ୟ କରୁଥିଲେ । ପବିତ୍ର କୁର୍‌ଆନ ଏହାର ସୂଚନା ଦେଇ କହିଛି—

> ''ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ଜଣେ ବାର୍ତ୍ତାବହ ଥିଲେ ।''
>
> **କୁର୍‌ଆନ, ୧୦ : ୪୭**

ଅନ୍ୟ ଏକ ସ୍ଥାନରେ କୁର୍‌ଆନ କହିଛି—

> ''ଏପରି କୌଣସି ସମ୍ପ୍ରଦାୟ ନାହିଁ, ଯାହା ନିକଟକୁ କୌଣସି ସଚେତକ ଆସି ନାହାନ୍ତି ।''
>
> **କୁର୍‌ଆନ, ୩୫ : ୨୪**

ପୂର୍ବେ କୌଣସି ଈଶ୍ୱରଦୂତଙ୍କୁ ସମୁଦାୟ ବିଶ୍ୱରେ ଧର୍ମପ୍ରଚାରର ଦାୟିତ୍ୱ ଦିଆଯାଇ ନଥିଲା । ଏହି କାରଣରୁ ଏକକାଳୀନ ଅନେକ ମାର୍ଗଦର୍ଶକ ବିଶ୍ୱର ବିଭିନ୍ନ ଅଞ୍ଚଳରେ କାର୍ଯ୍ୟରତ ରହୁଥିଲେ, ଯେଉଁଥିପାଇଁ ସେମାନଙ୍କର ସଂଖ୍ୟା ଏକଲକ୍ଷ ଚବିଶି ହଜାର ପର୍ଯ୍ୟନ୍ତ ପହଞ୍ଚିଛି ବୋଲି ମହାମାନ୍ୟ ଈଶ୍ୱରଦୂତ ପ୍ରକାଶ କରିଛନ୍ତି ।

କ୍ରମେ ବିଭିନ୍ନ ଦେଶମାନଙ୍କରେ ସମ୍ପର୍କ ଗଢ଼ିଉଠିଲା ଏବଂ ବ୍ୟବସାୟ ବାଣିଜ୍ୟ ନିମନ୍ତେ ସ୍ଥଳପଥ ଓ ଜଳପଥରେ ଯାତାୟାତ ଆରମ୍ଭ ହେଲା ।

ବିଭିନ୍ନ ଦେଶରେ ଖ୍ରୀଷ୍ଟଧର୍ମର ପ୍ରସାର ବେଳକୁ ସମୁଦାୟ ବିଶ୍ୱପାଇଁ ଏକ ସମାନ ବିଧାନ ପ୍ରଣୟନ ହେବାର ସମୟ ପ୍ରାୟ ଆସି ସାରିଥିଲା । ସପ୍ତମ ଶତାବ୍ଦୀର ପ୍ରାରମ୍ଭରେ ଈଶ୍ୱର ନିଜର ଜଣେ ପ୍ରତିନିଧିଙ୍କୁ ସମୁଦାୟ ବିଶ୍ୱ ପାଇଁ ଗୋଟିଏ ବିଧାନ ଦେଇ ନିଯୁକ୍ତ କରିଦେଲେ । ଏହାହିଁ ସେହି ସତ୍ୟ ଯାହାକୁ ଅଧିକାଂଶ ଲୋକ ଜାଣିନାହାନ୍ତି ବୋଲି କୁରଆନ କହେ :

> ''ଏବଂ ଆମ୍ଭେ ତୁମ୍ଭଙ୍କୁ ସମଗ୍ର ମାନବ ସମାଜ ପାଇଁ ସୁସମାଚାରଦାତା ଓ ଚେତାବନୀଦାତା ରୂପେ ପ୍ରେରଣ କରିଅଛୁ, କିନ୍ତୁ ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ ।''

**(କୁରଆନ ୩୪ : ୨୮)**

ତେଣୁ ମହାମାନ୍ୟ ଈଶ୍ୱରଦୂତଙ୍କୁ ଏହା ଘୋଷଣା କରିବାକୁ ଆଦେଶ ଦିଆଗଲା—

> ''କୁହ—ହେ ମନୁଷ୍ୟଗଣ ! ମୁଁ ତୁମ ସମସ୍ତଙ୍କ ନିକଟକୁ ସେହି ଅଲ୍ଲାହଙ୍କର ପ୍ରତିନିଧି ରୂପେ ପ୍ରେରିତ ହୋଇଛି ଯିଏ ଧରିତ୍ରୀ ଓ ଆକାମଣ୍ଡଳର ଅଧିପତି ।''

**(କୁରଆନ ୭ : ୧୫୮)**

ତାଙ୍କ ଶିକ୍ଷାର ଦୈବୀସୁରକ୍ଷା ମଧ୍ୟ କରାଗଲା । ମହାମାନ୍ୟ ମୁହମ୍ମଦଙ୍କ ପୂର୍ବରୁ ପ୍ରକଟ ହୋଇଥିବା କୌଣସି ଦିବ୍ୟଗ୍ରନ୍ଥକୁ ସୁରକ୍ଷା ପ୍ରଦାନ କରିବା ପାଇଁ ସ୍ରଷ୍ଟା ବଚନବଦ୍ଧ ନଥିଲେ, କାରଣ ଏହି ଦିବ୍ୟଗ୍ରନ୍ଥଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ସଂସ୍କାର ଆଣିବାପାଇଁ ଉଦ୍ଦିଷ୍ଟ ଥିଲା ଏବଂ ଅସ୍ଥାୟୀ ପ୍ରକୃତିର ଥିଲା । ଦୈବୀସୁରକ୍ଷା ନଥିବା ଯୋଗୁଁ ସେଗୁଡ଼ିକରେ ସଂଶୋଧନ ଓ ପ୍ରକ୍ଷେପଣ

ମଧ୍ୟ ହେଲା । ସବୁଠାରୁ ସଦ୍ୟତମ ଦିବ୍ୟଶିକ୍ଷା ଥିଲା ଈଶ୍ୱରଦୂତ ମହାମାନ୍ୟ ଯୀଶୁଙ୍କର । କିନ୍ତୁ ଏହା ଏବେ ଆଉ ସେହି ବିଶୁଦ୍ଧତା ରକ୍ଷା କରିନାହିଁ । ଏଥିରେ ଅନେକ ସଂଶୋଧନ ହୋଇସାରିଛି ।

**ଈଶ୍ୱରଦୂତଙ୍କ ଶିକ୍ଷାର ସଂରକ୍ଷଣ**

ସ୍ଥାୟୀ ଓ ସାର୍ବଜନୀନ ମହତ୍ୱ ଥିବା ଦୃଷ୍ଟିରୁ ମହାମାନ୍ୟ ମୁହମ୍ମଦଙ୍କ ଶିକ୍ଷାର ଦୈବୀସୁରକ୍ଷା କରାଗଲା । ଈଶ୍ୱର ଘୋଷଣା କଲେ—

> ''ଆମ୍ଭେ ହିଁ ଏହି କୁର୍‌ଆନକୁ ଅବତୀର୍ଣ୍ଣ କରିଅଛୁ ଏବଂ (ସ୍ୱୟଂ) ଆମ୍ଭେ ହିଁ ଏହାର ସଂରକ୍ଷକ ।''

**(କୁର୍‌ଆନ, ୧୫ : ୯)**

ସ୍ରଷ୍ଟା କେବଳ କୁର୍‌ଆନ ପ୍ରକଟ କରିନାହାନ୍ତି, ବରଂ ସେ ସ୍ୱୟଂ ଏହାର ବ୍ୟାଖ୍ୟା ମଧ୍ୟ କରିଛନ୍ତି । ପବିତ୍ର କୁର୍‌ଆନରେ ଏହା ଘୋଷଣା କରି ସେ କୁହନ୍ତି—

> ''ପୁଣି ଏହାର ବ୍ୟାଖ୍ୟା ମଧ୍ୟ ଆରମ୍ଭ ଦାୟିତ୍ୱ ।''

**(କୁର୍‌ଆନ, ୭୫ : ୧୯)**

କୁର୍‌ଆନର ଏହି ବ୍ୟାଖ୍ୟା ସ୍ୱତନ୍ତ୍ର ଦୈବବାଣୀ ମାଧ୍ୟମରେ କରାଯାଉଥିଲା, ଯାହାକୁ ମହାମାନ୍ୟ ଈଶ୍ୱରଦୂତ ନିଜ କଥା ବା ଆଚରଣରେ ପ୍ରକାଶ କରୁଥିଲେ । ତେଣୁ, ମହାମାନ୍ୟ ଈଶ୍ୱରଦୂତଙ୍କ କଥା, କର୍ମ, ଆଦେଶ, ଅନୁମୋଦନ ବା ଶିକ୍ଷା ହେଉଛି ପବିତ୍ର କୁର୍‌ଆନର ବ୍ୟାଖ୍ୟା ଏବଂ ଏଗୁଡ଼ିକର ପ୍ରାମାଣିକ ବିବରଣୀକୁ ଆରବୀ ଭାଷାରେ 'ହଦିସ୍' କୁହାଯାଏ । ମହାମାନ୍ୟ ଈଶ୍ୱରଦୂତଙ୍କ ଜୀବନୀ ଓ ଶିକ୍ଷାର ଟିକିନିଖି ବିବରଣୀ ଇତିହାସ ପୃଷ୍ଠାରେ ସଂରକ୍ଷିତ ରହିଛି । ଐତିହାସିକ ବୋସ୍‌ୱର୍ଥ ସ୍ମିଥ୍ ଲେଖିଛନ୍ତି—

> ''ତାଙ୍କର ଆବିର୍ଭାବ ଏବଂ ତାଙ୍କ ଦୈନନ୍ଦିନ ଜୀବନର ପୁଙ୍ଖାନୁପୁଙ୍ଖ ବିବରଣୀ ଆମ ନିକଟରେ ସଂରକ୍ଷିତ ରହିଛି ।''[1]

---

[1] "Minute accounts of his appearance and of his daily life have been preserved to us." (Bosworth Smith, Mohammad and Mohammedanism,London, p.83)

ପ୍ରସିଦ୍ଧ ଐତିହାସିକ ଏଡ୍‌ୱାର୍ଡ୍ ଗୀବନ୍ କୁହନ୍ତି ଯେ, ଈଶ୍ୱର ଏବଂ ଈଶ୍ୱରଦୂତ, ଉଭୟଙ୍କ ବାଣୀ ତାଙ୍କ ଶିଷ୍ୟମାନଙ୍କ ଦ୍ୱାରା ଅତି ସାବଧାନତାର ସହ ଲିପିବଦ୍ଧ କରାଯାଉଥିଲା ।[2]

ମହାମାନ୍ୟ ମୁହମ୍ମଦଙ୍କ ପରି ବିଶ୍ୱର ଅନ୍ୟ କୌଣସି ଈଶ୍ୱରଦୂତଙ୍କର ଜୀବନ ଚରିତ ଏତେ ବିସ୍ତୃତ ଭାବରେ ଇତିହାସରେ ନାହିଁ । ଏପରିକି ତାଙ୍କର ଖାଦ୍ୟପେୟ, ପୋଷାକ ପରିଚ୍ଛଦ ଓ ନିତ୍ୟକର୍ମ ଭଳି ସାଧାରଣ ଦୈନନ୍ଦିନ ଘଟଣାର ସମ୍ପୂର୍ଣ୍ଣ ବିବରଣୀଗୁଡ଼ିକୁ ମଧ୍ୟ ଐତିହାସିକମାନେ ଲିପିବଦ୍ଧ କରିଛନ୍ତି । ମୁଖ୍ୟତଃ ତିନୋଟି ଉପାୟରେ ମହାମାନ୍ୟ ଈଶ୍ୱରଦୂତଙ୍କ ଶିକ୍ଷାର ସଂରକ୍ଷଣ ହେଲା ।

ପ୍ରଥମତଃ, ଈଶ୍ୱରଦୂତଙ୍କ ବାଣୀଗୁଡ଼ିକୁ ତାଙ୍କ ଶିଷ୍ୟମାନେ ମନେ ରଖୁଥିଲେ । ଲେଖିବା ପାଇଁ ସାଧନର ଅଭାବ ଯୋଗୁଁ ପ୍ରାଚୀନ କାଳରୁ ଦିବ୍ୟଶିକ୍ଷାଗୁଡ଼ିକୁ କଣ୍ଠସ୍ଥ କରିବା ଏକ ସାଧାରଣ ପରମ୍ପରା ଥିଲା । ତେଣୁ ଶିଷ୍ୟମାନେ ଈଶ୍ୱରଦୂତଙ୍କ ବାଣୀଗୁଡ଼ିକୁ କଣ୍ଠସ୍ଥ କରିନେଉଥିଲେ । ଯେଉଁମାନେ ତାଙ୍କୁ ଦର୍ଶନ କରିବାର ବା ତାଙ୍କର ପବିତ୍ର ବାଣୀ ଶୁଣିବାର ସୌଭାଗ୍ୟ ପାଇଛନ୍ତି, ସେମାନଙ୍କର ସଂଖ୍ୟା ଲକ୍ଷାଧିକ ।

ଦ୍ୱିତୀୟତଃ, ଅନେକ ଶିଷ୍ୟ ଈଶ୍ୱରଦୂତଙ୍କର ବାଣୀଗୁଡ଼ିକୁ ଲିଖିତ ଆକାରରେ ମଧ୍ୟ ରଖୁଥିଲେ ।[3] ସେ ସମୟରେ ପବିତ୍ର କୁର୍‌ଆନ ଅବତରଣ କରୁଥିବାରୁ ତାକୁ ମଧ୍ୟ ଲିପିବଦ୍ଧ କରାଯାଉଥିଲା । ତେଣୁ କାଳେ ଈଶ୍ୱରଙ୍କ ବାଣୀ ସହ ନିଜ ବାଣୀ ମିଶିଯିବ, ଏହି ଆଶଙ୍କାରେ ମହାମାନ୍ୟ ଈଶ୍ୱରଦୂତ କୁର୍‌ଆନ ଲିପିବଦ୍ଧ କରୁଥିବା ଶିଷ୍ୟମାନଙ୍କୁ ତାଙ୍କ ନିଜ ବାଣୀଗୁଡ଼ିକୁ ନ ଲେଖିବା ପାଇଁ ଉପଦେଶ ମଧ୍ୟ ଦେଇଥିଲେ । ଏହି କାରଣରୁ କେତେଜଣ ଶିଷ୍ୟ ଈଶ୍ୱରଦୂତଙ୍କ ବାଣୀଗୁଡ଼ିକୁ ଲିପିବଦ୍ଧ କରିବାପରେ ତାଙ୍କୁ ପଢ଼ି ଶୁଣାଇ ଦେଉଥିଲେ ।

---

(2) "Edward Gibbon, Life of Mahomet, PP.-85-86 : "The Word of God and of the apostle was deligently recorded by his disciples...."

(3) ସହୀ ବୁଖାରୀ, ୧ମ ଖଣ୍ଡ, ହଦିସ ସଂ. ୧୧୩

ତୃତୀୟ ଉପାୟଟି ଥିଲା ସବୁଠାରୁ ମଜବୁତ । ମହାମାନ୍ୟ ଈଶ୍ୱରଦୂତଙ୍କର ଶିକ୍ଷାଗୁଡ଼ିକ ତୁରନ୍ତ କାର୍ଯ୍ୟକାରୀ ହେଉଥିଲା ଏବଂ ସମାଜର ଆଚରଣରେ ପରିବର୍ତ୍ତନ ହୋଇଯାଉଥିଲା । ତାଙ୍କ ଜୀବନକାଳରେ ହିଁ ତାଙ୍କର ଶିକ୍ଷା ତତ୍କାଳୀନ ମୁସ୍‌ଲିମ୍ ସମାଜରେ ଏକ ପରମ୍ପରାର ରୂପ ନେଇ ସାରିଥିଲା । ଏହି ତଥ୍ୟ ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା ମଧ୍ୟ ଦେଇଛି ।[4] କିନ୍ତୁ ସେତେବେଳେ ହଦିସ୍‌ଗୁଡ଼ିକ ସୁଶୃଙ୍ଖଳିତ ଭାବରେ କୌଣସି ଗ୍ରନ୍ଥ ଆକାରରେ ପ୍ରକାଶ ପାଇନଥିଲା । ମହାମାନ୍ୟ ମୁହମ୍ମଦଙ୍କ ପରେ ତାଙ୍କର ଅନେକ ଶିଷ୍ୟ ତାଙ୍କ ଜୀବନୀ ଓ ଶିକ୍ଷାଗୁଡ଼ିକୁ ସଂଗ୍ରହ କଲେ ଯାହାକୁ ପରବର୍ତ୍ତୀ ସମୟରେ ବହୁ ପରୀକ୍ଷା ନିରୀକ୍ଷା କରାଯାଇ ହଦିସ୍ ଗ୍ରନ୍ଥର ରୂପ ଦିଆଗଲା ।

ପ୍ରକୃତରେ ଦେଖିବାକୁ ଗଲେ, ସେ ସମୟରେ ମହାମାନ୍ୟ ଈଶ୍ୱରଦୂତଙ୍କ ସବୁ ବାଣୀଗୁଡ଼ିକ ଲେଖା ଆକାରରେ ସଂରକ୍ଷଣ କରିବା ସମ୍ଭବ ମଧ୍ୟ ନଥିଲା । ଯେଉଁ ଯୁଗରେ କାଗଜ ଉଦ୍ଭାବନ ହୋଇ ନଥିଲା, ଲେଖିବା ପାଇଁ ଚମଡ଼ା ବା ତାଳପତ୍ର ଇତ୍ୟାଦି ବ୍ୟବହୃତ ହେଉଥିଲା ଏବଂ ଖୁବ୍ କମ୍ ଲୋକ ଲେଖାପଢ଼ା ଜାଣିଥିଲେ, ସେ ସମୟରେ ଜଣେ ଈଶ୍ୱରଦୂତଙ୍କର ଦୀର୍ଘ ତେଇଶି ବର୍ଷର ଦୈନନ୍ଦିନ ଜୀବନର ସମସ୍ତ ବିବରଣୀ ଏବଂ ତାଙ୍କର ପ୍ରତିଟି ଆଦେଶ ବା ଉପଦେଶକୁ ଲେଖି ରଖିବା ସହଜସାଧ୍ୟ ନଥିଲା । ହଦିସ୍ ସଂଗ୍ରହରୁ ଜଣାଯାଏ ଯେ, ଲକ୍ଷ ଲକ୍ଷ ସଂଖ୍ୟାରେ ହଦିସ୍ ସଂଗ୍ରହ କରାଯାଇଛି ।

ଯେଉଁମାନେ ହଦିସ୍ ସଂଗ୍ରହ କରି ସେଗୁଡ଼ିକୁ ଭଲରୂପେ ପରୀକ୍ଷାନିରୀକ୍ଷା କଲେ ଏବଂ ସେଗୁଡ଼ିକୁ ପଦ୍ଧତିବଦ୍ଧ ଭାବରେ ଗ୍ରନ୍ଥରୂପ ଦେଲେ, ସେମାନଙ୍କୁ ଆରବୀରେ 'ମୁହଦ୍ଦିସ୍' କୁହାଯାଏ । ସେମାନଙ୍କ ମଧ୍ୟରେ ନିମ୍ନ ସଂଗ୍ରାହକମାନେ ପ୍ରସିଦ୍ଧ :

ମୁହମ୍ମଦ ଇବନ୍-ଇଶହାକ୍ (୭୦୪-୭୬୭)
ମାଲିକ୍ ଇବନ୍ ଅନସ୍ (୭୧୧-୭୯୫)
ମହମ୍ମଦ ଇବନ୍ ଇସ୍‌ମାଇଲ୍ ବୁଖାରୀ (୮୧୦-୮୭୦)

---

[4] "Within the first century of the Prophet's death tradition had come to be a central factor in the devlopment of law and the shape of the society." (Hadith—Encyclopedia Britannica, Ultimate Reference Suite, Chicago, 2011)

ମୁସଲିମ୍ ଇବନ୍ ଅଲ୍ ହିଜ୍‌ଜାଜ୍ (୮୨୭-୮୭୫)
ଅବୁ ଦାଉଦ୍ ଅଲ୍ ସିଜିସ୍ତାନୀ (୮୧୭-୮୮୯)
ଅବୁ ଇସା ମୁହମ୍ମଦ ଅତ୍-ତିର୍‌ମିଜୀ (ତିରୋଧାନ ୮୯୨)
ଅବୁ ଅବ୍ଦୁର୍ ରହମାନ୍ ଅନ୍ ନିସାଇ (୮୩୦-୯୧୫)
ଅବୁ ଅବ୍ଦୁଲ୍ଲାହ ଇବନ୍ ମାଜା (୮୨୪-୮୮୬)

ଅନେକ ମିଥ୍ୟା ମଧ୍ୟ ଈଶ୍ୱରଦୂତଙ୍କ ନାମରେ ପ୍ରଚାର ହୋଇଥିଲା । ତେଣୁ ଏହି ବାଣୀ ସଂଗ୍ରାହକମାନେ ଯଥାସାଧ୍ୟ ସତର୍କତା ଅବଲମ୍ବନ କଲେ । ପ୍ରତ୍ୟେକ ବାଣୀକୁ ଅତି ସତର୍କତାର ସହ ବିଭିନ୍ନ ଦିଗରୁ ପରୀକ୍ଷା କରାଗଲା ଏବଂ ହଦିସ୍‌ର ସତ୍ୟତା ପରୀକ୍ଷା କରିବା ପାଇଁ ସ୍ୱତନ୍ତ୍ର ନୀତିନିୟମ ମଧ୍ୟ ଗଢ଼ାହେଲା । ମହାମାନ୍ୟ ଈଶ୍ୱରଦୂତଙ୍କ ସମ୍ପର୍କରେ ଦିଆଯାଉଥିବା ପ୍ରତ୍ୟେକ ବିବରଣୀ ସମ୍ପର୍କରେ ତଥ୍ୟଦାତାର ସମ୍ପୂର୍ଣ୍ଣ ପରିଚୟ, ଚରିତ୍ର, ବଂଶ, ସ୍ମରଣଶକ୍ତି ଆଦି ବିଷୟରେ ଅତି ସୂକ୍ଷ୍ମ ଭାବରେ ଟିକିନିଖି ଅନୁସନ୍ଧାନ କରାଗଲା ଏବଂ ଅସଂଖ୍ୟ ମିଥ୍ୟା ଓ ଜାଲ ହଦିସ୍ ଯେଉଁଗୁଡ଼ିକ ପବିତ୍ର କୁର୍‌ଆନର ଶିକ୍ଷାର ବିରୋଧାଚରଣ କରୁଥିଲା, ସେଗୁଡ଼ିକୁ ସଂକଳନରୁ ବାଦ୍ ଦିଆଗଲା । ନିର୍ଭରଯୋଗ୍ୟତା ଆଧାରରେ ହଦିସ୍‌ଗୁଡ଼ିକୁ ବିଭିନ୍ନ ଶ୍ରେଣୀଭୁକ୍ତ ମଧ୍ୟ କରାଗଲା । ହଦିସ୍ ସଂଗ୍ରାହକମାନେ ଏହି କାର୍ଯ୍ୟରେ ସେମାନଙ୍କର ସମ୍ପୂର୍ଣ୍ଣ ଜୀବନ ଉତ୍ସର୍ଗ କରିଦେଇଛନ୍ତି ।



# ଅନ୍ତିମ ଈଶ୍ୱରଦୂତ

ମହାମାନ୍ୟ ମୁହମ୍ମଦ ଯେ ଈଶ୍ୱରଙ୍କର ଜଣେ ପ୍ରତିନିଧି ଏ ସମ୍ପର୍କରେ ଯଥେଷ୍ଟ ପ୍ରମାଣ ଆମେ ପାଇସାରିଛୁ ଏବଂ ସେ ଯେ ସତ୍ୟ କହିଛନ୍ତି, ଏ ବିଷୟରେ ମଧ୍ୟ ଆମର କୌଣସି ସନ୍ଦେହ ନାହିଁ । କୌଣସି ବ୍ୟକ୍ତି ସମ୍ପର୍କରେ ଜଣେ ସ୍ୱୀକୃତିପ୍ରାପ୍ତ ଚିକିତ୍ସକ ହୋଇଥିବାର ସନ୍ତୋଷଜନକ ପ୍ରମାଣ ପାଇସାରିବା ପରେ ତା' ଉପଦେଶଗୁଡ଼ିକୁ ଆଉ ପରୀକ୍ଷାନିରୀକ୍ଷା ନ କରି ଗ୍ରହଣ କରିନିଆଯାଏ । ତା'ର ପ୍ରତ୍ୟେକ ଉପଦେଶ ବା ବ୍ୟବସ୍ଥାପତ୍ରକୁ ସ୍ୱତନ୍ତ୍ର ଭାବରେ ପରୀକ୍ଷା କରାଯାଏ ନାହିଁ । ଯେହେତୁ ସେ ଆମ ଚିକିତ୍ସକ, ଆମେ ତା' କଥା ମାନିନେଉ । ସେହିପରି ମହାମାନ୍ୟ ମୁହମ୍ମଦଙ୍କୁ ପରୀକ୍ଷା କରି ତାଙ୍କୁ ଈଶ୍ୱରଦୂତ ବୋଲି ଗ୍ରହଣ କରିସାରିବା ପରେ ପୁଣି ତାଙ୍କର ପ୍ରତ୍ୟେକ କଥାର ସତ୍ୟତାକୁ ଅଲଗା ଅଲଗା ପରୀକ୍ଷା କରିବାର ଆବଶ୍ୟକତା ନାହିଁ । ଯେହେତୁ ସେ ଈଶ୍ୱରଙ୍କର ପ୍ରତିନିଧି, ତାଙ୍କର ଆଦେଶ ପାଳନୀୟ । କୌଣସି ବିଷୟରେ ଈଶ୍ୱର ବା ଈଶ୍ୱରଦୂତଙ୍କର ସ୍ପଷ୍ଟ ଆଦେଶ ରହିଥିବାବେଳେ ସେ ବିଷୟରେ ଆଉ ବିଚାର ଆଲୋଚନା ବା ଯୁକ୍ତିତର୍କ କରିବାର ସ୍ୱାଧୀନତା ମଣିଷର ରହେନାହିଁ । ଏହାକୁ ସ୍ପଷ୍ଟ କରି ପବିତ୍ର କୁରଆନରେ ପରମେଶ୍ୱର କୁହନ୍ତି—

> ''କୌଣସି ବିଶ୍ୱାସକାରୀ ପୁରୁଷ ବା ନାରୀ ପକ୍ଷରେ ଏହା ସମୀଚୀନ ନୁହେଁ ଯେ ଅଲ୍ଲାହ ଓ ତାଙ୍କ ବାର୍ତ୍ତାବହ କୌଣସି ବିଷୟରେ ନିଷ୍ପତ୍ତି କରିସାରିବା ପରେ ସେମାନେ ସେ ସଂକ୍ରାନ୍ତରେ ସ୍ୱେଚ୍ଛାରେ କୌଣସି ନିଷ୍ପତ୍ତି ନେଇପାରିବେ, ଆଉ ଯେ କେହି ଅଲ୍ଲାହ ଓ ତାଙ୍କ ଈଶ୍ୱରଦୂତଙ୍କର ଅବଜ୍ଞା କରେ ସେ ପ୍ରକାଶ୍ୟ ବିଭ୍ରାନ୍ତିରେ ପଡ଼ିଯାଏ ।''
>
> **(କୁରଆନ, ୩୩ : ୩୬)**

ମହାମାନ୍ୟ ମୁହମ୍ମଦ ଯେ ଅନ୍ତିମ ଈଶ୍ୱରଦୂତ ଏ ବିଷୟରେ ଈଶ୍ୱର ଓ ଈଶ୍ୱରଦୂତ ଉଭୟଙ୍କର ସ୍ପଷ୍ଟ ବାର୍ତ୍ତା ରହିଛି । ଦିବ୍ୟଗ୍ରନ୍ଥର ଏକ ବଡ଼ ବିଶେଷତ୍ୱ ହେଉଛି ଯେ, ସେଥିରେ ଗୁରୁତ୍ୱପୂର୍ଣ୍ଣ ଶିକ୍ଷାଗୁଡ଼ିକୁ ଅତି ସ୍ପଷ୍ଟ ଶବ୍ଦରେ କୁହାଯାଏ,

ଯେପରିକି ଜଣେ ସାଧାରଣ ମଣିଷ ସହଜରେ ବୁଝିପାରିବ । ଯେଉଁ ଆଦେଶର ଅବମାନନା ଫଳରେ ନର୍କଦଣ୍ଡ ଭୋଗିବାର ସମ୍ଭାବନା ଥାଏ, ସେଭଳି ଆଦେଶଗୁଡ଼ିକ ଖୁବ୍ ପରିଷ୍କାର ଭାବରେ ଦିଆଯାଏ । ପରମେଶ୍ୱର ଅଲ୍ଲାହ କୁର୍‌ଆନରେ ସ୍ପଷ୍ଟ ଭାବରେ ଘୋଷଣା କରିଛନ୍ତି—

> ‘‘ମୁହମ୍ମଦ ତୁମ ପୁରୁଷମାନଙ୍କ ମଧ୍ୟରୁ କାହାରି ପିତା ନୁହନ୍ତି; ବରଂ ସେ ଅଲ୍ଲାହଙ୍କର ବାର୍ତ୍ତାବହ ଏବଂ ଈଶ୍ୱରଦୂତମାନଙ୍କ ମଧ୍ୟରେ ଅନ୍ତିମ ଏବଂ ଅଲ୍ଲାହ ସବୁ ବିଷୟରେ ଜାଣନ୍ତି ।’’

**(କୁର୍‌ଆନ, ୩୩ : ୪୦)**

ଦ୍ୱିତୀୟତଃ, ମହାମାନ୍ୟ ଈଶ୍ୱରଦୂତ ମଧ୍ୟ ଅନେକ ଥର ନିଜକୁ ଅନ୍ତିମ ଈଶ୍ୱରଦୂତ ବୋଲି ଘୋଷଣା କରିଛନ୍ତି । ତାଙ୍କର କେତୋଟି ବାଣୀ ନିମ୍ନରେ ଉଦ୍ଧାର କରାଯାଉଛି । ନିଜର ଦୃଷ୍ଟାନ୍ତ ଦେଇ ମହାମାନ୍ୟ ଈଶ୍ୱରଦୂତ କହିଲେ—

> ‘‘ପୂର୍ବବର୍ତ୍ତୀ ଈଶ୍ୱରଦୂତମାନଙ୍କ ତୁଳନାରେ ମୋର ଦୃଷ୍ଟାନ୍ତ ଏପରି, ଯେପରି କେହି ଜଣେ ଗୋଟିଏ ସୁନ୍ଦର ଅଟ୍ଟାଳିକା ନିର୍ମାଣ କଲା, ଯାହାର ଗୋଟିଏ କୋଣରେ ଗୋଟିଏ ଇଟାର ସ୍ଥାନ ଖାଲି ରହିଛି । ଲୋକେ ଅଟ୍ଟାଳିକାର ସୌନ୍ଦର୍ଯ୍ୟରେ ବିମୋହିତ ହୁଅନ୍ତି; କିନ୍ତୁ କୁହନ୍ତି ଯେ, ଖଣ୍ଡେ ଇଟା ଏହି ଖାଲି ସ୍ଥାନରେ ଲାଗିବ । ସୁତରାଂ, ମୁଁ ସେହି ଶୂନ୍ୟସ୍ଥାନର ଇଟା ଏବଂ ଈଶ୍ୱରଦୂତମାନଙ୍କ ମଧ୍ୟରେ ଅନ୍ତିମ ।’’[1]

**(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍-୭୩୫)**

ନିଜକୁ ଅନ୍ତିମ ବାର୍ତ୍ତାବହ ବୋଲି ଘୋଷଣା କରି ଈଶ୍ୱରଦୂତ କହିଲେ—

> ‘‘ଈଶ୍ୱରଦୂତମାନେ ଇସ୍ରାଏଲ୍‌ବାସୀଙ୍କୁ ନିୟନ୍ତ୍ରଣ କରୁଥିଲେ ଏବଂ ସେମାନଙ୍କର ପଥ ପ୍ରଦର୍ଶନ କରୁଥିଲେ । ଯେତେବେଳେ ଜଣେ ଈଶ୍ୱରଦୂତଙ୍କର ତିରୋଧାନ ହେଉଥିଲା, ଆଉ ଜଣେ ତାଙ୍କର ସ୍ଥାନ ଗ୍ରହଣ କରୁଥିଲେ । ମୋ ପରେ ଆଉ ଈଶ୍ୱରଦୂତ ଆସିବେ ନାହିଁ ।’’

**(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ସଂ.୬୬୧)**

---

(1) ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ସଂ. ୭୩୫

''ମୋତେ ସମଗ୍ର ମାନବଜଗତ ପାଇଁ ନିଯୁକ୍ତ କରାଯାଇଛି ଏବଂ ମୋ ସହିତ ଈଶ୍ୱରଦୂତମାନଙ୍କର ଆସିବାର ପରମ୍ପରାକୁ ବନ୍ଦ କରିଦିଆଯାଇଛି ।''

**(ସହୀ ମୁସଲିମ, ୧ମ ଖଣ୍ଡ, ହଦିସ୍ ସଂ. ୫୨୩)**

ଅନ୍ୟ ଏକ ହଦିସ୍‌ରେ ମହାମାନ୍ୟ ଈଶ୍ୱରଦୂତ କୁହନ୍ତି—

''ପ୍ରକୃତରେ ବାର୍ତ୍ତାବହନ ଏବଂ ଈଶ୍ୱରଦୂତର ପରମ୍ପରାରେ ପୂର୍ଣ୍ଣଚ୍ଛେଦ ପଡ଼ିସାରିଛି । ତେଣୁ ମୋ ପରେ କୌଣସି ବାର୍ତ୍ତାବହ ବା ଈଶ୍ୱରଦୂତ ଆସିବେ ନାହିଁ ।''

**(ତିରମିଜୀ, ହଦିସ୍ ସଂ.୨୨୭୨)**

ଈଶ୍ୱରଦୂତ ନିଜର ତବୁକ ଯାତ୍ରା ସମୟରେ ହଜରତ ଅଲୀଙ୍କୁ ମଦିନାର ସୁରକ୍ଷା ଦାୟିତ୍ୱ ଅର୍ପଣ କରି ତାଙ୍କୁ ନିଜର ସହକାରୀ ରୂପେ ନିଯୁକ୍ତ କରିଥିଲେ । ତେଣୁ, ହଜରତ ଅଲି ତାଙ୍କୁ କହିଲେ—କ'ଣ ଆପଣ ମୋତେ ମହିଳା ଓ ପିଲାମାନଙ୍କ ମଧ୍ୟରେ ଛାଡ଼ି ଯାଉଛନ୍ତି ? ଈଶ୍ୱରଦୂତ ଉତ୍ତର ଦେଲେ—

''ତୁମେ କ'ଣ ଏଥିରେ ଖୁସି ନୁହଁ ଯେ, ତୁମେ ମୋ ପାଇଁ ଠିକ୍ ସେମିତି ଯେମିତିକି ମୁସାଙ୍କ ପାଇଁ ହାରୁନ୍ ଥିଲେ । କିନ୍ତୁ ମୋ ପରେ ଆଉ ଈଶ୍ୱରଦୂତ ନାହାନ୍ତି ।''[2]

**(ସହୀ ବୁଖାରୀ, ୫ମ ଖଣ୍ଡ, ହଦିସ୍ ସଂ.୭୦୦)**

ତୃତୀୟତଃ, ମହାମାନ୍ୟ ଈଶ୍ୱରଦୂତ ଭବିଷ୍ୟତରେ ହେବାକୁ ଥିବା ଅନେକ ଘଟଣା ବିଷୟରେ ପୂର୍ବ ସୂଚନା ଦେଇଛନ୍ତି । ଶେଷ ଯୁଗରେ ହେବାକୁ ଥିବା ସମାଜର ବିଭିନ୍ନ ନୈତିକ ଅଧୋଃପତନ, ପ୍ରାକୃତିକ ଦୁର୍ବିପାକ ଏବଂ ମହାପ୍ରଳୟ ବିଷୟରେ ସେ ଅନେକ ଭବିଷ୍ୟବାଣୀ କରିଛନ୍ତି । ଯଦି ତାଙ୍କ ପରେ କୌଣସି ଈଶ୍ୱରଦୂତଙ୍କ ଆବିର୍ଭାବର ସମ୍ଭାବନା ଥାଆନ୍ତା, ତେବେ ଏହାର ପୂର୍ବସୂଚନା ଅବଶ୍ୟ ଦିଆଯାଇ ଥାଆନ୍ତା । ଯେପରି ମହାମାନ୍ୟ ମୁହମ୍ମଦଙ୍କ ଆଗମନୀ ବିଷୟରେ ବିଭିନ୍ନ ଧର୍ମଗ୍ରନ୍ଥମାନଙ୍କରେ ପୂର୍ବସୂଚନା ଦିଆଯାଇଛି, ସେହିପରି ଆସିବାକୁ ଥିବା ଈଶ୍ୱରଦୂତଙ୍କ ସମ୍ପର୍କରେ କୁରଆନ କିମ୍ବା ଈଶ୍ୱରଦୂତଙ୍କ ବାଣୀରେ

---

(2) ହଜରତ ହାରୁନ୍ ମହାମାନ୍ୟ ମୁସାଙ୍କର ଭାଇ ଥିଲେ ଏବଂ ଜଣେ ଈଶ୍ୱରଦୂତ ମଧ୍ୟ ଥିଲେ ।

ଏହାର ଉଲ୍ଲେଖ ରହିଥାଆନ୍ତା । ଯେହେତୁ ସବୁ ଈଶ୍ୱରଦୂତଙ୍କୁ ଗ୍ରହଣ କରିବା ଏବଂ ସେମାନଙ୍କ ପ୍ରତି ଆସ୍ଥା ପ୍ରକଟ କରିବା ଇସ୍‌ଲାମର ଏକ ମୌଳିକ ବିଶ୍ୱାସ, ଏଭଳି ଗୁରୁତ୍ୱପୂର୍ଣ୍ଣ କଥାକୁ ଈଶ୍ୱର ବା ଈଶ୍ୱରଦୂତ କଦାପି ଲୁଚାଇ ରଖନ୍ତେ ନାହିଁ । କିନ୍ତୁ ଉଭୟଙ୍କ ବାଣୀରେ ଏହାର କୌଣସି ଉଲ୍ଲେଖ ନାହିଁ; ବରଂ କେତେକ ମିଥ୍ୟାବାଦୀ ନିଜକୁ ଈଶ୍ୱରଦୂତ ବୋଲି ଦାବୀ କରିବେ ବୋଲି ମହାମାନ୍ୟ ମୁହମ୍ମଦ ସାବଧାନ କରିଛନ୍ତି । ସେ କହିଛନ୍ତି—

> ‘‘ଯେପର୍ଯ୍ୟନ୍ତ ତିରିଶ ଜଣ ମିଥ୍ୟାବାଦୀଙ୍କର ଆବିର୍ଭାବ ନ ହୋଇଛି ଏବଂ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ନିଜକୁ ଅଲ୍ଲାହଙ୍କର ବାର୍ତ୍ତାବହ ବୋଲି ଦାବି କରିନାହାନ୍ତି, ସେ ପର୍ଯ୍ୟନ୍ତ ମହାପ୍ରଳୟ ହେବନାହିଁ ।’’[3]

**(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ୮୦୬)**

ମହାମାନ୍ୟ ଈଶ୍ୱରଦୂତ ଏହା ମଧ୍ୟ ସତର୍କ କରି କହିଛନ୍ତି—

> ‘‘ଏବଂ ପ୍ରକୃତରେ ମୋ ଅନୁଗାମୀମାନଙ୍କ ମଧ୍ୟରେ ତିରିଶଜଣ ପ୍ରବଞ୍ଚକ ଆସିବେ ଏବଂ ପ୍ରତ୍ୟେକ ନିଜକୁ ଜଣେ ଈଶ୍ୱରଦୂତ ବୋଲି ଦାବି କରିବ, କିନ୍ତୁ ମୁଁ ଅନ୍ତିମ ଈଶ୍ୱରଦୂତ ଏବଂ ମୋ ପରେ ଈଶ୍ୱରଦୂତ ନାହାନ୍ତି ।’’

**(ତିରମିଜୀ, ୪ର୍ଥ ଖଣ୍ଡ, ହଦିସ୍ ୨୨୧୯)**

ଚତୁର୍ଥ କାରଣ ହେଉଛି ଯେ, ଧର୍ମ ସଂସ୍ଥାପନା ବା ପୁନଃସ୍ଥାପନା ହିଁ ମହାମାନ୍ୟ ଈଶ୍ୱରଦୂତମାନଙ୍କର ମୁଖ୍ୟ କାର୍ଯ୍ୟ । ଦିବ୍ୟଶିକ୍ଷାରେ ପରିବର୍ତ୍ତନ, ସଂଶୋଧନ ବା ନୂଆ ନୂଆ ନୀତି ନିୟମର ପ୍ରକ୍ଷେପଣ ଯୋଗୁଁ ସମାଜରେ ବିଭିନ୍ନ କୁସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରବେଶ କରେ । ଏହାର ମୂଳୋତ୍ପାଟନ ପାଇଁ ମହାମାନ୍ୟ ମୁହମ୍ମଦଙ୍କ ମାଧ୍ୟମରେ ଆସିଥିବା ଗ୍ରନ୍ଥର ଦୈବୀସୁରକ୍ଷା କରାଗଲା, ଯେଉଁଥିରେ କୌଣସି ପ୍ରକାର ସଂଶୋଧନ ବା ପ୍ରକ୍ଷେପଣ କସ୍ମିନ୍‌କାଳେ ସମ୍ଭବ ନୁହେଁ । ତେଣୁ ଯେଉଁ ଶିକ୍ଷାରେ ପରିବର୍ତ୍ତନ ହେବନାହିଁ, ସେହି ଶିକ୍ଷା ନେଇ ପୁଣି ଜଣେ ଈଶ୍ୱରଦୂତଙ୍କ ଆସିବାର ଆବଶ୍ୟକତା ମଧ୍ୟ ନାହିଁ ।

---

[3] ସହୀ ବୁଖାରୀ, ୯ମ ଖଣ୍ଡ, ହଦିସ୍-୨୩୭; ତିରମିଜୀ, ୪ର୍ଥ ଖଣ୍ଡ, ହଦିସ୍-୨୨୧୮

ମହାମାନ୍ୟ ମୁହମ୍ମଦଙ୍କର ସମସ୍ତ ଶିକ୍ଷା ସଂରକ୍ଷିତ ଏବଂ ଏହା ମାନବଜାତିର ମାର୍ଗଦର୍ଶନ ପାଇଁ ଯଥେଷ୍ଟ । ତେଣୁ ନୂତନ ଈଶ୍ୱରଦୂତଙ୍କର ଆବିର୍ଭାବ ହେବନାହିଁ । ଅବଶ୍ୟ ସାଧୁ, ସନ୍ଥ, ପ୍ରବକ୍ତା, ପ୍ରବଚକ ଓ ପ୍ରଚାରକମାନଙ୍କ ଆବିର୍ଭାବର ବାଟ ଉନ୍ମୁକ୍ତ ରହିଛି ।

ମହାମାନ୍ୟ ମୁହମ୍ମଦଙ୍କ ପୂର୍ବବର୍ତ୍ତୀ କୌଣସି ଈଶ୍ୱରଦୂତ ନିଜକୁ ଅନ୍ତିମ ଈଶ୍ୱରଦୂତ ବୋଲି କହିନାହାନ୍ତି କିମ୍ବା କୁର୍‌ଆନ ବ୍ୟତୀତ କୌଣସି ଦିବ୍ୟଗ୍ରନ୍ଥ ନିଜ ବାର୍ତ୍ତାବହଙ୍କୁ ଅନ୍ତିମ ବାର୍ତ୍ତାବହ ଘୋଷଣା କରିନାହିଁ ।

ମହାମାନ୍ୟ ଈଶ୍ୱରଦୂତଙ୍କର ଶିଷ୍ୟମାନେ ତାଙ୍କୁ ଅନ୍ତିମ ଈଶ୍ୱରଦୂତ ରୂପେ ଗ୍ରହଣ କରିଥିଲେ ଏବଂ ସେହି ସମୟରୁ ମୁସଲମାନମାନେ ତାଙ୍କୁ ଶେଷ ବାର୍ତ୍ତାବହ ଏବଂ ତାଙ୍କ ମାଧ୍ୟମରେ ଆସିଥିବା ଗ୍ରନ୍ଥକୁ ଅନ୍ତିମ ଦିବ୍ୟଗ୍ରନ୍ଥ ରୂପେ ଗ୍ରହଣ କରିଆସିଛନ୍ତି । ଏହାର ଅର୍ଥ ନୁହେଁ ଯେ, ପୂର୍ବ ଦିବ୍ୟଶିକ୍ଷାଗୁଡ଼ିକୁ ସେମାନେ ଅସ୍ୱୀକାର କରନ୍ତି । ସବୁ ଦିବ୍ୟଗ୍ରନ୍ଥଗୁଡ଼ିକ ପ୍ରତି ବିଶ୍ୱାସ ରଖିବା ଏବଂ ସମସ୍ତ ଈଶ୍ୱରଦୂତମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ମୁସଲମାନ ହେବାପାଇଁ ଏକ ମୌଳିକ ସର୍ତ୍ତ । କିନ୍ତୁ କୁର୍‌ଆନ ଅନୁଯାୟୀ ପୂର୍ବ ଦିବ୍ୟଶିକ୍ଷାଗୁଡ଼ିକରେ ଅନେକ ପରିବର୍ତ୍ତନ ଓ ପ୍ରକ୍ଷେପଣ ହୋଇସାରିଛି, ଯାହାର ସଂଶୋଧନ କୁର୍‌ଆନ କରିଛି । ଏହା ଦିବ୍ୟ ଧର୍ମଧାରାର ଅନ୍ତିମ ସଂସ୍କରଣ ଏବଂ ବିଶୁଦ୍ଧ ବ୍ରହ୍ମବାଣୀ । ତେଣୁ ଏହା ମଣିଷକୁ ପଥଭ୍ରଷ୍ଟ କରିବ ନାହିଁ ।

ଦ୍ୱିତୀୟତଃ, ଈଶ୍ୱରଙ୍କ ବାର୍ତ୍ତା ବହନ କରିଥିବା ବାର୍ତ୍ତାବହ ହିଁ ବ୍ରହ୍ମବାଣୀର ଅର୍ଥ କରନ୍ତି ଏବଂ ଧର୍ମ ବିଧିର ବ୍ୟାଖ୍ୟା କରିଥାନ୍ତି । ବିଭିନ୍ନ ଉପାସନା ଓ କର୍ମକାଣ୍ଡର ପଦ୍ଧତି ତାଙ୍କରି ଅନ୍ତରରେ ପ୍ରକଟିତ ହୋଇଥାଏ ଏବଂ ସେ ନିଜେ ମଧ୍ୟ ସେଗୁଡ଼ିକୁ ପାଳନ କରନ୍ତି । ତେଣୁ ତାଙ୍କରି ଅନୁକରଣ କରିବାପାଇଁ ତତ୍କାଳୀନ ଜନସମାଜକୁ ନିର୍ଦ୍ଦେଶ ଦିଆଯାଇଥାଏ । ସୁତରାଂ ସେହି ଧର୍ମଦୂତଙ୍କର ଦୈନନ୍ଦିନ କର୍ମମୟ ଜୀବନର ଇତିହାସ ବିନା ଈଶ୍ୱରଙ୍କର ଆଦେଶଗୁଡ଼ିକର ପାଳନ ସମ୍ଭବ ନୁହେଁ । ବର୍ତ୍ତମାନ କେବଳ କୁର୍‌ଆନର ବାର୍ତ୍ତା ଆଣିଥିବା ବାର୍ତ୍ତାବହଙ୍କର ସମ୍ପୂର୍ଣ୍ଣ ଜୀବନ ଇତିହାସ ରହିଛି, ଯାହା ସହାୟତାରେ ତାଙ୍କର ଅନୁକରଣ କରି ଈଶ୍ୱରଙ୍କର ସେବା ଉପାସନା କରାଯାଇପାରେ । ମହାମାନ୍ୟ ଧର୍ମଦୂତ ମୁହମ୍ମଦଙ୍କ ବ୍ୟତୀତ ଈଶ୍ୱରଙ୍କର ଅନ୍ୟ କୌଣସି ଧର୍ମପ୍ରବର୍ତ୍ତକଙ୍କର ଜୀବନୀ ବିଶଦ ଭାବରେ ଇତିହାସ ପୃଷ୍ଠାରେ ନାହିଁ ।

ତୃତୀୟତଃ, ଅନ୍ତିମ ଦିବ୍ୟଗ୍ରନ୍ଥ ହୋଇଥିବା ଦୃଷ୍ଟିରୁ ମଧ୍ୟ କୁର୍‌ଆନର ଆଦେଶ ପାଳନୀୟ । ଉଦାହରଣ ସ୍ୱରୂପ, ଜଣେ ପିତା ଦୂରରେ ରହୁଥିବା ନିଜ ସନ୍ତାନକୁ ବିଭିନ୍ନ ଉପଦେଶ ଦେଇ ଏକାଧିକ ପତ୍ର ଲେଖିଥାଆନ୍ତି । ସନ୍ତାନର ବୟସ, ବୁଦ୍ଧି, ପାରିପାର୍ଶ୍ୱିକ ଅବସ୍ଥା ଏବଂ ତତ୍କାଳୀନ ସମୟର ଆବଶ୍ୟକତାକୁ ନେଇ ପିତାଙ୍କ ବିଭିନ୍ନ ଉପଦେଶଗୁଡ଼ିକରେ କେତେକ ପରିବର୍ତ୍ତନ ମଧ୍ୟ ଘଟିଥାଏ । ମନେ କରନ୍ତୁ, ଜଣେ ପୁତ୍ର ନିକଟକୁ ପିତାଙ୍କଠାରୁ ବିଭିନ୍ନ ସମୟରେ ଏକାଧିକ ଚିଠି ଆସିଛି । କିଶୋର ଜୀବନ, କଲେଜ ଜୀବନ ଏବଂ ବିବାହିତ ଜୀବନରେ ସେ ପୁତ୍ରକୁ ବିଭିନ୍ନ ଉପଦେଶ ଦେଇ ଆସିଛନ୍ତି । ଗୋଟିଏ ଚିଠି ଏବେ ସଦ୍ୟ ଆସିଛି । ବର୍ତ୍ତମାନ ପୁଅ ବାପାଙ୍କର ସବୁ ଚିଠିଗୁଡ଼ିକୁ ଧରି ବସିଛି ଏବଂ ସେଗୁଡ଼ିକ ମଧ୍ୟରେ ସେ କେତେକ ଭିନ୍ନତା ମଧ୍ୟ ଲକ୍ଷ୍ୟ କରୁଛି । ସମସ୍ତ ଚିଠି ତ ତା' ନିଜ ବାପାଙ୍କର, କିନ୍ତୁ ସେ ବର୍ତ୍ତମାନ କେଉଁ ଚିଠିର ଆଦେଶ ପାଳନ କରିବ ? ନିଶ୍ଚିତ ଭାବରେ ଅନ୍ତିମ ଆଦେଶ ପାଳନ କରିବା ଉଚିତ । ଏହାହିଁ ଜଣେ ମୁସଲମାନ କରେ । ସେ ସମସ୍ତ ଦିବ୍ୟଗ୍ରନ୍ଥଗୁଡ଼ିକୁ ଈଶ୍ୱରଙ୍କର ବୋଲି ବିଶ୍ୱାସ କରୁଥିଲେ ମଧ୍ୟ କୁର୍‌ଆନର ଅନୁପାଳନ କରିବା ପାଇଁ ବାଧ୍ୟ ।



**ଅଷ୍ଟମ ଅଧ୍ୟାୟ**

# ବିଶ୍ୱର ମହାନ ଗ୍ରନ୍ଥମାନଙ୍କରେ ମହାମାନ୍ୟ ମୁହମ୍ମଦ

ଯେମିତି ଈଶ୍ୱର କେବଳ ଏକ ନିର୍ଦ୍ଦିଷ୍ଟ ଜାତି ବା ସମ୍ପ୍ରଦାୟର ନୁହଁନ୍ତି, ସେହିପରି ମହାମାନ୍ୟ ମୁହମ୍ମଦ କେବଳ ମୁସଲମାନମାନଙ୍କର ନୁହଁନ୍ତି । ସେ ସମୁଦାୟ ମନୁଷ୍ୟ ଜାତିର ଏବଂ ସମସ୍ତେ ତାଙ୍କ ଶିକ୍ଷାରୁ ଲାଭବାନ ହୋଇପାରିବେ । ବିଶ୍ୱର ବିଭିନ୍ନ ଗ୍ରନ୍ଥମାନଙ୍କରେ ମହାମାନ୍ୟ ମୁହମ୍ମଦଙ୍କ ଆବିର୍ଭାବର ପ୍ରାକ୍ ସୂଚନାରୁ ଜଣାପଡ଼େ ସତେଯେପରି ହଜାର ହଜାର ବର୍ଷ ପୂର୍ବରୁ ବିଶ୍ୱ ଏହି ମହାମାନବଙ୍କର ପ୍ରତୀକ୍ଷାରତ । ବୌଦ୍ଧ, ପାର୍ସି, ୟହୁଦୀ ଓ ଖ୍ରୀଷ୍ଟ ଧର୍ମଗ୍ରନ୍ଥ ବ୍ୟତୀତ ହିନ୍ଦୁଧର୍ମର ପ୍ରାଚୀନ ଗ୍ରନ୍ଥମାନଙ୍କରେ ମଧ୍ୟ ତାଙ୍କ ବିଷୟରେ ଏପରି ସ୍ପଷ୍ଟ ଭବିଷ୍ୟବାଣୀ କରାଯାଇଛି ଯାହା କି ଅନ୍ୟ କାହାରି ପାଇଁ ପ୍ରଯୁଜ୍ୟ ହୋଇ ନପାରେ ।

## ପାର୍ସି ଧର୍ମଗ୍ରନ୍ଥ

ମହାମାନ୍ୟ ଜୋରାଷ୍ଟରଙ୍କ ପ୍ରଚାରିତ ଧର୍ମକୁ ଜୋରାଷ୍ଟାରିୟାନ ବା ପାର୍ସି ଧର୍ମ କୁହାଯାଏ । ଏହା ଇରାନର ସର୍ବ ପ୍ରାଚୀନଧର୍ମ । ଏହି ଧର୍ମର ମୁଖ୍ୟ ଗ୍ରନ୍ଥ ହେଉଛି ଜେନ୍ଦ୍ ଆଭେସ୍ତା ଏବଂ ଦସାତୀର । ଜେନ୍ଦ୍ ଆଭେସ୍ତା ତିନି ଭାଗରେ ବିଭକ୍ତ, ଯଥା—ଭେନ୍ଦିଦାଦ, ୟାସ୍ତ ଏବଂ ଗାଥା । ଜୋରାଷ୍ଟାରିୟାନ୍‌ମାନେ ଈଶ୍ୱରଙ୍କୁ ଆହୁରା-ମାଜ୍‌ଦା କୁହନ୍ତି । ଆହୁର୍ ଅର୍ଥ ପ୍ରଭୁ ଏବଂ ମାଜ୍‌ଦା ଅର୍ଥ ଜ୍ଞାନ । ଅର୍ଥାତ୍ "ଜ୍ଞାନୀ ପ୍ରଭୁ" । ଦସାତୀର୍ ଗ୍ରନ୍ଥରେ ଆରବର ଜଣେ ଈଶ୍ୱରଦୂତଙ୍କ ଆବିର୍ଭାବ ବିଷୟରେ ସ୍ପଷ୍ଟ ଭବିଷ୍ୟବାଣୀ ରହିଛି, ଯାହାକି କେବଳ ମହାମାନ୍ୟ ମୁହମ୍ମଦଙ୍କ ବ୍ୟତୀତ ଅନ୍ୟ କାହାରି ପାଇଁ ପ୍ରଯୁଜ୍ୟ ହୋଇ ନପାରେ । ମୂଳ ଭବିଷ୍ୟତବାଣୀର ଫଟୋକପି ନିମ୍ନରେ ଉଦ୍ଧାର କରାଯାଉଛି ।[1]

---

[1] Muhammad in the World Scriptures Vol.III,2nd Edition, Lahore, 1975 p.990, ଅନ୍ତିମ ସନ୍ଦେଷ୍ଟା, ଲକ୍ଷ୍ନୌ, ପୃ-୭୬ ।

(۵۴) چم چمیم کا جام کمند هرتوار جیام ورتاه هیتال هود
⁂ چون چنین کارها کنند از تازیان مروی پیدا شود (۵۵) یو هزار
تسا مام هو هیرتاک و نیرتاک وسیمراکت و امیراکت
سرویم ارتد ⁂ که از پیروان او دیهیم وتخت وکشور واین همه
برافتد (۵۶) وهو ندهرورکتام هیودام ⁂ وشوندسر
کشان زیردستان (۵۷) بیرن فه شای نیار وسیمار کسوار
آبادلی جوار هده یوستا ⁂ ببینند بجای پیکرگاه وآتش
کده خانه آبادی بی پیکر شده نماز بردن سو ⁂ خانه که در تازیان آنست
وریگ ها ماوران ساخته آباد است ودران پیکرهای اختران بود گویند شود
خانه نماز بردن سو وبرداشته شود از پیکرها (۵۸) وهوزد هوش
شنشور ⁂ وفراآب شود (۵۹) وتدراهند شای
سیمارام مدیرد انتورام هام ونیغود ویوناک وشایام
شمناد ⁂ وبازستانند جای آتشکده های مداین وگردهای آن
وتوس وبلخ وجاهای بزرگ (۶۰) وهایم هارهیشام ورتاه یامد
هرتال وسمین هودم هن بلزیده ⁂ وآیین گرایشان مردے
باشد سخنور وسخن او درهم بچپیده (۶۱)

99. Photo Block of the *Dasatir* prophecy taken from the copy of it at the state Library Hyderabad Deccan, 1935 compared with the copy of British Museum library London, 1962.

**ଭାବାର୍ଥ :**

"ଯେତେବେଳେ ଜୋରାଷ୍ଟାରିୟାନମାନେ ଧର୍ମ ପରିତ୍ୟାଗ କରି ଦୁଃଶ୍ଚରିତ୍ର ହୋଇଯିବେ, ସେତେବବେଳେ ଆରବ ଦେଶରେ ଜଣେ ବ୍ୟକ୍ତି ପ୍ରକଟ ହେବେ ଯାହାଙ୍କର ଅନୁଗାମୀମାନେ ଇରାନ ଜୟ କରି ଉଦ୍ଧତ ପାର୍ସିମାନଙ୍କୁ ଦମନ କରିବେ । ମନ୍ଦିରରେ ଅଗ୍ନି ଉପାସନା କରିବା ପରିବର୍ତ୍ତେ ସେମାନେ ଇବ୍ରାହିମଙ୍କ ନିର୍ମିତ କାବାକୁ ବିଗ୍ରହମୁକ୍ତ କରିବେ ଏବଂ ଇରାନୀମାନଙ୍କର ମୁହଁକୁ ପ୍ରାର୍ଥନା (ନମାଜ) ପାଇଁ କାବା ଆଡ଼କୁ ବୁଲାଇଦେବେ। (ଆରବ ଈଶ୍ୱରଦୂତଙ୍କର) ଏହି ଅନୁଗାମୀମାନେ ଜଗତ ପାଇଁ କୃପା ସଦୃଶ ହେବେ। ସେମାନେ ପାରସ୍ୟ, ମଦୟନ, ତୁସ୍, ବଲ୍‌ଖ ଏବଂ ପଡ଼ୋଶୀ ରାଜ୍ୟଗୁଡ଼ିକୁ ଦଖଲ କରିନେବେ । ସେମାନଙ୍କର ଧର୍ମଦୂତ ବାଗ୍ମୀତାସଂପନ୍ନ ଏବଂ ଚମତ୍କାର ବାଣୀଯୁକ୍ତ ହେବେ।"[2]

ଦସାତୀର୍ ଭବିଷ୍ୟବାଣୀ କରିଛି ଯେ—

୧. ପାର୍ସି ଧର୍ମ କଳୁଷିତ ହେବ ।
୨. ଆଗନ୍ତୁକ ଧର୍ମସଂସ୍କାରକ ଆରବ ନିବାସୀ ହେବେ ।
୩. ଇରାନ୍ ଭଳି ମହାଶକ୍ତି ମଧ୍ୟ ଆରବ ଦ୍ୱାରା ପରାଜିତ ହେବ ।
୪. କାବା ପୀଠ ବିଗ୍ରହମୁକ୍ତ ହେବ ।

---

(2) "The sum and substance of the prophecy is, that when the Zoroastrian people will forsake their religion and will become disclosure, a man will rise in Arabia whose followers will conquer Persia and subjugate the arrogant Persians. Instead of worshipping fire in their own temples, they will turn their faces in prayer towards Ka'ba of Abraham which will be cleared of all idols. They (the folowers of the Arabian prophet), will be a mercy unto the world. They will become masters of Persia, Madain, Tus, Balkh, the sacred places of the Zoroastrians and the neighbouring territories. Their prophet will be an eloquent man telling miraculous things." (Muhammad in the World Scriptures, Vol.III, 2nd Edition, Lahore,1975 p.991)

୫. ନୂତନ ଈଶ୍ୱରଦୂତଙ୍କର ଅନୁଗାମୀମାନେ କାବା ଆଡ଼କୁ ମୁହଁ କରି ନମାଜ ପଢିବେ ।
୬. ଧର୍ମଦୂତଙ୍କର ବାଣୀ ଚମତ୍କାରିତାପୂର୍ଣ୍ଣ ହେବ ।
୭. ସମଗ୍ର ଇରାନ ମୁସଲମାନମାନଙ୍କ ଅଧିନକୁ ଆସିଯିବ ।

ଉପରୋକ୍ତ କଥାଗୁଡ଼ିକ କେବଳ ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ବ୍ୟତୀତ ଆଉ କାହା ପାଇଁ ପ୍ରଯୁଜ୍ୟ ହୋଇପାରେ ?

## ବୌଦ୍ଧ ଧର୍ମଗ୍ରନ୍ଥ

ଗୌତମ ବୁଦ୍ଧ ନିଜର ଅନ୍ତିମ ସମୟରେ ଶିଷ୍ୟ ଆନନ୍ଦଙ୍କୁ ଗୋଟିଏ ମହତ୍ୱପୂର୍ଣ୍ଣ ଭବିଷ୍ୟବାଣୀ କରିଥିଲେ ଯାହା ନିମ୍ନରେ ଉଦ୍ଧୃତ କରାଯାଉଛି :

> "ଏବଂ ଆନନ୍ଦ ନିଜର କୋହକୁ ନିୟନ୍ତ୍ରଣ କରି ଗୌତମ ବୁଦ୍ଧଙ୍କୁ ପଚାରିଲେ—ଆପଣଙ୍କ ପରେ କିଏ ଆମର ମାର୍ଗଦର୍ଶନ କରିବ ? ବୁଦ୍ଧ ଉତ୍ତର ଦେଲେ—ମୁଁ ସଂସାରରେ ଆସିଥିବା ପ୍ରଥମ କିମ୍ବା ଶେଷ ବୁଦ୍ଧ ନୁହେଁ। ପ୍ରକୃଷ୍ଟ ସମୟରେ ଆଉ ଜଣେ ବୁଦ୍ଧ ପ୍ରକଟ ହେବେ ଯିଏ କି ଅତି ପବିତ୍ର, ଜ୍ଞାନାଲୋକପ୍ରାପ୍ତ, ସଦାଚରଣଯୁକ୍ତ, ଶୁଦ୍ଧମନା, ଜଗତଜ୍ଞାନୀ, ଅନୁପମ ଜନନାୟକ ତଥା ଦେବ ଓ ମାନବଙ୍କର ସ୍ୱାମୀ । ସେ ସେହି ଚିରନ୍ତନ ସତ୍ୟ ପ୍ରକାଶ କରିବେ ଯାହାର ଶିକ୍ଷା ମୁଁ ତୁମମାନଙ୍କୁ ଦେଇଛି, ସେ ତାଙ୍କର ସେହି ଧର୍ମର ପ୍ରଚାର କରିବେ ଯାହାର ଆଦ୍ୟ ଓ ଅନ୍ତ ଉତ୍ତମ, ଲକ୍ଷ୍ୟ ଉତ୍ତମ ଏବଂ ଭାଷା ଓ ଭାବ ମଧ୍ୟ ଉତ୍ତମ । ସେ ଏକ ବିଶୁଦ୍ଧ ଓ ପରିପୂର୍ଣ୍ଣ ଧର୍ମ ବ୍ୟବସ୍ଥାର ପ୍ରଚାର କରିବେ ଯେପରି ମୁଁ ବର୍ତ୍ତମାନ କରୁଛି । ମୋର ଶିଷ୍ୟ ସଂଖ୍ୟାରେ ମାତ୍ର କେଇ ଶହ, ମାତ୍ର ତାଙ୍କର ଶିଷ୍ୟ ହଜାର ହଜାର ସଂଖ୍ୟାରେ ହେବେ । ଆନନ୍ଦ ପଚାରିଲେ—ଆମେ ତାଙ୍କୁ କିପରି ଚିହ୍ନିବୁ ? ବୁଦ୍ଧ ଉତ୍ତର ଦେଲେ—ସେ ମୈତ୍ରୀୟ ରୂପେ ପରିଚିତ ହେବେ, ଯାହାର ଅର୍ଥ 'ଦୟା' ।"[3]

---

(3) "And Ananda, suppressing his tears, said to the Blessed One: "Who shall teach us when thou art gone?" And the Blessed

ଗୌତମ ବୁଦ୍ଧଙ୍କର କଥାରୁ ଏହା ସ୍ପଷ୍ଟ ଜଣାପଡ଼େ ଯେ, ଅନେକ ବୁଦ୍ଧ ଆସିଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଗୌତମ ବୁଦ୍ଧ ଅନ୍ୟତମ । ସେ ଏହା ମଧ୍ୟ ସ୍ପଷ୍ଟ କରି କହିଲେ ଯେ, ସେ ଅନ୍ତିମ ନୁହଁନ୍ତି; ବରଂ ତାଙ୍କ ପରି ଜଣେ ବୁଦ୍ଧ ଆସିବେ ଯିଏ କି କୌଣସି ନୂତନ ଧର୍ମର ନୁହେଁ; ବରଂ ପୂର୍ବ ଦିବ୍ୟଧର୍ମର ପୁନଃସ୍ଥାପନ କରିବେ ଏବଂ ଏକ ବିଶୁଦ୍ଧ ଓ ପରିପୂର୍ଣ୍ଣ ବିଧାନ ଦେବେ । ଆଗନ୍ତୁକ ବୁଦ୍ଧ ଜଣକ ମୈତ୍ରୀୟ ବା 'ଦୟାବାନ' ନାମରେ ପରିଚିତ ହେବେ ।

ସଂସ୍କୃତ ଶବ୍ଦ 'ମୈତ୍ରୀୟ' ବା ପାଲି ଭାଷାରେ 'ମେତେୟ' ଉଭୟର ଅର୍ଥ ଦୟାବାନ ଏବଂ ଏହାର ଅର୍ଥ ମଧ୍ୟ ଦୟା । ଆରବୀ ଶବ୍ଦ 'ରହମତ' 'ମୈତ୍ରୀୟ'ର ଅନୁରୂପ । ମହାମାନ୍ୟ ମୁହମ୍ମଦଙ୍କର ଏକ ଗୁଣାତ୍ମକ ନାମ ହେଉଛି 'ରହମତୁଲ୍ ଲିଲ୍ ଆଲମିନ୍' ଅର୍ଥାତ୍ 'ଜଗତ ପାଇଁ କୃପା' । ଯେହେତୁ ମହାମାନ୍ୟ ଈଶ୍ୱରଦୂତ ସମୁଦାୟ ବିଶ୍ୱର କଲ୍ୟାଣ କାମନା କରୁଥିଲେ, କୁର୍‌ଆନ ତାଙ୍କୁ 'ଜଗତ ପାଇଁ କୃପା' ବୋଲି ଅଭିହିତ କରି କହିଛି—

> ''(ହେ ମୁହମ୍ମଦ) ଆମ୍ଭେ ତୁମକୁ ସମୁଦାୟ ଜଗତ ନିମନ୍ତେ କୃପାସ୍ୱରୂପ ପ୍ରେରଣ କରିଅଛୁ ।''

**(କୁର୍‌ଆନ ୨୧ : ୧୦୭)**

---

One replied : "I am not the first Buddha who came upon earth, nor shall I be the last. In due time another Buddha will arise in the world, a Holy One, a supremely enlightened One, endowed with wisdom in conduct, auspicious, knowing the universe, an incomparable leader of men, a master of angels and mortals. He will reveal to you the same eternal truths which I have taught you. He will preach his religion, glorious in its origin, glorious at the climax, and glorious at the goal, in the spirit and in the letter. He will proclaim a religious life, wholly perfect and pure; such as I now proclaim. His disciples will number many thousand, while mine number many hundred." Ananda said : " How shall we know him? " The Blessed One said : " He will be known as Mai-treya, which means 'he whose name is kindness.' " (Gospel of Buddha, Paul Carus, 9th Edition, Chicago, 1904, pp.217-218)

ଡକ୍ଟର ବେଦପ୍ରକାଶ ଉପାଧ୍ୟାୟ ତାଙ୍କ ପୁସ୍ତକ 'ନରାଶଂସ ଓ ଅନ୍ତିମ ଋଷି'ର ଷଷ୍ଠ ଅଧ୍ୟାୟରେ ମହାମାନ୍ୟ ମୁହମ୍ମଦ ଯେ ମୈତ୍ରୀୟ ତଥା ଅନ୍ତିମ ବୁଦ୍ଧ, ଏହା ପ୍ରମାଣ କରିଛନ୍ତି ।[4]

ସେହିପରି ଡକ୍ଟର ବିଦ୍ୟାର୍ଥୀ ମଧ୍ୟ 'ପାର୍ସି, ହିନ୍ଦୁ ଓ ବୌଦ୍ଧଗ୍ରନ୍ଥରେ ମୁହମ୍ମଦ' ନାମକ ଏକ ଗବେଷଣାଧର୍ମୀ ଗ୍ରନ୍ଥ ଲେଖିଛନ୍ତି, ଯେଉଁଥିରେ ସେ ଗୌତମ ବୁଦ୍ଧଙ୍କ ଭବିଷ୍ୟବାଣୀ ଉପରେ ବିସ୍ତୃତ ଭାବରେ ଆଲୋଚନା କରି ଏହା ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ଉଦ୍ଦିଷ୍ଟ, ଏହା ପ୍ରମାଣିତ କରିଛନ୍ତି ।[5]



---

(4) "Muhammed in Hindu Scriptures." P.36.

(5) "Muhammed in Parsi, Hindu and Buddhist Scriptures." pp.119-247.

# ହିନ୍ଦୁ ଧର୍ମଗ୍ରନ୍ଥ

## ବେଦ

ପ୍ରାଚୀନ ଧର୍ମଗ୍ରନ୍ଥ ବେଦର ଅନେକ ସ୍ଥାନରେ 'ନରାଶଂସ' ନାମକ ଜଣେ ଋଷିଙ୍କ ଆବର୍ଭାବ ବିଷୟରେ ସୂଚନା ଦିଆଯାଇଛି । ସଂସ୍କୃତ ଶବ୍ଦ 'ନରାଶଂସ'ର ଅର୍ଥ 'ପ୍ରଶଂସିତ ବ୍ୟକ୍ତି' । ନର ଅର୍ଥ ମନୁଷ୍ୟ ଏବଂ ଆଶଂସର ଅର୍ଥ ପ୍ରଶଂସିତ । ଆରବୀ ଭାଷାରେ ଅନୁବାଦ କଲେ ଏହା ହେବ 'ମୁହମ୍ମଦ' । ପଣ୍ଡିତ ବେଦପ୍ରକାଶ ଉପାଧ୍ୟାୟ ଲେଖିଛନ୍ତି ଯେ, 'ନରାଶଂସ' ଏବଂ 'ମୁହମ୍ମଦ' ଉଭୟର ଏକା ଅର୍ଥ ।[(1)] ଡକ୍ଟର ଉପାଧ୍ୟାୟ ଏହା ମଧ୍ୟ ପ୍ରମାଣିତ କରିଛନ୍ତି ଯେ, ମହାମାନ୍ୟ ମୁହମ୍ମଦ ହିଁ ସେହି ଅନ୍ତିମ ଋଷି ଯାହାଙ୍କ ଆବିର୍ଭାବ ବିଷୟରେ ବେଦ, ପୁରାଣ, ବାଇବଲ୍ ଏବଂ ବୌଦ୍ଧ ଧର୍ମଗ୍ରନ୍ଥଗୁଡ଼ିକରେ ଭବିଷ୍ୟତବାଣୀ କରାଯାଇଛି । ବେଦରେ ନରାଶଂସଙ୍କ ବିଷୟରେ କୁହାଯାଇଛି ଯେ—

୧. ସେ ନରାଶଂସ (ଆରବୀରେ 'ମୁହମ୍ମଦ') ।

**(ଅଥର୍ବବେଦ ୨୦ : ୧୨୭ : ୧)**

୨. ନରାଶଂସ ଓଟ ଆରୋହଣ କରୁଥିବା ଜଣେ ଋଷି ।

**(ଅଥର୍ବବେଦ ୨୦ : ୧୨୭ : ୨)**

ଏହି ଶ୍ଳୋକରେ ସ୍ୱଷ୍ଟ ଉଲ୍ଲେଖ ରହିଛି ଯେ, ଭବିଷ୍ୟତରେ ଆସିବାକୁ ଥିବା ଋଷିଜଣକ ମରୁସ୍ଥଳ ନିବାସୀ ହେବେ । ଭବିଷ୍ୟ ପୁରାଣରେ ମଧ୍ୟ ସ୍ୱଷ୍ଟ କୁହାଯାଇଛି ଯେ, ସେ ମରୁସ୍ଥଳ ନିବାସୀ ହେବେ ।[(2)]

ମହାମାନ୍ୟ ଈଶ୍ୱରଦୂତମାନେ ବିଶ୍ୱର ବିଭିନ୍ନ ଭାଗରେ ଜନ୍ମଗ୍ରହଣ କରନ୍ତି । ସେମାନେ ଯେଉଁଠି ଜନ୍ମଗ୍ରହଣ କରନ୍ତି, ସେହି ସ୍ଥାନର ଭାଷା କୁହନ୍ତି, ସେହି

---

(1) 'ନରାଶଂସ ଓ ଅନ୍ତିମ ଋଷି', ଡକ୍ଟର ବେଦପ୍ରକାଶ ଉପାଧ୍ୟାୟ

(2) ଭବିଷ୍ୟ ପୁରାଣ, ପ୍ରତିସର୍ଗ, ୩ୟ ପର୍ବ, ୩ୟ ଅଧ୍ୟାୟ, ମନ୍ତ୍ର-୬

ସମାଜରେ ପ୍ରଚଳିତ ପରିଧାନ ପିନ୍ଧନ୍ତି ଏବଂ ସେ ସମୟରେ ସେଠାରେ ଉପଲବ୍ଧ ଯାନବାହନ ଆଦିର ବ୍ୟବହାର ମଧ୍ୟ କରନ୍ତି । ତେଣୁ ମହାମାନ୍ୟ ମୁହମ୍ମଦ ଓଟ ଆରୋହଣ କରୁଥିଲେ । ଅନ୍ୟ କୌଣସି ଭାରତୀୟ ଋଷି ଓଟ ଆରୋହଣ କରୁନଥିଲେ, କାରଣ ହିନ୍ଦୁଶାସ୍ତ୍ର ଅନୁସାରେ ବ୍ରାହ୍ମଣମାନଙ୍କ ପାଇଁ ଓଟ ଆରୋହଣ କରିବା ନିଷିଦ୍ଧ ଥିଲା ।[3]

ଋଗ୍‌ବେଦରେ ମଧ୍ୟ କୁହାଯାଇଛି ଯେ, ନରାଶଂସ ଲୋକମାନଙ୍କୁ ପାପରୁ ଉଦ୍ଧାର କରିବେ (ଋଗ୍‌ବେଦ, ୧:୧୦୬:୪), ସେ ମିଷ୍ଟାଳାପୀ ହେବେ ଏବଂ ତାଙ୍କୁ ଦିବ୍ୟଜ୍ଞାନ ପ୍ରଦାନ କରାଯିବ (ଋଗ୍‌ବେଦ-୧:୩:୨) । ଏହାବ୍ୟତୀତ ଅଥର୍ବବେଦ ବିଂଶକାଣ୍ଡର ୧୨୭ତମ ସୂକ୍ତର ମନ୍ତ୍ର ସଂଖ୍ୟା ୧ରୁ ୧୩ରେ ମହାମାନ୍ୟ ମୁହମ୍ମଦଙ୍କ ସମ୍ପର୍କରେ ଅନେକ ଭବିଷ୍ୟବାଣୀ ରହିଛି ।

## ପୁରାଣ

ମହର୍ଷି ବ୍ୟାସଙ୍କ ରଚିତ ୧୮ଟି ପୁରାଣ ମଧ୍ୟରୁ ଭବିଷ୍ୟପୁରାଣ, ଭଗବତ ପୁରାଣ ଏବଂ କଲ୍‌କୀ ପୁରାଣ ଅନ୍ୟତମ । ଭବିଷ୍ୟ ପୁରାଣରେ ମହାମାନ୍ୟ ମୁହମ୍ମଦଙ୍କ ବିଷୟରେ ନିମ୍ନ ଭବିଷ୍ୟବାଣୀ ରହିଛି ।[4]

---

(3) ମନୁସଂହିତା, ୧୧ : ୨୦୨

(4) "A malechha (belonging to a foreign country and speaking foreign language) spiritual teacher will appear with his companions. His name will be Mohammad. Raja (Bhoj) after giving this Maha Dev Arab (of angelic disposition) a bath in the 'Panchgavya' and the Ganges water (i.e. purging him of all sins) offered him the presents of his sincere devotion and showing him all reverence said, "I make obeisance to thee, 'Oye! The pride of mankind, the dweller in Arabia, Ye have collected a great force to kill the Devil and you yourself have been protected from the malechha opponents. O Ye, the image of the Most Pious God the biggest Lord, I am a slave to thee, take me as one lying on thy feet."(Bhavishya Purana, Prati Sarga, Parva-3, Khanda-3, Adhyaya-3, Sloka No. 5 to 8) [Bhavishya Purana published by Venketeswar Press, Bombay and referred

एतस्मिन्नन्तिरे म्लेच्छ आचार्य्येण समन्वितः ।
महामद इति ख्यातः शिष्यशाखासमन्वितः ॥ ५ ॥
नृपश्चैव महादेवं मरुस्थलनिवासिनम् ।
गङ्गाजलैश्च संस्नाप्य पञ्चगव्यसमन्वितैः ।
चंदनादिभिरभ्यर्च्य तुष्टाव मनसा हरम् ॥ ६ ॥
भोजराज उवाच—नमस्ते गिरिजानाथ मरुस्थलनिवासिने ।
त्रिपुरासुरनाशाय बहुमायाप्रवर्त्तिने ॥ ७ ॥
म्लेच्छैर्गुप्ताय शुद्धाय सच्चिदानन्दरूपिणे ।
त्वं मां हि किंकरं विद्धि शरणार्थमुपागतम् ॥ ८ ॥

ମହର୍ଷି ବ୍ୟାସ ଉପରୋକ୍ତ ଶ୍ଳୋକଗୁଡ଼ିକରେ ପରିଷ୍କାର କହିଛନ୍ତି ଯେ,

୧. ଆବିର୍ଭାବ ହେବାକୁ ଥିବା ଆଚାର୍ଯ୍ୟ ବା ଋଷିଙ୍କର ନାମ 'ମୁହମ୍ମଦ' ହେବ ।
୨. ସେ ମରୁସ୍ଥଳ ନିବାସୀ ହେବେ ।
୩. ସେ ଦୁଷ୍ଟମାନଙ୍କୁ ବଧ କରିବେ ।
୪. ଶତ୍ରୁମାନଙ୍କଠାରୁ ତାଙ୍କୁ ସୁରକ୍ଷା ଦିଆଯିବ ।

ପଞ୍ଚମ ଶ୍ଳୋକରେ ମହାମାନ୍ୟ ମୁହମ୍ମଦଙ୍କ ନାମ ପ୍ରାଞ୍ଜଳ ଭାବେ ଉଲ୍ଲେଖ ରହିଛି ଏବଂ ତାଙ୍କୁ ଜଣେ ମ୍ଳେଚ୍ଛ ଆଚାର୍ଯ୍ୟ ବୋଲି କୁହାଯାଇଛି । ସଂସ୍କୃତ ଶବ୍ଦ 'ମ୍ଳେଚ୍ଛ' ସମ୍ପର୍କରେ ଲୋକମାନଙ୍କର ଭୁଲ୍ ଧାରଣା ରହିଛି । ଏହା କୌଣସି ଖରାପ ଅର୍ଥବୋଧକ ଶବ୍ଦ ନୁହେଁ । ଏହି ଶବ୍ଦ ଅଣ-ଆର୍ଯ୍ୟମାନଙ୍କ ପାଇଁ ବ୍ୟବହୃତ ହୁଏ । ଯେମିତି ଅଣ-ଆରବୀୟମାନଙ୍କ ପାଇଁ 'ଅଜ୍‌ମୀ' ବା ଅଣ-ୟହୁଦୀମାନଙ୍କ ପାଇଁ 'ଜେନ୍‌ଟାଇଲ୍' ଶବ୍ଦର ପ୍ରୟୋଗ ହୋଇଛି ।

---

by A.H. Vidyarthy in his work 'Muhammad in Parsi, Hindoo and Buddhist Scriptures' pp.36-39]

ପରବର୍ତ୍ତୀ ଶ୍ଳୋକଗୁଡ଼ିକରେ ଏହା ମଧ୍ୟ ଘୋଷଣା କରାଯାଇଛି ଯେ ସେ ମରୁସ୍ଥଳ ବା ଆରବ ନିବାସୀ ହେବେ । ଏହାବ୍ୟତୀତ ଏଠାରେ ଭବିଷ୍ୟପୁରାଣ ଗୋଟିଏ ଉଲ୍ଲେଖନୀୟ କଥା କହୁଛି ଯେ, ଶତ୍ରୁମାନଙ୍କଠାରୁ ତାଙ୍କୁ ରକ୍ଷା କରାଯିବ । ଇତିହାସରୁ ଆମେ ଜାଣିବାକୁ ପାଉ, ମହାମାନ୍ୟ ଈଶ୍ୱରଦୂତଙ୍କ ବିରୁଦ୍ଧରେ ମକ୍କା ଓ ମଦିନାରେ ଶତ୍ରୁମାନେ ଅନେକଥର ତାଙ୍କୁ ହତ୍ୟା କରିବାର ଷଡ଼ଯନ୍ତ୍ର କରିଥିଲେ; କିନ୍ତୁ ପ୍ରତ୍ୟେକଥର ବିଫଳ ହୋଇଥିଲେ । ତାଙ୍କୁ ହତ୍ୟା କରିବାପାଇଁ ସ୍ୱତନ୍ତ୍ର ଲୋକ ନିଯୁକ୍ତ ହେଲେ, ତାଙ୍କୁ ଖାଦ୍ୟରେ ବିଷ ମଧ୍ୟ ଦିଆଗଲା । ଯୁଦ୍ଧକ୍ଷେତ୍ରରେ ମଧ୍ୟ ତାଙ୍କ ପ୍ରାଣ ନେବାର ସବୁପ୍ରକାର ଚେଷ୍ଟା କରାଗଲା । ତଥାପି ସେ ସମ୍ପୂର୍ଣ୍ଣ ସୁରକ୍ଷିତ ରହିଲେ । ଏହାର କାରଣ ହେଉଛି ଯେ, ଈଶ୍ୱର ତାଙ୍କୁ ସୁରକ୍ଷା ଦେବାର ପ୍ରତିଶ୍ରୁତି କୁର୍‌ଆନରେ ଦେଇ ସାରିଥିଲେ—

''ଏବଂ ଅଲ୍ଲାହ ଲୋକମାନଙ୍କଠାରୁ ତୁମକୁ ରକ୍ଷା କରିବେ ।''

**(କୁର୍‌ଆନ, ୫ : ୬୭)**

ଭବିଷ୍ୟ ପୁରାଣର ଏହି ଅଧ୍ୟାୟର ଶ୍ଳୋକ ସଂଖ୍ୟା ୧୦ରୁ ୨୭ରେ ନିମ୍ନ ଭବିଷ୍ୟବାଣୀ ରହିଛି ।[5]

---

**(5)** "The Malechha have spoiled the well known land of the Arabs. Arya Dharma is not to be found in the country. Before also there appeared a misguided friend whom I had killed; he has now again appeared being sent by a powerful enemy. To show these enemies the right path and to give them guidance the well-known Mohamad (Muhammad), who has been given by me the epithet of Brahma, is busy in bringing the 'Pishachas' to the right path. O Raja, you need not go to the land of the foolish Pishachas, you will be purified through my kindness even where you are at night, he of the angelic disposition, the shrewd man, in the guise of a Pischacha said to Raja Bhoj, O Raja! Your Arya Dharma has been made to prevail over all religions, but according to the commandment of Ishwar Parmatma, I shall enforce the strong need of the meat eaters. My follower will be a man circumcised, without a tail (on his head), keeping beard, creating a revolution announcing Adhan (call for prayer) and will be eating all lawful things. He will eat all sorts of animals except swine. They will not seek purification from the holy shrubs, but will be purified through

म्लेच्छैस्सुदूषिता भूमिर्वाहीका नाम विश्रुता ।
आर्य्यधर्मो हि नैवात्र वाहीके देशदारुणे ॥ १० ॥
बाभूवात्र महामायी योऽसौ दग्धो मया पुरा ।
त्रिपुरो वलिदैत्येन प्रेषितः पुनरागतः ॥ ११ ॥
अयोनिः स वरो मत्तः प्राप्तवान्दैत्यवर्द्धनः ।
महामद इति ख्यातः पैशाचकृतितत्परः ॥ १२ ॥
नागन्तव्यं त्वया भूप पैशाचे देशधूर्तके ।
मत्प्रसादेन भूपाल तव शुद्धि प्रजायते ॥ १३ ॥
इति श्रुत्वा नृपश्चैव स्वदेशान्पु नरागमतः ।
महामदश्च तैः सार्द्धं सिंधुतीरमुपाययौ ॥ १४ ॥
उवाच भूपतिं प्रेम्णा मायामदविशारदः ।
तव देवो महाराजा मम दासत्वमागतः ॥ १५ ॥
ममोच्छिष्टं सभुंजीयाद्यथा तत्पश्य भो नृप ।
इति श्रुत्वा तथा दृष्ट्वा परं विस्मयमागतः ॥ १६ ॥
म्लेच्छधर्मे मतिश्चासीत्तस्य भूपस्य दारुणे ॥ १७ ॥
तच्छ्रुत्वा कालिदासस्तु रुषा प्राह महामदम् ।
माया ते निर्मिता धूर्त नृपमोहनहेतवे ॥ १८ ॥
हनिष्यामिदुराचारं वाहीकं पुरुषाधमम् ।
इत्युक्त्वा स जिद्धः श्रीमान्नवार्णजपतत्परः ॥ १९ ॥
जप्त्वा दशसहस्रंच तद्दशांशं जुहाव सः ।
भस्म भूत्वा स मायावी म्लेच्छदेवत्वमागतः ॥२० ॥

warfare. On account of their fighting the irreligious nations, they will be known as 'Musalmans'. I shall be the originator of the religion of the meat-eating nation" (Bhavishya Purana, Prati Sarga, Parva-3, Khanda-3, Adhyaya-3, Sloka No. 10 to 27)

भयभीतास्तु तच्छिष्या देशं वाहीकमाययुः ।
गृहीत्वा स्वगुरोर्भस्म मदहीनत्वामागतम् ।। २१ ।।
स्थापितं तैश्च भूमध्येतत्रोषुर्मदतत्पराः ।
मदहीनं पुरं जातं तेषां तीर्थं समं स्मृतम् ।। २२ ।।
रात्रौ स देवरूपश्च बहुमायाविशारदः ।
पैशाचं देहमास्थाय भोजराजं हि सोऽब्रवीत् ।। २३ ।।
आर्य्यधर्मो हि ते राजन्सर्वधर्मोत्तमः स्मृतः ।
ईशाज्ञया करिष्यामि पैशाचं धर्मदारुणम् ।। २४ ।।
लिङ्गच्छेदी शिखाहीनः श्मश्रु धारी स दूषकः ।
उच्चालापी सर्वभक्षी भविष्यति जनो मम ।। २५ ।।
विना कौलं च पशवस्तेषां भक्षया मता मम ।
मुसलेनैव संस्कारः कुशैरिव भविष्यति ।। २६ ।।
तस्मान्मुसलवन्तो हि जातयो धर्मदूषकाः ।
इति पैशाचधर्मश्च भविष्यति मया कृतः ।। २७ ।।

ଏଥିରେ କୁହାଯାଇଛି—

୧. ଦୂରାଚାରୀମାନେ ଆରବ ଭୂମିକୁ ଦୂଷିତ କରିଛନ୍ତି ।

୨. ସେ ଦେଶରୁ ଆର୍ଯ୍ୟଧର୍ମ ଲୋପ ପାଇଛି ।

୩. ଈଶ୍ୱରଦୂତଙ୍କର ଆବିର୍ଭାବ ଆର୍ଯ୍ୟଧର୍ମ ବିଶ୍ୱାସ (ଏକେଶ୍ୱରବାଦ)ର ପୁଷ୍ଟି କରିବ ।

୪. ପ୍ରସିଦ୍ଧ ମୁହମ୍ମଦ ଦୁରାଚାରୀମାନଙ୍କୁ ସତ୍‌ମାର୍ଗ ପ୍ରଦର୍ଶନ କରିବେ ଏବଂ ପଥଭ୍ରଷ୍ଟମାନଙ୍କୁ ବାଟକୁ ଆଣିବେ ।

୫. ଏହି ଧର୍ମଦୂତଙ୍କ ଅନୁଗାମୀମାନେ ତ୍ୱକ୍‌-ଛେଦନ କରିବେ, ବା 'ସୁନ୍ନତ' ହେବେ ।

୬. ସେମାନେ ମୁଣ୍ଡରେ ଚୁଟି ରଖିବେ ନାହିଁ; କିନ୍ତୁ ଦାଢ଼ି ରଖିବେ ଏବଂ ପ୍ରାର୍ଥନା ପାଇଁ ଉଚ୍ଚସ୍ୱରରେ ଡାକିବେ ଅର୍ଥାତ୍ ମସ୍‌ଜିଦମାନଙ୍କରେ ନମାଜ ପାଇଁ ଅଜାନ୍ ଦେବେ ।

୭. ସେମାନେ ସବୁ ଶୁଦ୍ଧ ଖାଦ୍ୟ ଖାଇବେ; କିନ୍ତୁ ଘୁଷୁରି ମାଂସ ଖାଇବେ ନାହିଁ ।

୮. ସେମାନଙ୍କୁ 'ମୁସଲମାନ' କୁହାଯିବ ।

୯. ସେମାନେ ମାଂସାହାରୀ ହେବେ ।

ଏହି ଭବିଷ୍ୟତବାଣୀଗୁଡ଼ିକ କେବଳ ମହାମାନ୍ୟ ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ପ୍ରଯୁଜ୍ୟ । ଏହାବ୍ୟତୀତ ଏହି ପୁରାଣରେ ଈଶ୍ୱରଦୂତଙ୍କ ସମୟରେ ଆର୍ଯ୍ୟଧର୍ମର ଅବସ୍ଥା ଏବଂ ଇସ୍‌ଲାମର ବାସ୍ତବିକତା ବିଷୟରେ ଅନେକତ୍ର ବର୍ଣ୍ଣନା ରହିଛି ।[6]

ଏଥିରେ କୁହାଯାଇଛି ଯେ—

୧. ଇସ୍‌ଲାମ ଧର୍ମାବଲମ୍ବୀମାନେ ସାହସୀ ଓ ବୁଦ୍ଧିମାନ ହେବେ ।

୨. ମୁସଲମାନମାନେ ସବୁପ୍ରକାର ଶୁଭଗୁଣଯୁକ୍ତ ହେବେ ଏବଂ ଆର୍ଯ୍ୟଭୂମିରେ ସବୁ ପ୍ରକାରର ଦୂରାଚାର ପ୍ରବେଶ କରିବ ।

୩. ଇସ୍‌ଲାମ ଭାରତ ଓ ଏହାର ମହାଦ୍ୱୀପଗୁଡ଼ିକୁ ଶାସନ କରିବ ।

ସେହିପରି ଭାଗବତ ପୁରାଣ ଓ କଲ୍‌କୀ ପୁରାଣ ମଧ୍ୟ ମହାମାନ୍ୟ ମୁହମ୍ମଦଙ୍କ ସମ୍ପର୍କରେ ପରିଷ୍କାର ଭବିଷ୍ୟତବାଣୀ କରି ତାଙ୍କୁ କଲ୍‌କୀ ଅବତାର ରୂପେ ବର୍ଣ୍ଣନା କରିଛନ୍ତି ।

କଲ୍‌କୀ ଅବତାରଙ୍କ ଆବିର୍ଭାବ ସ୍ଥଳ ବିଷୟରେ ପୁରାଣ କହେ ଯେ, ସେ ଶମ୍ଭଲ ଗ୍ରାମରେ ବିଷ୍ଣୁଯଶଙ୍କ ଘରେ ତାଙ୍କ ପତ୍ନୀ ସୁମତୀଙ୍କ ଗର୍ଭରୁ ଜନ୍ମ ହେବେ । (କଲ୍‌କୀ ପୁରାଣ, ୨:୪)

---

[6] "Corruption and persecution are in seven sacred cities of Kashi etc. India is inhabited by Rakshas, Shabar, Bhil and other foolish people. In the land of 'Malechhas', the followers of the 'Malechha dharma' (Islam) are wise and brave people. All good qualities are found in Musalmans and all sorts of vices have accumulated in the land of the Aryas. Islam will rule in India and its islands. Having known these facts O Muni, glorify the name of thy Lord". (Bhavishya Purana, Parv III, Khand-1, Adhaya 4, Shloka 21-23.)

ଭାଗବତ ପୁରାଣ କହିଛି ଯେ, ସେ 'ଶମ୍ଭଲ' ଗ୍ରାମର ମୁଖ୍ୟ ବ୍ରାହ୍ମଣଙ୍କ ଘରେ ଜନ୍ମଗ୍ରହଣ କରିବେ ଏବଂ ତାଙ୍କ ପିତାଙ୍କ ନାମ 'ବିଷ୍ଣୁଯଶ' ହେବ ।

सम्भल ग्राम मुख्यस्य ब्राह्मणस्य महात्मनः ।
भवने विश्ष्णुयशसः कल्किः प्रादुभार्विष्यति ।।
**(ଭାଗବତ ପୁରାଣ, ୧୨:୨:୧୮)**

ତାଙ୍କ ମାତାଙ୍କ ନାମ 'ସୁମତୀ' ହେବ—

शम्भले विष्णु यशसो गृहे प्रादुर्भवाम्यहम् ।
सुमत्यांमातारि विभो ! पत्नीयां त्वन्निर्दशतः ।।
**(କଲ୍‌କୀ ପୁରାଣ, ୨:୪)**

ପଣ୍ଡିତ ବେଦପ୍ରକାଶ ଉପାଧ୍ୟାୟ ଲେଖିଛନ୍ତି ଯେ, 'ଶମ୍ଭଲ' ଅର୍ଥ 'ଶାନ୍ତିର ଘର' ଏବଂ ମକ୍କା ସହରକୁ 'ଶାନ୍ତିର ଘର' ବା ଆରବୀ ଭାଷାରେ 'ଦାରୁଲ୍-ଅମନ୍' କୁହାଯାଏ ।[7]

ଉପରୋକ୍ତ ଶ୍ଳୋକରେ କଲ୍‌କୀ ଅବତାରଙ୍କ ମାତାଙ୍କ ନାମ 'ସୁମତୀ' ବୋଲି ଉଲ୍ଲେଖ ଅଛି, ଯାହାର ଅର୍ଥ 'ଶାନ୍ତ ସ୍ୱଭାବର ମହିଳା' । ଏହାର ଆରବୀ ଅନୁବାଦ ହେଉଛି 'ଆମିନା' । ମହାମାନ୍ୟ ମୁହମ୍ମଦଙ୍କ ମାତାଙ୍କ ନାମ 'ଆମିନା' ଥିଲା ।

ପିତାଙ୍କ ନାମ ହେବ 'ବିଷ୍ଣୁଯଶ' । ପଣ୍ଡିତ ବେଦପ୍ରକାଶ ଉପାଧ୍ୟାୟ କୁହନ୍ତି ଯେ, ବିଷ୍ଣୁଯଶର ଅର୍ଥ 'ବିଷ୍ଣୁ ବା ଈଶ୍ୱରଙ୍କର ପୂଜାରୀ' । ମହାମାନ୍ୟ ମୁହମ୍ମଦଙ୍କ ପିତାଙ୍କ ନାମ ଥିଲା 'ଅବ୍ଦୁଲ୍ଲାହ', ଯାହାର ଅର୍ଥ 'ଅଲ୍ଲାହ ବା ଈଶ୍ୱରଙ୍କର ପୂଜାରୀ' ।

ପୁରାଣ କହେ ଯେ, ଅନ୍ତିମ ଅବତାର ଜଗଦ୍‌ଗୁରୁ ବା ଜଗତର ରକ୍ଷକ ହେବେ (ଭାଗବତ ପୁରାଣ, ୧୨:୨:୧୯) । ମହାମାନ୍ୟ ମୁହମ୍ମଦଙ୍କୁ ମଧ୍ୟ ଈଶ୍ୱର ଜଗଦ୍‌ଗୁରୁ ରୂପେ ନିଯୁକ୍ତ କରିଛନ୍ତି । ତେଣୁ କୁର୍‌ଆନ କହେ—

---

(7) "Kalki Avatar and Muhammad", Dr. Veda Prakash Upadhaya, Ch.VII.

''(ହେ ମୁହମ୍ମଦ) ଆପଣ କହିଦିଅନ୍ତୁ, ହେ ମନୁଷ୍ୟଗଣ ! ମୁଁ ତୁମମାନଙ୍କ ନିକଟକୁ ସେଇ ଅଲ୍ଲାହଙ୍କର ବାର୍ତ୍ତାବହ ହୋଇ ଆସିଛି, ଯିଏ କି ଧରିତ୍ରୀ ଓ ଆକାଶମଣ୍ଡଳର ସ୍ୱାମୀ ।''

**(କୁର୍‌ଆନ, ୭ : ୧୫୮)**

ସେହିପରି, ପୁରାଣ କହେ ଯେ ସ୍ୱର୍ଗଦୂତମାନଙ୍କ ଦ୍ୱାରା ଅନ୍ତିମ ଅବତାରଙ୍କର ସହାୟତା କରାଯିବ (କଲ୍‌କୀ ପୁରାଣ, ୨:୭) । ମହାମାନ୍ୟ ମୁହମ୍ମଦଙ୍କର ସ୍ୱର୍ଗଦୂତମାନଙ୍କ ଦ୍ୱାରା ବଦର ଯୁଦ୍ଧରେ ସହାୟତା କରାଯାଇଥିଲା (କୁର୍‌ଆନ, ୮:୯) ।

ଭାଗବତ ପୁରାଣ କହେ ଯେ, କଲ୍‌କୀ ଅବତାରଙ୍କ ଶରୀରରୁ ସୁଗନ୍ଧ ବାହାରିବ (ଭାଗବତ ପୁରାଣ, ୧୨:୨:୨୧) । ଆମେ ଇତିହାସରୁ ଜାଣୁ ଯେ, ଈଶ୍ୱରଦୂତଙ୍କ ଶରୀରରୁ ସୁଗନ୍ଧ ଆସୁଥିଲା ।

କଲ୍‌କୀ ଅବତାରଙ୍କର ଆଉ ଗୋଟିଏ ବୈଶିଷ୍ଟ୍ୟ ହେଉଛି ଯେ ସେ ଅଶ୍ୱାରୋହଣ କରିବେ ଏବଂ ତରବାରୀ ଧରି ଦୁଷ୍ଟ ଦମନ କରିବେ (ଭାଗବତ ପୁରାଣ, ୧୨:୨:୧୯) । ମହାମାନ୍ୟ ମୁହମ୍ମଦ ଏହା କରୁଥିଲେ । ବର୍ତ୍ତମାନର ଅତ୍ୟାଧୁନିକ ଯୁଗରେ ଅଶ୍ୱପିଠିରେ ବସି ତରବାରୀ ଦ୍ୱାରା ଯୁଦ୍ଧ କରୁଥିବା ଜଣେ ଅବତାରଙ୍କର ପ୍ରତୀକ୍ଷା ଯୁକ୍ତିଯୁକ୍ତ ନୁହେଁ ।

ପୁରାଣ ଏହା ମଧ୍ୟ କହୁଛି ଯେ, କଲ୍‌କୀ ଅନ୍ତିମ ଅବତାର ହେବେ (ଭାଗବତ ପୁରାଣ, ୧:୩:୨୪) । ଈଶ୍ୱରଦୂତମାନଙ୍କ ମଧ୍ୟରେ କେବଳ ମହାମାନ୍ୟ ମୁହମ୍ମଦଙ୍କୁ ହିଁ ଅନ୍ତିମ ମାର୍ଗଦର୍ଶକ ରୂପେ ନିଯୁକ୍ତ କରାଯାଇଛି ।

ଶ୍ରୀଯୁକ୍ତ ବେଦପ୍ରକାଶ ଉପାଧ୍ୟାୟ 'କଲ୍‌କୀ ଅବତାର ଓ ମୁହମ୍ମଦ' ପୁସ୍ତକରେ ଲେଖିଛନ୍ତି—

''କଲ୍‌କୀ ଅବତାରଙ୍କୁ ଭାଗବତ ପୁରାଣରେ 'ଅନ୍ତିମ ଅବତାର' ବୋଲି ବର୍ଣ୍ଣନା କରାଯାଇଛି । କୌତୂହଳ କଥା ଯେ କୁର୍‌ଆନ ମଧ୍ୟ ମୁହମ୍ମଦଙ୍କୁ 'ଅନ୍ତିମ ବାର୍ତ୍ତାବହ' (କୁର୍‌ଆନ, ୩୩:୪୦) ବୋଲି ଘୋଷଣା କରିଛି ।''

କଲ୍‌କୀ ଅବତାରଙ୍କର ଜନ୍ମ ସମ୍ପର୍କରେ ପୁରାଣ କହୁଛି ଯେ, ସେ ମାଧବ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ ଦିନ ଜନ୍ମଲାଭ କରିବେ (କଲ୍‌କୀ ପୁରାଣ,

୨:୧୪) । ଏ ସମ୍ପର୍କରେ ଶ୍ରୀ ଉପାଧ୍ୟାୟ ଲେଖିଛନ୍ତି ଯେ, ଏହା ଐତିହାସିକ ରୂପେ ପ୍ରମାଣିତ ହୋଇସାରିଛି ଯେ, ମୁହମ୍ମଦ ମାଧବ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ ଦିନ ଜନ୍ମଲାଭ କରିଛନ୍ତି ।

ସଂଗ୍ରାମ ପୁରାଣରେ ମଧ୍ୟ ମହାମାନ୍ୟ ମୁହମ୍ମଦଙ୍କ ସମ୍ପର୍କରେ ପରିଷ୍କାର ଭବିଷ୍ୟବାଣୀ ରହିଛି । ଡକ୍ଟର ଏମ୍.ଏ. ଶ୍ରୀବାସ୍ତବ[8], ପଣ୍ଡିତ ଧର୍ମବୀର ଆଚାର୍ଯ୍ୟଙ୍କ ପ୍ରସିଦ୍ଧ ପୁସ୍ତକ 'ଅନ୍ତିମ ଈଶ୍ୱରଦୂତ'[9]ରୁ ତୁଳସୀ ଦାସଙ୍କର ନିମ୍ନ ଭବିଷ୍ୟବାଣୀ ଉଦ୍ଧାର କରିଛନ୍ତି—

यहां न पक्षपात कछु राखहुं ।
वेद, पुराण, संत मत भाखहुं ॥

संवत विक्रम दोऊ अनङ्गा ।
महाकोक नस चतुर्पतङ्गा ॥

राजनीति भव प्रीति दिखावै ।
आपन मत सबका समझावै ॥

सुरन चतुसुदंर सतचारी ।
तिनको वंश भयो अति भारी ॥

तब तक सुन्दर मद्दिकोया ।
बिना महामद पार न होया ॥

तबसे मानहु जन्तु भिखारी ।
समरथ नाम एहि व्रतधारी ॥

---

[8] ଡକ୍ଟର ଏମ୍.ଏ. ଶ୍ରୀବାସ୍ତବ, ହଜରତ ମୁହମ୍ମଦ ଅଉର୍ ଭାରତୀୟ ଧର୍ମଗ୍ରନ୍ଥ (ହିନ୍ଦୀ), ଲକ୍ଷ୍ନୌ, ପୃ. ୧୭

[9] ପଣ୍ଡିତ ଧର୍ମବୀର ଉପାଧ୍ୟାୟ, ଅନ୍ତିମ ଈଶ୍ୱରଦୂତ, ନ୍ୟାସନାଲ ପ୍ରିଣ୍ଟିଂ ପ୍ରେସ୍, ଦରିୟାଗଞ୍ଜ, ନୂଆଦିଲ୍ଲୀ, ପ୍ରଥମ ସଂସ୍କରଣ, ୧୯୨୭

हर सुन्दर निर्माण न होई ।
तुलसी वचन सत्य सच होई ।।

**(ସଂଗ୍ରାମ ପୁରାଣ, ଦ୍ୱାଦଶ ସ୍କନ୍ଧ, ଷଷ୍ଠ କାଣ୍ଡ ପଦ୍ୟାନୁବାଦ—ଗୋସ୍ୱାମୀ ତୁଳସୀ ଦାସ)**

ପଣ୍ଡିତ ଧର୍ମବୀର ଉପାଧ୍ୟାୟ ଏହାର ଯେଉଁ ଭାବାନୁବାଦ କରିଛନ୍ତି, ତାର ଓଡ଼ିଆ ରୂପାନ୍ତର ନିମ୍ନ ପ୍ରକାରର—

''(ତୁଳସୀ ଦାସ କୁହନ୍ତି) : ମୁଁ ଏଠାରେ କୌଣସି ପକ୍ଷପାତ ନ କରି ସନ୍ଥମାନଙ୍କର ଏବଂ ବେଦ ଓ ପୁରାଣର ମତ ପ୍ରକାଶ କରିଛି । ସପ୍ତମ ବିକ୍ରମୀ ଶତାବ୍ଦୀରେ ଚାରିଗୋଟି ସୂର୍ଯ୍ୟର ପ୍ରକାଶ ସହ ସେ ଜନ୍ମଲାଭ କରିବେ । ଶାସନର ଯେଭଳି ପରିସ୍ଥିତି ଥାଉ, ପ୍ରେମ ଅଥବା ଶକ୍ତି ଦ୍ୱାରା ସେ ନିଜ ମତ ସମସ୍ତଙ୍କୁ ବୁଝାଇ ପାରିବେ, ତାଙ୍କ ସହ ଚାରିଜଣ ଦେବତା (ପ୍ରମୁଖ ସହଯୋଗୀ) ରହିଥିବେ ଯେଉଁମାନଙ୍କ ସହାୟତାରେ ତାଙ୍କ ଅନୁଗାମୀମାନଙ୍କ ସଂଖ୍ୟା ବହୁତ ବଢ଼ିଯିବ । ଯେପର୍ଯ୍ୟନ୍ତ ସୁନ୍ଦର ବାଣୀ (କୁର୍‌ଆନ) ଧରାପୃଷ୍ଠରେ ରହିଥିବ, (ତା' ବ୍ୟତୀତ) ଏବଂ ମୁହମ୍ମଦଙ୍କ ବ୍ୟତୀତ ମୁକ୍ତି (ମୋକ୍ଷ) ପ୍ରାପ୍ତି ହେବ ନାହିଁ । ମଣିଷ, ଭିକାରି, କୀଟପତଙ୍ଗ ଏବଂ ଜୀବଜନ୍ତୁ ଏହି ବ୍ରତଧାରୀଙ୍କର ନାମ ସ୍ମରଣ କରିବାମାତ୍ରେ ଈଶ୍ୱରଙ୍କର ଭକ୍ତ ପାଲଟିଯିବେ । ତାଙ୍କ ପରି ପୁଣି ଆଉ କେହି ଜନ୍ମଗ୍ରହଣ କରିବ ନାହିଁ । (ଅର୍ଥାତ୍, କୌଣସି ଈଶ୍ୱରଦୂତ ଆସିବେ ନାହିଁ) । ତୁଳସୀ ଦାସ ଏମନ୍ତ କୁହନ୍ତି ଯେ ତାଙ୍କ ବଚନ ଅବଶ୍ୟ ସତ୍ୟସିଦ୍ଧ ହେବ ।''

ତୁଳସୀ ଦାସ ସ୍ୱଷ୍ଟ ଭାବେ ମହମାନ୍ୟ ମୁହମ୍ମଦଙ୍କ ଆଗମନୀ ବିଷୟରେ ଭବିଷ୍ୟତବାଣୀ କରିଛନ୍ତି ।

ଏଭଳି ସ୍ୱଷ୍ଟ ଭବିଷ୍ୟତବାଣୀ ମହାମାନ୍ୟ ମୁହମ୍ମଦଙ୍କୁ କଳ୍‌କୀ ଅବତାର ତଥା ଅନ୍ତିମ ଋଷି ପ୍ରମାଣିତ କରୁଛି ।

## ଉପନିଷଦ

ବେଦ ପରେ ଉପନିଷଦର ମଧ୍ୟ ହିନ୍ଦୁଶାସ୍ତ୍ରରେ ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଉପନିଷଦଗୁଡ଼ିକର ତାଲିକାରେ 'ଅଲ୍ଲୋପନିଷଦ' ନାମକ ଏକ ଉପନିଷଦ ରହିଛି, ଯେଉଁଥିରେ ମହାମାନ୍ୟ ମୁହମ୍ମଦଙ୍କ ସମ୍ପର୍କରେ ପରିଷ୍କାର ଭବିଷ୍ୟତବାଣୀ ଦେଖିବାକୁ ମିଳେ । ଏ.ଏଚ୍.ବିଦ୍ୟାର୍ଥୀ ତାଙ୍କ ଗବେଷଣା ଗ୍ରନ୍ଥରେ ଅଲ୍ଲୋପନିଷଦର ନିମ୍ନ ଫଟୋଚିତ୍ର ଦେଇଛନ୍ତି ।[10]

### ଅଲ୍ଲୋପନିଷଦ

**अथ अल्लो उपनिषद्**

हरिः ॐ वरुण नु हिव्यामुद्यानं इल्लल्ले मित्र हीं अस्मल्लां इल्लल्ले मित्रा वरुणा दिव्यानि धत्ते इल्लल्ले वरुणो राजा पुनर्दुदुः । हयामि मित्रो इल्लां इल्लल्ले इल्लां वरुण मित्रा तेजस्कामः ( १ )

हे होतारमिन्द्रो होता इन्द्रो हामा हासुरिन्द्रा ।। अल्लो ज्येष्ठं श्रेष्ठं परमं पूर्ण ब्रह्मण अल्लाम ।। २ ।।

हां अल्लो रसूल महमद रकबरस्य अल्लो अल्लो आदल्लाबुमेककं अल्लाबूकं निखातकम ।। ३ ।।

अल्लो यज्ञेन हुत्वा अल्ला सूर्य चन्द्र सर्व नक्षत्रा अल्लो ऋषीणां सर्वदिव्या इन्द्राय पूर्वं माया परमं अंतरीक्षा ।।४।।

अल्लो पृथिव्यामिन्द्रते इल्लल्ले वरुणो राजा पुनर्दुदुः ।। इल्लल्ले रकबर इल्लां रकबर इल्लां इल्लेति इल्लल्ले ।। ५ ।।

---

(10) "Muhammad in World Scriptures", Vol.III, p.1110.

हरिः ॐ अस्य इल्लां इल्लल्ले मित्रा
वरुणो राजा पुनर्ददुः ॥ हयामि मित्रो
इल्लां रकबर इल्लां रसूल महमद रकब-
रस्य अल्लो अल्लां पुनर्ददुः ॥ १ ॥
अल्ला इल्लल्ला अनादि स्वरूपाय अथ-
र्वणी श्यामा ह्रीं जनान पशून सिद्धान जल-
चरान अदृष्टं कुरु कुरु फट् असुर संहा-
रिणी ह्रीं अल्लो रसूल महमद रकबरस्य
अल्लो अल्लां इल्लल्लेति इल्लल्लाः ॥ ३ ॥

ଏହାବ୍ୟତୀତ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଦ୍ୱାରା ସଙ୍କଳିତ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ମଧ୍ୟ ଅଲ୍ଲୋପନିଷଦ ସ୍ଥାନ ପାଇଛି ଏବଂ ସେ ଏହାକୁ ଅଥର୍ବ ବେଦର ଏକ ସୂକ୍ତ ବୋଲି ଲେଖିଛନ୍ତି । ଅବଶ୍ୟ ଏଥିରେ ସୂକ୍ତର ପ୍ରଥମ ବାକ୍ୟଟି ନାହିଁ ।

**ଅଲ୍ଲୋପନିଷଦ**

ଅସ୍ମଲ୍ଲାଂ ଇଲ୍ଲେ ମିତ୍ରାବରୁଣା ଦିବ୍ୟାନି ଧତ୍ତେ
ଇଲ୍ଲଲ୍ଲେ ବରୁଣୋ ରାଜା ପୁନର୍ଦଦୁଃ
ହୟା ମିତ୍ରୋ ଇଲ୍ଲାଂ ଇଲ୍ଲଲ୍ଲେ ଇଲ୍ଲାଂ
ବରୁଣୋ ମିତ୍ର ସ୍ତେଜସ୍କାମଃ
ହୋତାରମିନ୍ଦ୍ରୋ ହବିତାରମିନ୍ଦ୍ରୋ ମହାସୁରିନ୍ଦ୍ରାଃ
ଅଲ୍ଲୋ ଜ୍ୟେଷ୍ଠଂ ଶ୍ରେଷ୍ଠଂ ପରମଂ ପୂର୍ଣ୍ଣଂ ବ୍ରହ୍ମାଣଂ ଅଲ୍ଲାମ୍ ॥
ଅଲ୍ଲୋରସୁଲ ମହାମଦରକଂ ବରସ୍ୟ ଅଲ୍ଲୁ ଅଲ୍ଲାଂ
ଅଦଲ୍ଲାବୁକମେକକଂ, ଅଲ୍ଲାବୁକ ନିଖାତକଂ ।୧।
ଅଲ୍ଲୁ ଯଜ୍ଞେନ ହୁତହୁତ୍ୱା ଅଲ୍ଲୁ ସୂର୍ଯ୍ୟଚନ୍ଦ୍ର ସର୍ବନକ୍ଷତ୍ରାଂ
ଅଲ୍ଲୁ ଋଷିଣାଂ ସର୍ବବିଦ୍ୟା ଇନ୍ଦ୍ରାୟ ପୂର୍ବଂମୟା ପରମଅନ୍ତରୀକ୍ଷାଂ

ଅଲ୍ଲା ପୃଥିବ୍ୟା ଅନ୍ତରୀକ୍ଷଂ ବିଶ୍ୱରୂପଂ
ଇଲ୍ଲାକବର ଇଲ୍ଲାକବର ଇଲ୍ଲା ଇଲ୍ଲା ଇଲ୍ଲଲ୍ଲେତି ଇଲ୍ଲଲ୍ଲାଂ
ଓଁ ଅଲ୍ଲା ଇଲ୍ଲଲ୍ଲା ଅନାଦିସ୍ୱରୂପାୟ
ଅଥର୍ବାଣଂ ଇୟାମାହୁଂ ହ୍ରୀଂ
ଜନାନ୍ ପଶୂନ୍ ସିଦ୍ଧାନ୍ ଜଳଚରାନ୍ ଅଦୃଷ୍ଟଂକରୁଫଟ
ଅସୁର ସଂହାରିଣୀ ହୁଂ ହ୍ରୀଂ ଅଲ୍ଲୋ
ରସୁଲ ମହମ୍ମଦରକଂ ବରସ୍ୟ
ଅଲ୍ଲୋ ଅଲ୍ଲାମ୍ ଇଲ୍ଲଲ୍ଲେତି ଇଲ୍ଲଲ୍ଲ ।୧୦।

**(ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ, ୧ମ ଖଣ୍ଡ, ପୃ.୬୦୫)**

**ଭାବାର୍ଥ :**

''ସେହି ଉପାସ୍ୟଙ୍କର ନାମ ଅଲ୍ଲାହ । ସେ ଏକ । ମିତ୍ର, ବରୁଣ ଇତ୍ୟାଦି ତାଙ୍କରି ଗୁଣ ପ୍ରକାଶ କରୁଥିବା ନାମ ଏବଂ ଅଲ୍ଲାହ ପ୍ରକୃତରେ ବରୁଣ, ଯିଏ ସକଳ ଜଗତର ଅଧିପତି । ହେ ମିତ୍ର ! ସେହି ଅଲ୍ଲାହଙ୍କୁ ନିଜର ଉପାସ୍ୟ ଭାବରେ ଗ୍ରହଣ କର । ସେହି ବରୁଣ ଏବଂ ମିତ୍ର ଭଳି ସଭିଙ୍କର କାର୍ଯ୍ୟସିଦ୍ଧି କରନ୍ତି । ସେ ଇନ୍ଦ୍ର, (ଜଗତର) ପ୍ରକାଶକ ଇନ୍ଦ୍ର । ଅଲ୍ଲାହ ସମସ୍ତଙ୍କଠାରୁ ବଡ଼ ଏବଂ ସର୍ବୋତ୍ତମ, ସର୍ବସମ୍ପୂର୍ଣ୍ଣ ଏବଂ ସମସ୍ତଙ୍କଠାରୁ ପବିତ୍ରତମ । ମୁହମ୍ମଦ ଅଲ୍ଲାହଙ୍କର ରସୁଲ୍ (ଦିବ୍ୟ ବାର୍ତ୍ତାବାହକ) ଏବଂ ଅଲ୍ଲାହଙ୍କର ସର୍ବଶ୍ରେଷ୍ଠ ଧର୍ମଦୂତ । ଅଲ୍ଲାହ ଅନାଦି ଏବଂ ଅଲ୍ଲାହ ଅନନ୍ତ ଏବଂ ଅଲ୍ଲାହ ହିଁ ବାସ୍ତବରେ ସକଳ ଜଗତର ପାଳନକର୍ତ୍ତା । ଅଲ୍ଲାହଙ୍କ ପାଇଁ ହିଁ ସମସ୍ତ ପବିତ୍ର କର୍ମ, ଅଲ୍ଲାହ ହିଁ ସୂର୍ଯ୍ୟ, ଚନ୍ଦ୍ର ଏବଂ ତାରା ସୃଷ୍ଟି କଲେ ।

ଅଲ୍ଲାହ ହିଁ ସମସ୍ତ ଋଷିଙ୍କୁ ପ୍ରେରଣ କଲେ ଏବଂ ସୂର୍ଯ୍ୟ, ଚନ୍ଦ୍ର ଓ ତାରା ରଚନା କଲେ । ଅଲ୍ଲାହ ସବୁ ଋଷିମାନଙ୍କୁ ପ୍ରେରଣ କଲେ ଏବଂ ଆକାଶ ରଚନା କଲେ । ଅଲ୍ଲାହ ଧରିତ୍ରୀ ଆକାଶର ପ୍ରକାଶକ । ଅଲ୍ଲାହ ମହାନ୍ ଏବଂ ତାଙ୍କ ବ୍ୟତୀତ କେହି ଉପାସ୍ୟ ନୁହେଁ । (ତୁମେ) କୁହ ହେ ଉପାସକ (ଅଥର୍ବ ଋଷି) ! 'ଲା

ଇଲାହ ଇଲ୍ଲଲ୍ଲାହ' । ଅଲ୍ଲାହ ପ୍ରାରମ୍ଭରୁ ବିଦ୍ୟମାନ । ସେ ସକଳ ପଶୁପକ୍ଷୀ ଓ ପ୍ରାଣୀମାନଙ୍କର ପାଳନକର୍ତ୍ତା, ଯିଏ ସମୁଦ୍ରରେ ବାସ କରନ୍ତି ଏବଂ ସେମାନଙ୍କର ମଧ୍ୟ ପାଳନକର୍ତ୍ତା ଯେଉଁମାନେ ଆଖିକୁ ଦେଖାଯାଆନ୍ତି ନାହିଁ । ସେ ସକଳ ଦୁଃଖ ଏବଂ ବିପଦର ହରଣକାରୀ । ମୁହମ୍ମଦ ସେହି ବ୍ରହ୍ମାଣ୍ଡର ପ୍ରଭୁ ଅଲ୍ଲାହଙ୍କର ପ୍ରେରିତ ରସୁଲ (ବାର୍ତ୍ତାବହ) । ଅତଏବ ତୁମେ ଘୋଷଣା କର 'ଅଲ୍ଲାହ ଏକ ଏବଂ ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହେଁ' ।''[11]



---

**(11)** "The name of the Deity is Allah. He is one, Mitra, Varuna etc are His attributes; and Allah indeed is Varuna who is the king of the world. Ye friends, look upon and regard such Allah as your Deity. He is Varuna and like friends, sets right the works of all people. He is Indra, the magnificent Indra. Allah is the greatest of all, the best, the most perfect, and the holiest of all. Muhamad, the Apostle of Allah is the greates Messenger of Allah. Allah is alpha and Allah is Omega and Allah indeed is the Nourisher of the whole world. For Allah are the noble deeds. Allah, infact, has created the sun, the moon and the stars.

Allah sent all the Rishis and created the sun, the moon and the stars. Allah sent all the Rishis and created the heavens. Allah is the Manifester of the earth and the space. Allah is Great and there is no God but He. Say, thou worshipper (Atharva Rishi) "La-i-laha-illa-Allah". Allah is from the beginning. He is the Nourisher of all the birds and beasts and animals that live in the sea and those that are not visible to the eye. He is the Remover of all evils and calamities.

Muhammad is the Apostle of Allah, the Lord of this creation. Hence, declare : Allah is One and there is no other god besides Him." (Ibid. p.1115)

# ବାଇବଲ୍

ବାଇବଲ୍‌ର ପରିଚୟ ଦେଇ ଓଡ଼ିଆ ବାଇବଲ୍‌ର ପ୍ରକାଶକ ଲେଖିଛନ୍ତି—

‘‘ବାଇବଲ୍ ୬୬ଟି ପୁସ୍ତକର ସମଷ୍ଟି । ଏହାର ଦୁଇଟି ମୁଖ୍ୟ ଭାଗ ରହିଛି । (୧) ପୁରାତନ ନିୟମ, ଯାହାକି ୟହୁଦୀମାନଙ୍କର ଧର୍ମଶାସ୍ତ୍ର ଓ (୨) ନୂତନ ନିୟମ, ଯେଉଁଥିରେ ଯୀଶୁଖ୍ରୀଷ୍ଟ ଓ ଆଦ୍ୟ ଖ୍ରୀଷ୍ଟିୟାନ୍‌ମାନଙ୍କର ବିବରଣୀ ରହିଛି । ୧୫୦୦ବର୍ଷ ଧରି ବିଭିନ୍ନ ସମୟରେ, ବିଭିନ୍ନ ସ୍ଥାନରେ ବସବାସ କରୁଥିବା ବିଭିନ୍ନ ଲେଖକମାନଙ୍କ ଦ୍ୱାରା ବାଇବଲ୍ ରଚିତ । ଲେଖକମାନେ ମୁଖ୍ୟତଃ ତିନୋଟି ଭାଷାରେ ଏହା ଲେଖିଥିଲେ ।[1]

ବାଇବଲ୍‌ର ପୁରାତନ ନିୟମରେ ମୋଟ୍ ୩୯ଟି ପୁସ୍ତକ ରହିଛି, ଯାହାର ପ୍ରଥମ ପାଞ୍ଚଟି ପୁସ୍ତକ ହେଉଛି—(୧) ଆଦି ପୁସ୍ତକ, (୨) ଯାତ୍ରା ପୁସ୍ତକ, (୩) ଲେବୀୟ ପୁସ୍ତକ, (୪) ଗଣନା ପୁସ୍ତକ ଏବଂ (୫) ଦ୍ୱିତୀୟ ବିବରଣ । ଏହି ପାଞ୍ଚୋଟି ପୁସ୍ତକ ମହାମାନ୍ୟ ବାର୍ତ୍ତାବହ ମୁସାଙ୍କ (ମୋସେସ୍, ଖ୍ରୀ.ପୂ.୧୪୦୦-୧୩୦୦) ମାଧ୍ୟମରେ ପ୍ରକଟିତ ହୋଇଥିଲା ବୋଲି କୁହାଯାଏ । କୁର୍‌ଆନରୁ ମଧ୍ୟ ଆମେ ଜାଣୁ ଯେ, ମହାମାନ୍ୟ ମୁସାଙ୍କୁ ଏକ ଦିବ୍ୟଗ୍ରନ୍ଥ ପ୍ରଦାନ କରାଯାଇଥିଲା । ଅବଶ୍ୟ କୁର୍‌ଆନ ଏହି ଗ୍ରନ୍ଥର ନାମ ‘ତୌରାତ୍’ ବୋଲି କହୁଛି ।

ପୁରାତନ ନିୟମରେ ମହାମାନ୍ୟ ଈଶ୍ୱରଦୂତ ଦାଉଦ୍‌ଙ୍କର (ଖ୍ରୀ.ପୂ.୧୦୦୦-୯୬୨) ଏକ ଗୀତସଂହିତା ରହିଛି । କୁର୍‌ଆନ କହେ ଯେ, ମହାମାନ୍ୟ ଦାଉଦ୍‌ଙ୍କ ମାଧ୍ୟମରେ ଅବତୀର୍ଣ୍ଣ ହୋଇଥିବା ଗ୍ରନ୍ଥର ନାମ ‘ଜବୁର୍’ ଥିଲା । ସେହିପରି, ବାଇବଲ୍‌ର ନୂତନ ନିୟମରେ ୨୭ଟି ପୁସ୍ତକ ରହିଛି । ଏହାର ପ୍ରଥମ ଚାରିଗୋଟି ପୁସ୍ତକ ହେଉଛି—(୧) ମାଥ୍ୟୁଙ୍କ ସୁସମାଚାର,

---

[1] ‘ପବିତ୍ର ବାଇବଲ୍’, ବାଇବଲ୍ ସୋସାଇଟି ଅଫ୍ ଇଣ୍ଡିଆ, ୨୦୬, ମହାତ୍ମାଗାନ୍ଧୀ ରୋଡ୍, ବାଙ୍ଗାଲୋର୍-୧ ।

(୨) ମାର୍କଙ୍କର ସୁସମାଚାର, (୩) ଲୂକ୍‌ଙ୍କର ସୁସମାଚାର ଏବଂ (୪) ଯୋହନ୍‌ଙ୍କର ସୁସମାଚାର । ଏଗୁଡ଼ିକରେ ଈଶ୍ୱରଦୂତ ମହାମାନ୍ୟ ଯୀଶୁଙ୍କର (ଖ୍ରୀ.ପୂ.୪-୩୦ଖ୍ରୀ.ଅ.) ଶିକ୍ଷା ଓ ବିବରଣୀମାନ ରହିଛି । କୁର୍‌ଆନ ମହାମାନ୍ୟ ଯୀଶୁ (ଇସା)ଙ୍କ ମାଧ୍ୟମରେ ଏକ ଦିବ୍ୟଗ୍ରନ୍ଥ ଆସିଥିବା କଥା କହିଛି, କିନ୍ତୁ ଏହାର ନାମ 'ଇଂଜିଲ୍' ବୋଲି କହୁଛି । ନୂତନ ନିୟମର ଅବଶିଷ୍ଟ ପୁସ୍ତକଗୁଡ଼ିକ ବିଭିନ୍ନ ଲେଖକଙ୍କ ଦ୍ୱାରା ରଚିତ ।

ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କର ଆସିବାର ପ୍ରାକ୍ ସୂଚନା ମହାମାନ୍ୟ ମୁସା ଓ ଯୀଶୁଙ୍କ ପ୍ରତି ଅବତୀର୍ଣ୍ଣ ହୋଇଥିବା ଦିବ୍ୟଗ୍ରନ୍ଥରେ ଦିଆଯାଇଥିଲା ବୋଲି ପବିତ୍ର କୁର୍‌ଆନ କହୁଛି—

> ''ଯେଉଁମାନେ (ଆମ୍ଭର) ଏହି ନିରକ୍ଷର ଈଶ୍ୱରଦୂତଙ୍କର ଆନୁଗତ୍ୟ ଅବଲମ୍ବନ କରନ୍ତି, ଯାହାଙ୍କର ସମ୍ପର୍କରେ ଉଲ୍ଲେଖ ସେମାନଙ୍କୁ (ସେମାନଙ୍କର ଗ୍ରନ୍ଥ) ତୌରାତ୍ ଓ ଇଂଜିଲ୍[2] (ବାଇବଲ୍)ରେ ମିଳେ, ସେ ସେମାନଙ୍କୁ ଉତ୍ତମ କାର୍ଯ୍ୟ କରିବାର ଆଦେଶ ଦିଅନ୍ତି ଓ ମନ୍ଦକର୍ମରୁ ନିବୃତ୍ତ କରନ୍ତି ଓ ସେମାନଙ୍କ ପାଇଁ ଶୁଦ୍ଧ ବସ୍ତୁଗୁଡ଼ିକୁ ବୈଧ ତଥା ଅଶୁଦ୍ଧଗୁଡ଼ିକୁ ଅବୈଧ କରନ୍ତି, ସେମାନଙ୍କ ଉପରେ ଲଦା ଯାଇଥିବା ବୋଝକୁ ଓହ୍ଲାଇ ଦିଅନ୍ତି ଏବଂ ସେମାନଙ୍କୁ ସେହି ବନ୍ଧନଗୁଡ଼ିକରୁ ମୁକ୍ତ କରନ୍ତି । ସୁତରାଂ, ଯେଉଁମାନେ ତାଙ୍କୁ ବିଶ୍ୱାସ କରିବେ, ତାଙ୍କୁ ସାହାଯ୍ୟ ଓ ସମର୍ଥନ କରିବେ ଏବଂ ତାଙ୍କ ପ୍ରତି ଅବତୀର୍ଣ୍ଣ ହୋଇଥିବା ଜ୍ୟୋତିର ଅନୁସରଣ କରିବେ, ସେହିମାନେ ହିଁ ସଫଳ ହେବେ ।''

**(କୁର୍‌ଆନ, ୭ : ୧୫୭)**

ଯଦିଓ ବାଇବଲ୍‌ରେ ଅନେକ ସଂଶୋଧନ କରାଯାଇଛି, ତଥାପି ମହାମାନ୍ୟ ମୁହମ୍ମଦଙ୍କ ସମ୍ପର୍କରେ କେତେକ ଭବିଷ୍ୟତବାଣୀ ଏଥିରେ ଦେଖିବାକୁ ମିଳେ ।

---

**(2)** ତୌରାତ୍ ଓ ଇଂଜିଲ୍ ଯଥାକ୍ରମେ ମହାମାନ୍ୟ ମୁସା ଓ ଯୀଶୁଙ୍କ ମାଧ୍ୟମରେ ପ୍ରକଟ ହୋଇଥିବା ଦିବ୍ୟଗ୍ରନ୍ଥ, ଯାହାକୁ ବର୍ତ୍ତମାନ ବାଇବଲ୍‌ର ପୁରାତନ ଓ ନୂତନ ନିୟମ ବୋଲି କୁହାଯାଏ ।

## ପୁରାତନ ନିୟମ

ବାଇବଲ୍‌ରେ ଲେଖାଅଛି ଯେ ଈଶ୍ୱର ମହାମାନ୍ୟ ଧର୍ମଦୂତ ମୁସାଙ୍କୁ କହିଲେ—

> ''ଆମ୍ଭେ ସେମାନଙ୍କ ନିମନ୍ତେ ସେମାନଙ୍କ ଭ୍ରାତୃଗଣ ମଧ୍ୟରୁ ତୁମ୍ଭ ସଦୃଶ ଜଣେ ଭବିଷ୍ୟଦ୍‌ବକ୍ତା ଉତ୍ପନ୍ନ କରିବା ଓ ଆମ୍ଭେ ତାହାଙ୍କ ମୁଖରେ ଆପଣା ବାକ୍ୟ ଦେବା ଓ ଆମ୍ଭେ ତାହାଙ୍କୁ ଯେ ଯେ ଆଜ୍ଞା ଦେବା, ତାହା ସେ ସେମାନଙ୍କୁ କହିବେ ।''

**(ଦ୍ୱିତୀୟ ବିବରଣ, ୧୮ : ୧୮)**

ଉପରୋକ୍ତ ଭବିଷ୍ୟବାଣୀରୁ ସ୍ପଷ୍ଟ ଜଣାପଡୁଛି ଯେ ଏହା ଧର୍ମଦୂତ ମୁହମ୍ମଦଙ୍କ ବିଷୟରେ ହିଁ କରାଯାଇଛି । ଏହାର ନିମ୍ନଲିଖିତ କାରଣ ରହିଛି—

ଈଶ୍ୱରଦୂତ ମହାମାନ୍ୟ ଇବ୍ରାହିମ୍‌ଙ୍କର ଦୁଇ ପୁତ୍ର ଥିଲେ—ଇସ୍‌ମାଇଲ୍ ଏବଂ ଇସ୍‌ହାକ୍ । ମହାମାନ୍ୟ ଇସମାଇଲ୍‌ଙ୍କ ବଂଶ 'ଇସ୍‌ମାଇଲି' ରୂପେ ପ୍ରସିଦ୍ଧ । ଇସ୍‌ହାକ୍‌ଙ୍କ ପୁତ୍ରଙ୍କ ଉପାଧି ଇସ୍ରାଇଲ୍ ଥିବା ହେତୁ ତାଙ୍କ ସନ୍ତାନକୁ 'ଇସ୍ରାଇଲି' କୁହାଯାଏ । ଏପରି ଭାବରେ ମହାମାନ୍ୟ ଇବ୍ରାହିମ୍‌ଙ୍କ ଦୁଇ ପୁତ୍ରଙ୍କଠାରୁ ଦୁଇଟି ବଂଶ 'ଇସ୍‌ମାଇଲି' ଏବଂ 'ଇସ୍ରାଇଲି' ଚାଲିଲା । ମହାମାନ୍ୟ ଧର୍ମଦୂତ ଇସା ବା ଯୀଶୁ ଇସ୍ରାଇଲି ବଂଶର ଥିଲେ, କିନ୍ତୁ ମହାମାନ୍ୟ ମୁହମ୍ମଦ ଇସ୍ରାଇଲିଙ୍କ ଭାଇ ଅର୍ଥାତ୍ ଇସ୍‌ମାଇଲି ବଂଶର ଥିଲେ । ବାଇବଲ୍‌ରେ 'ଭାଇର ଶବ୍ଦ ଏହି ଦୁଇଟି ବଂଶର ପରସ୍ପର ଭାଇ ହେବା ଅର୍ଥରେ କେତେକ ସ୍ଥାନରେ ବ୍ୟବହୃତ ହୋଇଛି । ତେଣୁ ମୁହମ୍ମଦ ଇସ୍ରାଇଲିଙ୍କ ଭାଇଗଣଙ୍କ ମଧ୍ୟରୁ ହିଁ ଆସିଛନ୍ତି ।

ଉପରୋକ୍ତ ଭବିଷ୍ୟବାଣୀ ଏହା କହୁଛି ଯେ, ଆଗନ୍ତୁକ ଧର୍ମପ୍ରବର୍ତ୍ତକ ମହାମାନ୍ୟ ମୁସାଙ୍କ ସଦୃଶ ହେବେ । ଧର୍ମଦୂତ ମୁସାଙ୍କ ସହ ମହାମାନ୍ୟ ମୁହମ୍ମଦଙ୍କର ଅନେକ ସାମଞ୍ଜସ୍ୟ ରହିଛି, ଯଥା—

(୧) ମହାମାନ୍ୟ ମୁସାଙ୍କ ପରି ମହାମାନ୍ୟ ମୁହମ୍ମଦ ମଧ୍ୟ ସାଧାରଣ ଭାବରେ ଜନ୍ମଲାଭ କରିଥିଲେ । ଦୁହିଁଙ୍କର ପିତାମାତା ଥିଲେ ।

(୨) ମହାମାନ୍ୟ ମୁସା ଏବଂ ମୁହମ୍ମଦ, ଦୁହେଁ ବିବାହ କରିଥିଲେ ।

(୩) ଧର୍ମଦୂତ ମୁସାଙ୍କ ପରି ମୁହମ୍ମଦ ମଧ୍ୟ ଧର୍ମଯୁଦ୍ଧ କରିଥିଲେ ।

(୪) ମହାମାନ୍ୟ ମୁସା କିମ୍ବା ମୁହମ୍ମଦଙ୍କ ଅନୁଗାମୀ ତାଙ୍କୁ ପ୍ରତାରିତ କରିନାହାନ୍ତି ।

(୫) ଦୁହିଁଙ୍କୁ ତାଙ୍କ ସମାଜ କିଛି କାଳ ପରେ ସ୍ୱୀକାର କରିନେଇଥିଲା ।

(୬) ମହାମାନ୍ୟ ମୁସାଙ୍କ ପରି ମୁହମ୍ମଦ ମଧ୍ୟ ଦେଶତ୍ୟାଗ କରିଥିଲେ ।

(୭) ଯେପରି ମହାମାନ୍ୟ ମୁସାଙ୍କ ମାଧ୍ୟମରେ ଅବତରିତ ଦିବ୍ୟଗ୍ରନ୍ଥ ତାଙ୍କ ଜୀବନକାଳ ମଧ୍ୟରେ ଲେଖି ନିଆଯାଇଥିଲା, ସେହିପରି ମହାମାନ୍ୟ ମୁହମ୍ମଦଙ୍କ ମାଧ୍ୟମରେ ଅବତରିତ କୁର୍‌ଆନ ମଧ୍ୟ ତାଙ୍କ ଜୀବନକାଳ ମଧ୍ୟରେ ହିଁ ଲିପିବଦ୍ଧ ହୋଇ ସାରିଥିଲା ।

(୮) ମହାମାନ୍ୟ ମୁସାଙ୍କ ଭଳି ମହାମାନ୍ୟ ମୁହମ୍ମଦ ମଧ୍ୟ ସାଧାରଣ ଭାବରେ ସ୍ୱର୍ଗବାସ କରିଛନ୍ତି ।

ଏଥିରୁ ପ୍ରମାଣିତ ହେଉଛି ଯେ, ମହାମାନ୍ୟ ମୁହମ୍ମଦ ଧର୍ମଦୂତ ମୁସାଙ୍କ ସଦୃଶ ଥିଲେ ।

ଉପରୋକ୍ତ ଭବିଷ୍ୟବାଣୀ ଏହା ମଧ୍ୟ କହୁଛି ଯେ, ଈଶ୍ୱର ସେହି ଧର୍ମପ୍ରବର୍ତ୍ତକଙ୍କ ମୁଖରେ ଆପଣା ବାକ୍ୟ ରଖିବେ, ଅର୍ଥାତ୍ ତାଙ୍କପ୍ରତି ଦୈବବାଣୀ ହେବ । ସମ୍ପୂର୍ଣ୍ଣ କୁର୍‌ଆନ ମହାମାନ୍ୟ ମୁହମ୍ମଦଙ୍କ ମୁଖରୁ କେବଳ ନିଃସୃତ ହୋଇଛି ।

''ଆମ୍ଭେ ତାହାଙ୍କୁ ଯେ ଯେ ଆଜ୍ଞା ଦେବା, ତାହା ସେ ସେମାନଙ୍କୁ କହିବେ ।''—ଏ ବିଷୟରେ ପବିତ୍ର କୁର୍‌ଆନ କହୁଛି ଯେ, ମହାମାନ୍ୟ ମୁହମ୍ମଦ ସ୍ୱଇଚ୍ଛାରୁ କିଛି କହୁ ନଥିଲେ, ବରଂ ତାଙ୍କ ପ୍ରତି ଦୈବବାଣୀ ହେଉଥିଲା । (କୁର୍‌ଆନ, ୫୩ : ୩)

## ନୂତନ ନିୟମ

ବାଇବଲ୍‌ର ନୂତନ ନିୟମରେ ନିମ୍ନ ଭବିଷ୍ୟବାଣୀଗୁଡ଼ିକ ରହିଛି—

''ଆଉ, ମୁଁ ପିତାଙ୍କୁ ଅନୁରୋଧ କରିବି, ପୁଣି ତୁମ୍ଭମାନଙ୍କ ସାଙ୍ଗରେ ଚିରକାଳ ରହିବା ନିମନ୍ତେ ସେ ତୁମ୍ଭମାନଙ୍କୁ ଆଉ ଜଣେ ସାହାଯ୍ୟକାରୀଙ୍କୁ ଅର୍ଥାତ୍ ସେହି ସତ୍ୟମୟ ଆତ୍ମାଙ୍କୁ ଦେବେ ।''

**(ଯୋହନ, ୧୪ : ୧୬)**

''କିନ୍ତୁ ସେହି ସାହାଯ୍ୟକାରୀ ଅର୍ଥାତ୍ ଯେଉଁ ପବିତ୍ର ଆତ୍ମାଙ୍କୁ ପିତା ମୋ ନାମରେ ପ୍ରେରଣ କରିବେ, ସେ ତୁମ୍ଭମାନଙ୍କୁ ସମସ୍ତ ବିଷୟ ଶିକ୍ଷା ଦେବେ, ଆଉ ମୁଁ ତୁମ୍ଭମାନଙ୍କୁ ଯାହା ଯାହା କହିଅଛି, ସେହି ସବୁ ତୁମ୍ଭମାନଙ୍କୁ ସ୍ମରଣ କରାଇବେ ।''

**(ଯୋହନ, ୧୪ : ୨୬)**

''ମୁଁ ତୁମ୍ଭମାନଙ୍କ ସହିତ ଆଉ ଅଧିକ କଥାବାର୍ତ୍ତା କରିବି ନାହିଁ, କାରଣ ଜଗତର ଅଧିପତି ଆସୁଅଛି, ଆଉ ମୋ ଠାରେ ତାହାର କିଛି ହିଁ ନାହିଁ ।''

**(ଯୋହନ, ୧୪ : ୩୦)**

''ପିତାଙ୍କ ନିକଟରୁ ମୁଁ ତୁମ୍ଭମାନଙ୍କ ନିକଟକୁ ଯେଉଁ ସାହାଯ୍ୟକାରୀଙ୍କୁ ପ୍ରେରଣ କରିବି, ପିତାଙ୍କଠାରୁ ବହିର୍ଗତ ସେହି ସତ୍ୟମୟ ଆତ୍ମା ଆସିଲେ ମୋ ବିଷୟରେ ସାକ୍ଷ୍ୟ ଦେବେ ।''

**(ଯୋହନ, ୧୫ : ୨୬)**

ଉପରୋକ୍ତ ଭବିଷ୍ୟବାଣୀଗୁଡ଼ିକ ମହାମାନ୍ୟ ଯୀଶୁଙ୍କ ପରେ ଆଉ ଜଣେ ମାର୍ଗଦର୍ଶକଙ୍କ ଆବିର୍ଭାବ ବିଷୟରେ ନିମ୍ନ ସୂଚନା ଦେଉଛି—

(୧) ଭବିଷ୍ୟତରେ ଆସୁଥିବା ମାର୍ଗଦର୍ଶକ ଚିରକାଳ ରହିବେ, ଅର୍ଥାତ୍ ସେ ଈଶ୍ୱରଙ୍କର ଅନ୍ତିମ ସନ୍ଦେଶ ବାହକ ହେବେ ଏବଂ ତାଙ୍କ ମାଧ୍ୟମରେ ପ୍ରେରିତ ବିଧାନ ପ୍ରଳୟ ପର୍ଯ୍ୟନ୍ତ ବଳବତ୍ତର ରହିବ । ପବିତ୍ର କୁର୍‌ଆନ ମଧ୍ୟ ଏହାହିଁ ଘୋଷଣା କରିଛି ଯେ ମହାମାନ୍ୟ ମୁହମ୍ମଦ ହିଁ ଅନ୍ତିମ ମାର୍ଗଦର୍ଶକ । (କୁର୍‌ଆନ, ୩୩:୪୦)

(୨) ସେ କୌଣସି ନୂତନ ଧର୍ମ ଆଣିବେ ନାହିଁ ବରଂ ମାହାମାନ୍ୟ ଯୀଶୁଙ୍କର ଶିକ୍ଷାର ସମର୍ଥନ କରିବେ ଏବଂ ଏହାକୁ ପୂର୍ଣ୍ଣାଙ୍ଗ କରିବେ । ସୁତରାଂ କୁର୍‌ଆନ ଅନେକ ସ୍ଥାନରେ ମହାମାନ୍ୟ ଯୀଶୁ ଦେଉଥିବା ଶିକ୍ଷାଗୁଡ଼ିକୁ ବର୍ଣ୍ଣନା କରିଛି ଏବଂ ମହାମାନ୍ୟ ମୁହମ୍ମଦ ଯୀଶୁଙ୍କ ଶିକ୍ଷା ବିଷୟରେ ଲୋକମାନଙ୍କୁ ସ୍ମରଣ କରାଇଛନ୍ତି ।

(୩) ଭବିଷ୍ୟବାଣୀରେ ମହାମାନ୍ୟ ଯୀଶୁ କହିଛନ୍ତି ଯେ, ଯେଉଁ ଜଗତର ଅଧିପତି ଆସିବେ ମୋ'ଠାରେ ତାଙ୍କର କିଛି ହିଁ ନାହିଁ । ଅର୍ଥାତ୍

ଆସୁଥିବା ଧର୍ମପ୍ରବର୍ତ୍ତକଙ୍କ ଲକ୍ଷ୍ୟ ବା ମିସନ୍ ମହାମାନ୍ୟ ଯୀଶୁଙ୍କଠାରୁ ବଡ଼ ହେବ ଏବଂ ମହାମାନ୍ୟ ମୁହମ୍ମଦଙ୍କ ପାଇଁ ଏହା ପ୍ରଯୁଜ୍ୟ ।

(୪) ସେ ଯୀଶୁଙ୍କ ବିଷୟରେ ସାକ୍ଷ୍ୟ ଦେବେ ଅର୍ଥାତ୍ ଲୋକମାନଙ୍କୁ ଏହି ସତ୍ୟତା ବିଷୟରେ ଅବଗତ କରାଇବେ ଯେ, ମହାମାନ୍ୟ ଯୀଶୁ ଈଶ୍ୱରଦୂତ ଥିଲେ ଏବଂ ସେ କୁମାରୀ ମାତା ମରିୟମ୍ଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ । ସୁତରାଂ ମହାମାନ୍ୟ ମୁହମ୍ମଦ ଏବଂ ତାଙ୍କର ସମସ୍ତ ଅନୁଗାମୀ ମହାମାନ୍ୟ ଯୀଶୁଙ୍କୁ ଈଶ୍ୱରଦୂତ ବୋଲି ସ୍ୱୀକାର କରନ୍ତି ଏବଂ ତାଙ୍କ ପବିତ୍ରତାର ସାକ୍ଷ୍ୟ ପ୍ରଦାନ କରନ୍ତି ।



## ନବମ ଅଧ୍ୟାୟ

# ମହାମାନ୍ୟ ମୁହମ୍ମଦଙ୍କର ମହତବାଣୀ

ମହାମାନ୍ୟ ମୁହମ୍ମଦଙ୍କର ଶିକ୍ଷା ବିଷୟରେ ନ ଜାଣିଲେ ତାଙ୍କର ପରିଚୟ ଅସମ୍ପୂର୍ଣ୍ଣ ରହିଯିବ । ଯେପରି କବିତାରୁ ଜଣେ କବିର ଚିନ୍ତାଧାରା ସମ୍ପର୍କରେ ଜାଣିହୁଏ ବା ସାହିତ୍ୟରୁ ଜଣେ ସାହିତ୍ୟିକର ପ୍ରତିଭାର ପରିଚୟ ମିଳେ, ସେହିପରି ମହାପୁରୁଷମାନଙ୍କ ଶିକ୍ଷାରୁ ସେମାନଙ୍କ ନୀତି ଓ ଆଦର୍ଶର ପରିଚୟ ମିଳେ । ମହାମାନ୍ୟ ଈଶ୍ୱରଦୂତମାନେ ଧରାପୃଷ୍ଠରେ ଈଶ୍ୱରଙ୍କର ପ୍ରତିନିଧିତ୍ୱ କରନ୍ତି । ତେଣୁ, ସେମାନେ ସତ୍ୟ, ନ୍ୟାୟ, ଦୟା, କ୍ଷମା, ପ୍ରେମ ଓ ପରୋପକାରର ଶିକ୍ଷା ଦେଇଥାଆନ୍ତି । ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦ ମଧ୍ୟ ଏହାର ବ୍ୟତିକ୍ରମ ନୁହନ୍ତି । ସେ ମଣିଷର ଆଧ୍ୟାତ୍ମିକ ଓ ନୈତିକ ବିକାଶ ପାଇଁ ମାର୍ଗଦର୍ଶନ କରିବା ସଙ୍ଗେ ସଙ୍ଗେ ତାର ପ୍ରତ୍ୟେକ ଦାୟୀତ୍ୱ ସମ୍ପର୍କରେ ସତର୍କ କରିଛନ୍ତି । ଈଶ୍ୱରଙ୍କ ପ୍ରତି, ପିତାମାତାଙ୍କ ପ୍ରତି, ସନ୍ତାନ ପ୍ରତି, ଆତ୍ମୀୟ ସ୍ୱଜନଙ୍କ ପ୍ରତି, ପଡ଼ୋଶୀଙ୍କ ପ୍ରତି, ସେବକ ପ୍ରତି, ଅତିଥି ପ୍ରତି ଏବଂ ଦୀନଦୁଃଖୀମାନଙ୍କ ପ୍ରତି ମଣିଷର ଦାୟିତ୍ୱ କ'ଣ ତାହା ସେ ସ୍ପଷ୍ଟ କରିଛନ୍ତି । ଜଣେ ଭୃତ୍ୟର କର୍ତ୍ତବ୍ୟଠାରୁ ଆରମ୍ଭ କରି ଜଣେ ନ୍ୟାୟଧୀଶ ଏବଂ ଶାସକର କର୍ତ୍ତବ୍ୟ କ'ଣ ହେବା ଉଚିତ, ତାହା ମଧ୍ୟ ସେ ବର୍ଣ୍ଣନା କରିଛନ୍ତି । କୃଷି ବା ବାଣିଜ୍ୟ ହେଉ, ଅର୍ଥନୀତି ବା ରାଜନୀତି ହେଉ, ମଣିଷର ଏପରି କୌଣସି କର୍ମକ୍ଷେତ୍ର ନାହିଁ, ଯାହା ତାଙ୍କ ଶିକ୍ଷାର ପରିସରଭୁକ୍ତ ହୋଇନାହିଁ । ଯଦି ଜଣେ ବ୍ୟକ୍ତି ତାଙ୍କର ଉପଦେଶଗୁଡ଼ିକୁ ଠିକ୍ ଭାବରେ ପାଳନ କରେ, ତେବେ ସେ ଜଣେ ପ୍ରକୃତ ମଣିଷ ହୋଇପାରିବ ଏବଂ ସମାଜରେ ଆଦର ସମ୍ମାନ ପାଇବା ସହିତ ପରଲୋକରେ ମଧ୍ୟ ଉପଯୁକ୍ତ ମର୍ଯ୍ୟାଦା ପାଇବ ।

ଯଦିଓ ଅନେକ ମହାମନୀଷୀଙ୍କର ହିତୋପଦେଶ ଓଡ଼ିଆ ଭାଷାରେ ଉପଲବ୍ଧ; କିନ୍ତୁ ଏହି ମହାପୁରୁଷଙ୍କର ହିତୋପଦେଶ ଏ ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ଉପଲବ୍ଧ ହୋଇନାହିଁ । ଆସନ୍ତୁ, ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦ ମାନବ ସମାଜକୁ ଦେଇଥିବା ଶିକ୍ଷାର କେତୋଟି ଦୃଷ୍ଟାନ୍ତ ଦେଖିବା ।

## ୧. ମୋ କଥା ପହଞ୍ଚାଇ ଦିଅ

''ଗୋଟିଏ କଥା ହେଉ ପଛେ, ମୋ ତରଫରୁ ପହଞ୍ଚାଇ ଦିଅ ।''

(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ବାଣୀ-୬୬୭)

## ୨. ମୋ ନାଁରେ ମିଛ କହୁଥିବା ବ୍ୟକ୍ତି ନର୍କ ଭୋଗ କରିବ

''ମୋ ନାଁରେ ମିଛ କୁହ ନାହିଁ, କାରଣ ଯିଏ ମୋ ପ୍ରତି ମିଥ୍ୟାରୋପ କରିବ, ସେ ନିଶ୍ଚିତ ରୂପେ ନର୍କାଗ୍ନିରେ ପ୍ରବେଶ କରିବ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୧୦୬)

## ୩. କର୍ମର ଫଳ ମଣିଷର ଉଦ୍ଦେଶ୍ୟ ଉପରେ ନିର୍ଭର କରେ

''କର୍ମର ପ୍ରତିଫଳ (ମଣିଷର ଅନ୍ତର୍ନିହିତ) ଉଦ୍ଦେଶ୍ୟ ଉପରେ ନିର୍ଭର କରେ ଏବଂ ପ୍ରତ୍ୟେକ ମଣିଷ ତା' ଉଦ୍ଦେଶ୍ୟ ଅନୁସାରେ ପ୍ରତିଫଳ ପାଇବ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୫୧)

## ୪. ସଂସାର କ୍ଷଣସ୍ଥାୟୀ

''ପରଲୋକ ତୁଳନାରେ ଇହଲୋକ ଏମିତି, ଯେମିତି ତୁମମାନଙ୍କ ମଧ୍ୟରୁ କେହି ସମୁଦ୍ର ମଧ୍ୟରେ ଆଙ୍ଗୁଠି ବୁଡ଼ାଇ ଦେଖେ ଯେ ଆଙ୍ଗୁଠିରେ କେତେ ପାଣି ଆସିଲା ।''

(ତିରମିଜୀ, ବାଣୀ-୨୩୨୩)

## ୫. ନିଜକୁ ମୃତମାନଙ୍କ ସୂଚୀରେ ରଖ

''ସଂସାରରେ ଜଣେ ପଥିକ ପରି ରୁହ ଏବଂ ନିଜକୁ ମୃତମାନଙ୍କ ମଧ୍ୟରେ ଗଣନା କର । ସକାଳୁ ଉଠିସାରିଲେ ସନ୍ଧ୍ୟାର ପ୍ରତୀକ୍ଷା କରନାହିଁ ଏବଂ ସନ୍ଧ୍ୟା ହୋଇଗଲେ ସକାଳର ଆଶା କର ନାହିଁ । ବ୍ୟାଧି ଆସିବା ପୂର୍ବରୁ ସ୍ୱାସ୍ଥ୍ୟର ସଦ୍‌ବ୍ୟବହାର କର ଏବଂ ମୃତ୍ୟୁ ଆସିବା ପୂର୍ବରୁ ଜୀବନର ସଦ୍‌ବ୍ୟବହାର କର । କାରଣ ହେ ଅଲ୍ଲାହଙ୍କର ଦାସଗଣ ! ତୁମେ ଜାଣନା ଯେ କାଲି ତୁମର କ'ଣ ହେବ ?''

(ତିରମିଜୀ, ହଦିସ୍-୨୩୩୩)

**୬. ହୃଦୟ ଅଶୁଦ୍ଧ ହେଲେ ଶରୀର ଅଶୁଦ୍ଧ ହୋଇଯାଏ**

''ମଣିଷ ଦେହରେ ଗୋଟିଏ ମାଂସପିଣ୍ଡୁଳା ରହିଛି । ଯଦି ଏହା ଶୁଦ୍ଧ ହୋଇଯାଏ, ତେବେ ସମ୍ପୂର୍ଣ୍ଣ ଶରୀର ଶୁଦ୍ଧ ହୋଇଯାଏ, ମାତ୍ର ଯଦି ଏହା ନଷ୍ଟ ହୋଇଯାଏ, ତେବେ ସମୁଦାୟ ଶରୀର ନଷ୍ଟ ହୋଇଯାଏ, ଜାଣିରଖ, ସେଇଟି ହେଉଛି ହୃଦୟ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୪୯)

**୭. ସତ୍ୟନିଷ୍ଠତା ଦ୍ୱାରା ସ୍ୱର୍ଗ ପ୍ରାପ୍ତି ହୁଏ**

''ସତ୍ୟନିଷ୍ଠତା ମଣିଷକୁ ଧର୍ମପରାୟଣ କରେ ଏବଂ ଧର୍ମପରାୟଣତା ଦ୍ୱାରା ସ୍ୱର୍ଗପ୍ରାପ୍ତି ହୁଏ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୧୧୬)

**୮. କେବେହେଲେ ମିଛ କୁହ ନାହିଁ**

''ପୀଡ଼ାଗ୍ରସ୍ତ ହେଉ ସେ ବ୍ୟକ୍ତି ଯିଏ ଲୋକମାନଙ୍କୁ କଥା କହି ହସାଏ ଏବଂ ସେଥିରେ ସେ ମିଛ କହେ । ସେ ପୀଡ଼ାଗ୍ରସ୍ତ ହେଉ, ପୀଡ଼ାଗ୍ରସ୍ତ ହେଉ ।''

(ତିରମିଜୀ, ବାଣୀ-୨୩୧୫)

**୯. କାମନା ବୃଦ୍ଧ ହୁଏନାହିଁ**

''ବୁଢ଼ାଲୋକର ମନ ଦୁଇଟି ବିଷୟରେ ଯୁବକ ଥାଏ, ସଂସାର ପ୍ରତି ପ୍ରେମ ଏବଂ ତା'ର ଅବିରତ କାମନା ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୪୨୯)

**୧୦. ମନୁଷ୍ୟ ସ୍ୱଭାବତଃ ଲୋଭୀ**

''ମାନବପୁତ୍ରକୁ ଯଦି ସୁନାର ଗୋଟିଏ ଉପତ୍ୟକା ମିଳିଯାଏ, ତଥାପି ସେ ଆଉ ଗୋଟିଏ ପାଇବା ପାଇଁ ଇଚ୍ଛା କରିବ । ମାଟି ବ୍ୟତୀତ ଅନ୍ୟ କିଛି ତା' ପେଟକୁ ପୂର୍ଣ୍ଣ କରିପାରିବ ନାହିଁ । ଯିଏ ପଶ୍ଚାତ୍ତାପ କରେ, ଅଲ୍ଲାହ ତାହା ଗ୍ରହଣ କରନ୍ତି ।''

(ତିରମିଜୀ, ବାଣୀ-୨୩୩୭)

## ୧୧. ମଣିଷର ସର୍ବନିମ୍ନ ଅଧିକାର

''ସଂସାରରେ ଆଦମଙ୍କ ସନ୍ତାନର ତିନୋଟି (ସର୍ବନିମ୍ନ) ଅଧିକାର ଅଛି— ରହିବା ପାଇଁ ଘରଟିଏ, ଦେହ ଢାଙ୍କିବା ପାଇଁ କନାଟିଏ ଏବଂ ରୁଟି ଓ ପାଣି ।''

(ତିରମିଜୀ, ବାଣୀ-୨୩୪୧)

## ୧୨. କାହାରିକୁ ହାତପାତି ମାଗନାହିଁ

''(ମନେରଖ) ଯିଏ ଅନ୍ୟଠାରୁ ମାଗିବାରୁ କ୍ଷାନ୍ତ ରହିବ, ଅଲ୍ଲାହ ତାକୁ ପରିତୁଷ୍ଟ କରିଦେବେ ।''

(ତିରମିଜୀ, ବାଣୀ-୨୦୨୪)

## ୧୩. ସଂସାର ଏକ ତୁଚ୍ଛ ବସ୍ତୁ

''ଅଲ୍ଲାହଙ୍କ ନିକଟରେ ସଂସାରର ମୂଲ୍ୟ ଯଦି ଗୋଟିଏ ମଶା ପର ତୁଲ୍ୟ ମଧ୍ୟ ହୋଇଥାଆନ୍ତା, ତେବେ ସେ ଅବିଶ୍ୱାସକାରୀ (ନାସ୍ତିକ)ମାନଙ୍କୁ ସେଥିରୁ ଢୋକେ ପାଣି ମଧ୍ୟ ଦେଇ ନ ଥାଆନ୍ତେ ।''

(ତିରମିଜୀ, ବାଣୀ-୨୩୨୦)

## ୧୪. ଅଳ୍ପରେ ସନ୍ତୁଷ୍ଟ ରୁହ

''ତୁମମାନଙ୍କ ମଧ୍ୟରୁ ଯେ କେହି ସକାଳୁ ଏମିତି ଅବସ୍ଥାରେ ଉଠେ ଯେ ସେ ତା' ଘରେ ସୁରକ୍ଷିତ ଅଛି, ତା' ଶରୀର ସୁସ୍ଥ ରହିଛି ଏବଂ ସେ ଦିନକ ପାଇଁ ତାର ଖାଦ୍ୟ ମହଜୁଦ ଅଛି, ତେବେ ଏହା ସେହିପରି, ଯେପରି ତାକୁ ସାରା ସଂସାର ମିଳିଯାଇଛି ।''

(ତିରମିଜୀ, ବାଣୀ-୨୩୪୬)

## ୧୫. କେଉଁ ଧନ ତୁମର

''ଭକ୍ତ କହେ 'ମୋ ଧନ', 'ମୋ ଧନ'; କିନ୍ତୁ ତା' ଧନର କେବଳ ତିନୋଟି ଅଂଶ ତାର, ଯାହା ସେ ଖାଏ, ଯାହା ସେ ପିନ୍ଧି ପୁରୁଣା କରିଦିଏ (ଅର୍ଥାତ୍ ବ୍ୟବହାର କରିଦିଏ) ଏବଂ ଯାହା ସେ (ଅନ୍ୟ ପାଇଁ ଦାନ ରୂପରେ) ଖର୍ଚ୍ଚ କରିଦିଏ ଏବଂ ଏହାକୁ ହିଁ ସେ ନିଜ ପାଇଁ

ଗଚ୍ଛିତ ରଖେ । ଏହା ବ୍ୟତୀତ ବାକି ଧନ ତୁମ କାମର ନୁହେଁ, କାରଣ ତୁମେ ଅନ୍ୟମାନଙ୍କ ପାଇଁ ତାକୁ ଛାଡ଼ିଦେଇ ଯିବ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୯୫୯)

### ୧୬. ସଂସାର ନାସ୍ତିକମାନଙ୍କର ସ୍ୱର୍ଗ

''ଏହି ସଂସାର ବିଶ୍ୱାସକାରୀମାନଙ୍କ ପାଇଁ ଏକ ବନ୍ଦୀଶାଳା ଏବଂ ନାସ୍ତିକମାନଙ୍କର ଏହା ସ୍ୱର୍ଗ ।''

(ତିରମିଜୀ, ବାଣୀ-୨୩୨୪)

### ୧୭. ଧନସମ୍ପତ୍ତି ଠୁଳ କର ନାହିଁ

''ସମ୍ପତ୍ତି ଠୁଳ କର ନାହିଁ । ଏହା ତୁମକୁ ସଂସାରପ୍ରେମୀ କରିଦେବ ।''

(ତିରମିଜୀ, ବାଣୀ-୨୩୨୮)

### ୧୮. ନିଜ ତଳ ଲୋକଙ୍କୁ ଦେଖ

''ନିଜଠାରୁ ନିମ୍ନସ୍ତରରେ ଥିବା ଲୋକମାନଙ୍କୁ ଦେଖ; କିନ୍ତୁ ନିଜଠାରୁ ଉପର ସ୍ତରରେ ଥିବା ଲୋକଙ୍କୁ ଦେଖ ନାହିଁ, କାରଣ ଏହା କଲେ, ତୁମ ପ୍ରତି ଅଲ୍ଲାହ କରିଥିବା ଅନୁଗ୍ରହଗୁଡ଼ିକୁ ତୁମେ ହେୟ ମନେ କରିବ ।''

(ସହୀ ମୁସ୍‌ଲିମ, ୪ର୍ଥ ଖଣ୍ଡ, ବାଣୀ-୨୯୬୩)

### ୧୯. ଧନସମ୍ପଦର ପ୍ରାଚୁର୍ଯ୍ୟ ମଣିଷକୁ ନଷ୍ଟ କରିଦିଏ

''ଅଲ୍ଲାହଙ୍କ ରାଣ, ତୁମେମାନେ ଗରିବ ହୋଇଯିବାର ମୋତେ ଭୟ ନାହିଁ, କିନ୍ତୁ ମୁଁ ଆଶଙ୍କା କରୁଛି ଯେ ସାଂସାରିକ ସମ୍ପଦ ତୁମମାନଙ୍କୁ ପ୍ରଚୁର ପରିମାଣରେ ଦିଆଯିବ, ଯେମିତିକି ତୁମ ପୂର୍ବ ଲୋକମାନଙ୍କୁ ଦିଆଯାଇଥିଲା ଏବଂ ତୁମେମାନେ ଏଥିପାଇଁ ପରସ୍ପର ମଧ୍ୟରେ ସେମିତି ପ୍ରତିଦ୍ୱନ୍ଦିତା କରିବ, ଯେମିତି ତୁମ ପୂର୍ବଜମାନେ କରୁଥିଲେ ଏବଂ ଏହା ତୁମମାନଙ୍କୁ ସତ୍‌ମାର୍ଗରୁ ସେମିତି ବିଚ୍ୟୁତ କରିଦେବ, ଯେମିତି ଏହା ସେମାନଙ୍କୁ ବିଚ୍ୟୁତ କରିଥିଲା ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୪୩୩)

## ୨୦. ଈଶ୍ୱରଙ୍କ ପ୍ରତି ଭରସା ରଖ

''ଯଦି ତୁମେ ଅଲ୍ଲାହଙ୍କ ଉପରେ ଉଚିତ ଭରସା ରଖନ୍ତ, ତେବେ ସେ ତୁମକୁ ସେହିଭଳି ଆହାର ଯୋଗାଇ ଦିଅନ୍ତେ ଯେପରି ଚଢ଼େଇକୁ ଦିଆଯାଏ । ସେ ସକାଳୁ ଖାଲିପେଟରେ ବାହାରି ଯାଏ; କିନ୍ତୁ ପେଟ ଭର୍ତ୍ତି କରି ଫେରେ ।''

(ତିରମିଜୀ, ବାଣୀ-୨୩୪୪)

## ୨୧. ପ୍ରକୃତ ସମ୍ପତ୍ତି ଆତ୍ମପରିତୃପ୍ତି

''ସମ୍ପତ୍ତି ଅର୍ଥ ଧନର ପ୍ରାଚୁର୍ଯ୍ୟ ନୁହେଁ, ବରଂ (ପ୍ରକୃତ) ସମ୍ପତ୍ତି ହେଉଛି ଆତ୍ମସନ୍ତୋଷ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୪୫୩)

## ୨୨. ସଦୁପଦେଶର ମହତ୍ତ୍ୱ

''ଦୁଇଜଣଙ୍କ ପରି ହେବାର କାମନା କର । (୧) ଜଣେ ହେଉଛି ସେହି ବ୍ୟକ୍ତି ଯାହାକୁ ଅଲ୍ଲାହ ଧନସମ୍ପଦ ଦେଇଛନ୍ତି ଏବଂ ସେ ତାକୁ ଉଚିତ ମାର୍ଗରେ ଖର୍ଚ୍ଚ କରେ, (୨) ଅନ୍ୟ ଜଣେ ବ୍ୟକ୍ତି ଯାହାକୁ ଅଲ୍ଲାହ ସତ୍‌ଜ୍ଞାନ ଦେଇଛନ୍ତି, ସେ ତଦନୁଯାୟୀ କର୍ମ କରେ ଏବଂ ଅନ୍ୟମାନଙ୍କୁ ତାର ଶିକ୍ଷା ଦିଏ ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୨୫୫)

## ୨୩. ଈଶ୍ୱର ଅନ୍ତର ଦେଖନ୍ତି

''ଅଲ୍ଲାହ ତୁମର ମୁହଁ ବା ତୁମ ଧନସମ୍ପତ୍ତି ଦେଖନ୍ତି ନାହିଁ । ସେ ତୁମର ଅନ୍ତରକୁ ଦେଖନ୍ତି ଏବଂ ତୁମର କର୍ମଗୁଡ଼ିକୁ ଦେଖନ୍ତି ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୫୬୪)

## ୨୪. ନିଜକୁ ଈଶ୍ୱରଙ୍କ ନିକଟରେ ସମର୍ପିତ କର

''ସମ୍ପୂର୍ଣ୍ଣ ସମର୍ପିତ ଆତ୍ମା ବ୍ୟତୀତ ସ୍ୱର୍ଗରେ କେହି ପ୍ରବେଶ କରିବ ନାହିଁ ।''

(ତିରମିଜୀ, ବାଣୀ-୨୫୪୭)

**୨୫. ମର୍ତ୍ତ୍ୟବାସୀଙ୍କ ପ୍ରତି ଦୟା କର**

''ଦୟାମୟ ଦୟାଳୁମାନଙ୍କ ପ୍ରତି ଦୟା କରନ୍ତି । ତୁମେ ମର୍ତ୍ତ୍ୟବାସୀମାନଙ୍କ ପ୍ରତି ଦୟା କର । ସେ ତୁମ ପ୍ରତି ଦୟା କରିବେ, ଯିଏ ସ୍ୱର୍ଗ ଉପରେ ଅବସ୍ଥାନ କରନ୍ତି ।''

(ତିରମିଜୀ, ବାଣୀ-୧୯୨୪)

**୨୬. ନିର୍ଦ୍ଦୟ ପ୍ରତି ଦୟା କରାଯିବ ନାହିଁ**

''ଯିଏ ଅନ୍ୟ ପ୍ରତି ଦୟା କରେ ନାହିଁ, ତା' ପ୍ରତି ମଧ୍ୟ ଦୟା କରାଯିବ ନାହିଁ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୪୨)

**୨୭. ନିଜ ପାଇଁ ଯାହା ପସନ୍ଦ କର, ଅନ୍ୟପାଇଁ ମଧ୍ୟ ତାହାହିଁ କର**

''ତୁମମାନଙ୍କ ମଧ୍ୟରୁ ଜଣେ ମୁସଲମାନ ହୋଇପାରିବ ନାହିଁ ଯଦି ସେ ଅନ୍ୟ ପାଇଁ ଠିକ୍ ତାହାହିଁ ପସନ୍ଦ ନ କରେ, ଯାହା ସେ ନିଜ ପାଇଁ ପସନ୍ଦ କରେ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୧୨)

**୨୮. ଏକେଶ୍ୱରବାଦୀ ସ୍ୱର୍ଗଲାଭ କରିବ**

''ସ୍ୱର୍ଗଦୂତ ଜିବ୍ରାଇଲ ମୋ ନିକଟକୁ ଆସି ସୁସମ୍ବାଦ ଦେଲେ ଯେ ଯେଉଁ ବ୍ୟକ୍ତି ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା ନ କରି ମୃତ୍ୟୁବରଣ କରେ, ସେ ସ୍ୱର୍ଗରେ ପ୍ରବେଶ କରିବ ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୫୭୯)

**୨୯. ତିନୋଟି ମହାପାପ**

''ପ୍ରଶ୍ନ କରାଗଲା—ହେ ଈଶ୍ୱରଦୂତ ! ସବୁଠାରୁ ବଡ଼ ପାପ କ'ଣ ? ସେ ଉତ୍ତର ଦେଲେ—ଅନ୍ୟମାନଙ୍କର ଉପାସନା କରି ସେମାନଙ୍କୁ ଅଲ୍ଲାହଙ୍କର ପ୍ରତିଦ୍ୱନ୍ଦୀ କରିବା, ଯଦିଓ ସେ ଏକା ହିଁ ତୁମମାନଙ୍କୁ ସୃଷ୍ଟି କରିଛନ୍ତି । ପ୍ରଶ୍ନ କରାଗଲା—ତା'ପରେ ? ସେ କହିଲେ, ଖାଦ୍ୟରେ ଭାଗ ହୋଇଯିବା ଆଶଙ୍କାରେ ନିଜର ସନ୍ତାନକୁ ହତ୍ୟା (ଭ୍ରୂଣ ହତ୍ୟା)

କରିବା । ପ୍ରଶ୍ନ କରାଗଲା—ତା'ପରେ ? ସେ କହିଲେ—ପଡ଼ୋଶୀର ପତ୍ନୀ ସହ ଅବୈଧ ସମ୍ପର୍କ ରଖିବା ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୮୦୨)

## ୩୦. ଏକେଶ୍ୱରବାଦୀମାନେ ନର୍କରୁ ବାହାରିବେ

''ଯିଏ କହେ ଯେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ସେବା-ଉପାସନା ପାଇବାର ଅଧିକାର ନାହିଁ ଏବଂ ତା' ହୃଦୟରେ ଗୋଟିଏ ବାର୍ଲି ଦାନା ପରି ଏହି ବିଶ୍ୱାସ ଥାଏ, ତାକୁ ନର୍କରୁ ବାହାର କରି ନିଆଯିବ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୪୨)

## ୩୧. ଉପାସନା କେବଳ ଈଶ୍ୱରଙ୍କ ଅଧିକାର

''ଏହା ନିଜ ଭକ୍ତମାନଙ୍କ ଉପରେ ଅଲ୍ଲାହଙ୍କର ଅଧିକାର ଯେ, ସେମାନେ ତାଙ୍କରି ସେବା-ଉପାସନା କରନ୍ତୁ ଏବଂ ତାଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା ନ କରନ୍ତୁ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୫୦୭)

## ୩୨. ପିତାମାତାଙ୍କର ସେବାରେ ଧର୍ମଯୁଦ୍ଧର ପୁଣ୍ୟ

''ଜଣେ ବ୍ୟକ୍ତି ଧର୍ମଯୁଦ୍ଧରେ ଅଂଶଗ୍ରହଣ କରିବା ପାଇଁ ଈଶ୍ୱରଦୂତଙ୍କର ଅନୁମତି ମାଗିଲେ । ତେଣୁ ଈଶ୍ୱରଦୂତ ତାଙ୍କୁ ପ୍ରଶ୍ନ କଲେ—କ'ଣ ତୁମ ବାପା ମାଆ ଜୀବିତ ଅଛନ୍ତି ? ସେ ଉତ୍ତର ଦେଲେ—'ହଁ' । ତେଣୁ ଈଶ୍ୱରଦୂତ କହିଲେ—ଯାଅ, ସେମାନଙ୍କର ଖୁବ୍ ସେବା କର ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୫୪୯)

## ୩୩. ହତଭାଗ୍ୟ ପୁତ୍ର

''ସେ ଲୋକ ବିନଷ୍ଟ ହେଉ, ବିନଷ୍ଟ ହେଉ ।'' ପ୍ରଶ୍ନ କରାଗଲା—''ହେ ଈଶ୍ୱରଦୂତ ! ସେ କିଏ ?'' ସେ କହିଲେ—''ଯିଏ ନିଜ ବାପା ମାଆଙ୍କ ମଧ୍ୟରୁ ଜଣକୁ ବା ଉଭୟଙ୍କୁ ବୃଦ୍ଧାବସ୍ଥାରେ ଦେଖେ, ତଥାପି (ସେମାନଙ୍କ ସେବାକରି) ସ୍ୱର୍ଗରେ ପ୍ରବେଶ କରିପାରେ ନାହିଁ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୫୫୧)

### ୩୪. ପିତାମାତା ପ୍ରସନ୍ନ ହେଲେ ଈଶ୍ୱର ପ୍ରସନ୍ନ ହୁଅନ୍ତି

''ପ୍ରଭୁଙ୍କର ପ୍ରସନ୍ନତା ପିତାମାତାଙ୍କ ପ୍ରସନ୍ନତା ମଧ୍ୟରେ ନିହିତ ଏବଂ ପ୍ରଭୁଙ୍କର କ୍ରୋଧ ପିତାମାତାଙ୍କର କ୍ରୋଧ ମଧ୍ୟରେ ନିହିତ ।''

(ତିରମିଜୀ, ବାଣୀ-୧୮୯୯)

### ୩୫. ମଣିଷ ଉପରେ ସବୁଠାରୁ ବେଶୀ ଅଧିକାର ମା'ର

ଜଣେ ବ୍ୟକ୍ତି ଈଶ୍ୱରଦୂତଙ୍କୁ ପ୍ରଶ୍ନ କଲେ—''ହେ ଅଲ୍ଲାହଙ୍କର ଧର୍ମଦୂତ ! ସବୁ ଲୋକମାନଙ୍କ ମଧ୍ୟରେ ମୋ ସେବାଯତ୍ନ (ଉତ୍ତମ ବ୍ୟବହାର)ର କିଏ ବେଶୀ ଅଧିକାରୀ ?'' ସେ ଉତ୍ତର ଦେଲେ—''ତୁମ ମା', ତୁମ ମା' ପୁଣି ତୁମ ମା', ତା'ପରେ ତୁମ ବାପା (ଏବଂ) ତା'ପରେ ନିକଟତା ଅନୁଯାୟୀ ତୁମର ସମ୍ବନ୍ଧୀୟ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୫୪୮)

### ୩୬. ପିତାମାତାଙ୍କର ଅବଜ୍ଞା ମହାପାପ

''ମହାପାପଗୁଡ଼ିକ ମଧ୍ୟରେ ସବୁଠାରୁ ବଡ଼ ପାପ ହେଉଛି ଅଲ୍ଲାହଙ୍କ ସହିତ କାହାରିକୁ ଭାଗୀଦାର କରିବା, ନରହତ୍ୟା କରିବା, ପିତାମାତାଙ୍କ ଅବଜ୍ଞା କରିବା ଏବଂ ମିଥ୍ୟା ସାକ୍ଷ୍ୟ ପ୍ରଦାନ କରିବା ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୧୦)

### ୩୭. ପିତାମାତାଙ୍କର ଅଧିକାର

ଜଣେ ବ୍ୟକ୍ତି ଅଭିଯୋଗ କଲା—''ହେ ଅଲ୍ଲାହଙ୍କର ବାର୍ତ୍ତାବହ, ମୋର କିଛି ସମ୍ପତ୍ତି ଅଛି ଆଉ ପୁଅଟିଏ ମଧ୍ୟ ଅଛି, କିନ୍ତୁ ମୋ ବାପା ମୋ ସମ୍ପତ୍ତିତକ (ଖାଇ) ବରବାଦ କରିଦେବାକୁ ଚାହୁଁଛନ୍ତି ।'' ଏହା ଶୁଣି ମହାମାନ୍ୟ ଈଶ୍ୱରଦୂତ କହିଲେ—''ତୁମେ ଆଉ ତୁମର ଧନସମ୍ପତ୍ତି, ଉଭୟ ତୁମ ବାପାଙ୍କର ।''

(ଇବନେ ମାଜା, ବାଣୀ-୨୨୯୧)

### ୩୮. ରକ୍ତର ସମ୍ପର୍କ କାଟିଲେ ନର୍କବାସ ହୁଏ

''ଯେଉଁ ବ୍ୟକ୍ତି ରକ୍ତ ସମ୍ପର୍କର ବନ୍ଧନ କାଟି ଦିଏ, ସେ ବୈକୁଣ୍ଠରେ ପ୍ରବେଶ କରିବ ନାହିଁ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୧୩)

## ୩୯. ଆତ୍ମୀୟମାନଙ୍କ ସହ ସୁସମ୍ପର୍କ ଆୟୁ ବୃଦ୍ଧି କରେ

''ଯିଏ ଚାହେଁ ଯେ ତା' ଧନ ଓ ଆୟୁ ବଢୁ, ସେ ନିଜ ନିକଟ ସମ୍ପର୍କୀୟମାନଙ୍କ ସହ ଉତ୍ତମ ସମ୍ପର୍କ ରଖିବା ଉଚିତ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୧୫)

## ୪୦. ସମ୍ପର୍କ କଟିଗଲେ, ଯୋଡ଼ିଦିଅ

''ରକ୍ତ ସମ୍ପର୍କ ରକ୍ଷା କରିବା ଯଥେଷ୍ଟ ନୁହେଁ, ବରଂ ଯଦି ଏହି ସମ୍ପର୍କ କଟିଯାଏ, ତାକୁ ପୁନର୍ବାର ଯୋଡ଼ିଦେବା ଉଚିତ ।''

(ତିରମିଜୀ, ବାଣୀ-୧୯୦୮)

## ୪୧. କୌଣସି ସତ୍‌କର୍ମକୁ ଛୋଟ ମନେ କରନାହିଁ

''କୌଣସି ସତ୍‌କର୍ମକୁ ଛୋଟ ମନେ କରନାହିଁ, ତାହା ନିଜ ଭାଇ ସହ ହସି ପଦେକଥା କହିବା ହେଉ ପଛେ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୬୬୨୬)

## ୪୨. ମୃତ ପିତାମାତାଙ୍କ ପାଇଁ ସନ୍ତାନର କର୍ମ

ଜଣେ ବ୍ୟକ୍ତି ଈଶ୍ୱରଦୂତଙ୍କୁ ପ୍ରଶ୍ନ କଲେ—''ହେ ଈଶ୍ୱରଦୂତ ! କ'ଣ ଏମିତି କିଛି କର୍ମ ଅଛି, ଯାହାକି ମୋ ପିତାମାତାଙ୍କର ମୃତ୍ୟୁ ପରେ ମୁଁ ସେମାନଙ୍କ ପାଇଁ କରିପାରିବି ?'' ସେ ଉତ୍ତର ଦେଲେ—''ହଁ, ତୁମେ ସେମାନଙ୍କ ପାଇଁ ପ୍ରାର୍ଥନା କରିପାର, ସେମାନଙ୍କର ମୋକ୍ଷ ପାଇଁ ପ୍ରାର୍ଥନା କର, ସେମାନଙ୍କର ଅନ୍ତିମ ଆଦେଶ ପାଳନ କର, ସେମାନଙ୍କ ପ୍ରତି ନିର୍ଭର କରୁଥିବା ସମ୍ପର୍କୀୟମାନଙ୍କ ସହ ଉତ୍ତମ ସମ୍ପର୍କ ରଖ ଏବଂ ସେମାନଙ୍କ ବନ୍ଧୁମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କର ।''

(ଅବୁ ଦାଉଦ, ବାଣୀ-୫୧୨୩)

## ୪୩. କନ୍ୟାସନ୍ତାନର ଯତ୍ନ ନେଲେ ସ୍ୱର୍ଗ ପ୍ରାପ୍ତି ହୁଏ

''ଯଦି କେହି ତିନୋଟି ଝିଅଙ୍କର ଲାଳନ ପାଳନ କରେ, ସେମାନଙ୍କୁ ସୁଶୃଙ୍ଖଳିତ କରେ, ବିବାହ ଦିଏ ଏବଂ ସେମାନଙ୍କ ସହିତ ଭଲ ବ୍ୟବହାର କରେ, ସେ ସ୍ୱର୍ଗ ଲାଭ କରିବ ।''

(ଅବୁ ଦାଉଦ, ବାଣୀ-୫୧୨୮)

**୪୪. ସନ୍ତାନମାନଙ୍କ ସହ ସମାନ ବ୍ୟବହାର କର**

''ଅଲ୍ଲାହଙ୍କ ପ୍ରତି ଭୟ ରଖ ଏବଂ ନିଜର ସନ୍ତାନମାନଙ୍କ ପ୍ରତି ସମାନ ଭାବରେ ବ୍ୟବହାର କର ।''

(ସହୀ ମୁସଲିମ, ୩ୟ ଖଣ୍ଡ, ବାଣୀ-୧୬୨୩)

**୪୫. ସଦାଚରଣର ଶିକ୍ଷା ପିତାର ଶ୍ରେଷ୍ଠ ଉପହାର**

''ସଦାଚରଣର ଶିକ୍ଷା ଦେବା ବ୍ୟତୀତ ଜଣେ ପିତା ପକ୍ଷରେ ସନ୍ତାନ ପାଇଁ ଆଉ ଅଧିକ ଭଲ କିଛି ଉପହାର ନାହିଁ ।''

(ତିରମିଜୀ, ବାଣୀ-୧୯୫୨)

**୪୬. ପତ୍ନୀମାନଙ୍କ ସହ ଭଲ ବ୍ୟବହାର କର**

''ମୁଁ ତୁମମାନଙ୍କୁ ପତ୍ନୀମାନଙ୍କ ସହିତ ଉତ୍ତମ ବ୍ୟବହାର କରିବାର ଆଜ୍ଞା ଦେଉଛି, କାରଣ ସେମାନେ ତୁମର ଆଶ୍ରିତ ଏବଂ ତୁମ ଅଧୀନରେ ରହନ୍ତି ।''

(ତିରମିଜୀ, ବାଣୀ-୧୧୬୩)

**୪୭. ପତ୍ନୀ ପ୍ରତି ପତିର କର୍ତ୍ତବ୍ୟ**

ଈଶ୍ୱରଦୂତଙ୍କୁ ପ୍ରଶ୍ନ କରାଗଲା—''ଆମ ପତ୍ନୀମାନଙ୍କ ସମ୍ପର୍କରେ ଆପଣ କ'ଣ ଆଦେଶ ଦେଉଛନ୍ତି ?'' ସେ ଉତ୍ତର ଦେଲେ—''ନିଜେ ଯାହା ଖାଅ, ସେମାନଙ୍କୁ ସେହିପରି ଖୁଆଅ । ନିଜେ ଯେମିତି ପିନ୍ଧ, ସେମାନଙ୍କୁ ସେହିପରି ପିନ୍ଧାଅ, ସେମାନଙ୍କୁ ମାର ନାହିଁ ବା ଗାଳିଦିଅ ନାହିଁ ।''

(ଅବୁ ଦାଉଦ, ବାଣୀ-୨୧୩୯)

**୪୮. ବିବାହ ବିଚ୍ଛେଦ ଈଶ୍ୱର ପସନ୍ଦ କରନ୍ତି ନାହିଁ**

''ସମସ୍ତ ବୈଧ କର୍ମଗୁଡ଼ିକ ମଧ୍ୟରେ ବିବାହ-ବିଚ୍ଛେଦ (ତଲାକ୍) ଅଲ୍ଲାହଙ୍କୁ ସବୁଠାରୁ ଅପ୍ରିୟ ।''

(ଅବୁ ଦାଉଦ, ବାଣୀ-୨୧୭୩, ୨୧୭୨)

**୪୯. ସ୍ୱାମୀକୁ ସନ୍ତୁଷ୍ଟ ରଖୁଥିବା ନାରୀ ସ୍ୱର୍ଗ ଭୋଗ କରିବ**

''ଯେଉଁ ନାରୀ ମୃତ୍ୟୁବରଣ କରିବା ସମୟରେ ତା'ର ସ୍ୱାମୀ ତା' ଉପରେ ସନ୍ତୁଷ୍ଟ ଥାଏ, ସେ ନାରୀ ଅବଶ୍ୟ ସ୍ୱର୍ଗରେ ପ୍ରବେଶ କରିବ ।''

(ତିରମିଜୀ, ବାଣୀ-୧୧୬୧)

**୫୦. ସ୍ୱାମୀର ଅନୁମତି ନିଅ**

''ପତିର ଅନୁମତି ବିନା ପତ୍ନୀ ତା' ଘରୁ କାହାରିକୁ କିଛି ଦେବା ଉଚିତ୍ ନୁହେଁ ।''

(ଇବନେ ମାଜା, ବାଣୀ-୨୨୯୫)

**୫୧. ସ୍ୱାମୀକୁ ତ୍ୟାଗ କରନାହିଁ**

''କୌଣସି ଦୃଢ଼ କାରଣ ନ ଥାଇ ଯଦି କୌଣସି ପତ୍ନୀ ତା' ସ୍ୱାମୀଠାରୁ ବିଚ୍ଛେଦ ଚାହେଁ, ତା' ପାଇଁ ସ୍ୱର୍ଗର ସୁଗନ୍ଧ ନିଷିଦ୍ଧ ହୋଇଯିବ ।''

(ଅବୁ ଦାଉଦ, ବାଣୀ-୨୨୧୮)

**୫୨. କନ୍ୟାର ଅନୁମତି ବିନା ତା'ର ବିବାହ ଦିଅନାହିଁ**

''କୌଣସି (ସ୍ୱାମୀ ପରିତ୍ୟକ୍ତା ବା ବିଧବା) ମହିଳା ସହ ବିଚାର ନ କରି ତା'କୁ ବିବାହ ଦେବା ଉଚିତ ନୁହେଁ ଏବଂ ଜଣେ କୁମାରୀ କନ୍ୟାର ଅନୁମତି ନ ନେଇ ତାକୁ ବିବାହ ଦେବା ଉଚିତ ନୁହେଁ ।''

(ସହୀ ମୁସଲିମ, ୨ୟ ଖଣ୍ଡ, ବାଣୀ-୧୪୧୯)

**୫୩. ଧର୍ମପରାୟଣା କନ୍ୟା ହିଁ ଉତ୍ତମ ପତ୍ନୀ ହୁଏ**

''ଚାରୋଟି ଉଦ୍ଦେଶ୍ୟରେ ଜଣେ ନାରୀକୁ ବିବାହ କରାଯାଏ, ଯଥା— ତା' ଧନସମ୍ପତ୍ତି ଯୋଗୁଁ, ପାରିବାରିକ ପ୍ରତିଷ୍ଠା ଯୋଗୁଁ, ତା' ସୌନ୍ଦର୍ଯ୍ୟ ଯୋଗୁଁ ଏବଂ ତା' ଧର୍ମପରାୟଣତା ଯୋଗୁଁ । ସୁତରାଂ ତୁମେ ସର୍ବଦା ଧର୍ମପରାୟଣା ମହିଳା ସହ ବିବାହ କର ।''

(ସହୀ ବୁଖାରୀ, ୭ମ ଖଣ୍ଡ, ବାଣୀ-୨୭)

**୫୪. ଧର୍ମପରାୟଣା ପତ୍ନୀ ଶ୍ରେଷ୍ଠ ସମ୍ପଦ**

''ସଂସାର ଗୋଟିଏ ସମ୍ପଦ ଏବଂ ସଂସାର ମଧ୍ୟରେ ଜଣେ ଧର୍ମପରାୟଣା ସ୍ତ୍ରୀଠାରୁ ଅଧିକ ଭଲ କୌଣସି ସମ୍ପଦ ନାହିଁ ।''

(ଇବନେ ମାଜା, ବାଣୀ-୧୮୫୫)

**୫୫. ସ୍ୱାମୀର ଅଧିକାର**

''ଯଦି ମୁଁ କାହାକୁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରିକୁ ପ୍ରଣାମ କରିବାର ଆଦେଶ ଦେଇଥାଆନ୍ତି, ତେବେ ପତିକୁ ପ୍ରଣାମ କରିବାପାଇଁ

ପତ୍ନୀକୁ ଆଦେଶ ଦେଇଥାଆନ୍ତି । ଯାହାଙ୍କ ହାତରେ ମୋ ଜୀବନ ରହିଛି ତାଙ୍କର ଶପଥ ନେଇ କହୁଛି, ଜଣେ ସ୍ତ୍ରୀ ତା' ପ୍ରଭୁ (ଈଶ୍ୱର)ଙ୍କୁ ତାଙ୍କ ଅଧିକାର ଦେଇପାରିବ ନାହିଁ, ଯେପର୍ଯ୍ୟନ୍ତ ସେ ନିଜ ସ୍ୱାମୀଙ୍କୁ ତା' ଅଧିକାର ନ ଦେଇଛି । ଯଦି ସ୍ୱାମୀ ତାକୁ ସମର୍ପଣ କରିବାକୁ କହେ, ତେବେ ସେ ଓଟ ଉପରେ ବସିଥିଲେ ମଧ୍ୟ ମନା କରିବା ଉଚିତ ନୁହେଁ ।''

(ଇବନେ ମାଜା, ବାଣୀ-୧୮୫୩)

## ୫୬. ପତ୍ନୀକୁ ପୋଷିବାକୁ ସକ୍ଷମ ଥିଲେ, ବିବାହ କରିନିଅ

''ହେ ଯୁବକମାନେ ! ଯିଏ ସ୍ତ୍ରୀର ପ୍ରତିପୋଷଣ କରିବାକୁ ସମର୍ଥ, ସେ ବିବାହ କରିବା ଉଚିତ, କାରଣ ଏହା ଅନୈତିକତାରୁ ରକ୍ଷା କରେ । ଯାହାର ସାମର୍ଥ୍ୟ ନାହିଁ, ସେ ଉପବାସ ପାଳନ କରୁ, କାରଣ ଏହା କାମଇଚ୍ଛାକୁ ନିୟନ୍ତ୍ରଣ କରିଥାଏ ।''

(ଇବନେ ମାଜା, ବାଣୀ-୧୮୪୫)

## ୫୭. ପରିବାର ପ୍ରତିପୋଷଣ ମଧ୍ୟ ଏକ ମହତ କର୍ମ

''ନିଜ ପରିବାର ପଛରେ ଖର୍ଚ୍ଚ କରିବା ମଧ୍ୟ ଗୋଟିଏ (ପ୍ରକାରର) ଦାନ ।''

(ତିରମିଜୀ, ବାଣୀ-୧୯୬୫)

## ୫୮. ପଡ଼ୋଶୀର ମହତ୍ତ୍ୱ

''ସ୍ୱର୍ଗଦୂତ ଜିବ୍ରାଇଲ ପ୍ରତିବେଶୀମାନଙ୍କ ସହ ବିନମ୍ର ଓ ଦୟାପୂର୍ଣ୍ଣ ବ୍ୟବହାର କରିବା ସକାଶେ ମୋତେ ଏତେ ମାତ୍ରାରେ କହିବାକୁ ଲାଗିଲେ ଯେ, ମୁଁ ଭାବିଲି ବୋଧହୁଏ ସେ ପଡ଼ୋଶୀଙ୍କୁ ମୋର ଉତ୍ତରାଧିକାରୀ କରିଦେବା ପାଇଁ ଆଦେଶ ଦେଇଦେବେ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୪୪)

## ୫୯. ପଡ଼ୋଶୀକୁ କଷ୍ଟ ଦିଅନାହିଁ

ଅଲ୍ଲାହଙ୍କର ରାଣ, ସେହି ବ୍ୟକ୍ତି ମୋତେ ବିଶ୍ୱାସ କରେନାହିଁ, ଅଲ୍ଲାହଙ୍କ ରାଣ, ସେହି ବ୍ୟକ୍ତି ମୋତେ ବିଶ୍ୱାସ କରେ ନାହିଁ, ଅଲ୍ଲାହଙ୍କ ରାଣ,

ସେହି ବ୍ୟକ୍ତି ମୋତେ ବିଶ୍ୱାସ କରେ ନାହିଁ । ପଚରାଗଲା—''ହେ ଈଶ୍ୱରଦୂତ ! ସେ କିଏ ?'' ସେ ଉତ୍ତର ଦେଲେ—''ସେହି ବ୍ୟକ୍ତି ଯାହାର ତାଡ଼ନାରୁ ତା' ପଡ଼ୋଶୀ ନିଜକୁ ନିରାପଦ ମନେ କରେନାହିଁ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୪୫)

## ୬୦. ପଡ଼ୋଶୀକୁ କଷ୍ଟ ଦେଲେ ନର୍କବାସ ହୁଏ

''ସେହି ବ୍ୟକ୍ତି ବୈକୁଣ୍ଠରେ ପ୍ରବେଶ କରିପାରିବ ନାହିଁ, ଯାହାର ଦୁଷ୍କର୍ମରୁ ତା' ପଡ଼ୋଶୀ ସୁରକ୍ଷିତ ନୁହନ୍ତି ।''

(ସହୀ ମୁସଲିମ, ୧ମ ଖଣ୍ଡ, ବାଣୀ-୪)

## ୬୧. ପଡ଼ୋଶୀକୁ କିଛି ଉପହାର ଦିଅ

''ଯେତେବେଳେ ତରକାରି ରାନ୍ଧ, ଟିକିଏ ଝୋଳ ଅଧିକ କରିଦିଅ ଏବଂ ସେଥିରୁ କିଛି ନିଜ ପଡ଼ୋଶୀକୁ ଦିଅ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୬୨୫)

## ୬୨. ନିର୍ଯ୍ୟାତିତର ଗୁହାରୀ ଈଶ୍ୱର ଅବଶ୍ୟ ଶୁଣନ୍ତି

''ତିନୋଟି ପ୍ରାର୍ଥନା (ଈଶ୍ୱରଙ୍କ ଦ୍ୱାରା) ଗୃହୀତ ହୁଏ, ଏ ବିଷୟରେ କୌଣସି ସନ୍ଦେହ ନାହିଁ—ନିର୍ଯ୍ୟାତିତ ଲୋକଟିର ପ୍ରାର୍ଥନା, ଜଣେ ପଥିକର ପ୍ରାର୍ଥନା ଏବଂ ପୁତ୍ର ବିରୁଦ୍ଧରେ ପିତାର ପ୍ରାର୍ଥନା ।''

(ତିରମିଜୀ, ବାଣୀ-୧୯୦୫)

## ୬୩. କ୍ଷୁଧାର୍ଥକୁ ଭୋଜନ ଦିଅ

''କ୍ଷୁଧାର୍ଥକୁ ଭୋଜନ ଦିଅ, ରୋଗୀ ସହ ସାକ୍ଷାତ୍ କର ଏବଂ କ୍ରୀତଦାସମାନଙ୍କୁ ମୁକ୍ତ କର ।''

(ସହୀ ବୁଖାରୀ, ୭ମ ଖଣ୍ଡ, ବାଣୀ-୫୫୨)

## ୬୪. ଭୃତ୍ୟମାନଙ୍କୁ ଭାଇ ପରି ଦେଖ

''ତୁମ ଦାସମାନେ ତୁମର ଭାଇ ଏବଂ ଅଲ୍ଲାହ ସେମାନଙ୍କୁ ତୁମ ଅଧୀନସ୍ଥ କରିଦେଇଛନ୍ତି । ତେଣୁ ଯାହା ଅଧୀନରେ ଏଭଳି ଭାଇଟିଏ ଅଛି, ସେ ତାକୁ ସେଇୟା ଖୁଆଉ ଯାହା ସେ ନିଜେ ଖାଏ ଏବଂ ତାକୁ ସେଇୟା ପିନ୍ଧାଉ ଯାହା ସେ ନିଜେ ପିନ୍ଧେ । ସେମାନଙ୍କୁ

ସେମାନଙ୍କର ସାମର୍ଥ୍ୟ ବାହାରେ ଥିବା କୌଣସି କାର୍ଯ୍ୟ କରିବାର ଆଦେଶ ଦିଅନାହିଁ ଏବଂ ଯଦି ଦିଅ, ତେବେ ସେଥିରେ ସେମାନଙ୍କୁ ସାହାଯ୍ୟ କର ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୨୯)

## ୬୫. ବଦାନ୍ୟତା ସହ ଅତିଥି ସତ୍କାର କର

''ଯିଏ ଅଲ୍ଲାହ ଏବଂ ଅନ୍ତିମ ବିଚାର ଦିନ ପ୍ରତି ବିଶ୍ୱାସ କରେ, ସେ ନିଜ ପ୍ରତିବେଶୀକୁ କଷ୍ଟ ଦେବା ଉଚିତ ନୁହେଁ, ଯିଏ ଅଲ୍ଲାହ ଏବଂ ଅନ୍ତିମ ବିଚାର ଦିନ ପ୍ରତି ବିଶ୍ୱାସ କରେ, ସେ ବଦାନ୍ୟତାର ସହ ନିଜ ଅତିଥିର ସତ୍କାର କରିବା ଉଚିତ ଏବଂ ଯିଏ ଅଲ୍ଲାହ ଏବଂ ଅନ୍ତିମ ବିଚାରଦିନ ପ୍ରତି ବିଶ୍ୱାସ କରେ, ସେ କେବଳ ଉତ୍ତମ କଥା କହୁ କିମ୍ବା ନୀରବ ରହୁ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୧୫୮)

## ୬୬. ଅନାଥର ପ୍ରତିପୋଷଣ କଲେ ସ୍ୱର୍ଗ ମିଳେ

''ମୁଁ ଏବଂ (କୌଣସି) ଅନାଥର ପୃଷ୍ଟପୋଷକତା କରୁଥିବା ବ୍ୟକ୍ତି ଏଇଭଳି ମିଶି ସ୍ୱର୍ଗରେ ରହିବେ ।'' ମହାମାନ୍ୟ ଈଶ୍ୱରଦୂତ ନିଜର ଦୁଇ ଆଙ୍ଗୁଠି ଦେଖାଇ ସଙ୍କେତ ଦେଲେ ।

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୩୪)

## ୬୭. ବିଧବାର ସହାୟତା ମଧ୍ୟ ଜିହାଦ

''ଜଣେ ଗରିବ ବା ବିଧବା ମହିଳାର ଯତ୍ନ ନେଉଥିବା କିମ୍ବା ସେମାନଙ୍କ ସହାୟତା ପାଇଁ ଉଦ୍ୟମ କରୁଥିବା ବ୍ୟକ୍ତି ଅଲ୍ଲାହଙ୍କ ମାର୍ଗରେ ସଂଗ୍ରାମ (ଜିହାଦ୍) କରୁଥିବା ବ୍ୟକ୍ତି ସହ ସମାନ କିମ୍ବା ସେହି ବ୍ୟକ୍ତି ସଦୃଶ, ଯିଏ ଦିନ ସାରା ଉପବାସ ପାଳନ କରେ ଏବଂ ରାତିସାରା ନମାଜ ପଢ଼େ ।''

(ସହୀ ବୁଖାରୀ, ୭ମ ଖଣ୍ଡ, ବାଣୀ-୨୬୫)

## ୬୮. ସର୍ବୋତ୍କୃଷ୍ଟ ଦାନ

ଜଣେ ବ୍ୟକ୍ତି ଈଶ୍ୱରଦୂତଙ୍କୁ ପ୍ରଶ୍ନ କଲେ—''ହେ ଅଲ୍ଲାହଙ୍କ ବାର୍ତ୍ତାବହ ! କେଉଁ ଦାନର ପ୍ରତିଦାନ ସର୍ବୋତ୍କୃଷ୍ଟ ?'' ସେ ଉତ୍ତର ଦେଲେ—

''ଯେଉଁ ଦାନ ତୁମେ ସୁସ୍ଥ ଥିବା ଅବସ୍ଥାରେ ଦିଅ ଏବଂ ଯେତେବେଳେ ଦରିଦ୍ର ହୋଇଯିବାର ତୁମକୁ ଆଶଙ୍କା ଥାଏ, ଆଉ (ଯେତେବେଳେ) ତୁମେ (ଅଧିକ) ଧନବାନ ହେବାକୁ ଚାହଁ ।''

(ସହୀ ବୁଖାରୀ, ୨ୟ ଖଣ୍ଡ, ବାଣୀ-୫୦୦)

## ୬୯. ଈଶ୍ୱରଦୂତମାନଙ୍କର ଉତ୍ତରାଧିକାରୀ ନ ଥା'ନ୍ତି

''ଆମ (ଈଶ୍ୱରଦୂତ)ମାନଙ୍କର ଉତ୍ତରାଧିକାରୀ ନ ଥାଆନ୍ତି । ଆମେ ଯାହା ଛାଡ଼ିଯାଉ ତାହା ଦାନ କରି ଦିଆଯାଏ ।''

(ସହୀ ମୁସଲିମ, ୩ୟ ଖଣ୍ଡ, ବାଣୀ-୧୭୫୧)

## ୭୦. ଧନ ଜମା କରି ରଖନାହିଁ

''ଯଦି ମୋ ପାଖରେ ଉହଦ୍ ପାହାଡ଼ ଆକାରରେ ସୁନା ଥାଆନ୍ତା, ତେବେ ମଧ୍ୟ କେବଳ ଋଣ ପରିଶୋଧ କରିବା ଉଦ୍ଦେଶ୍ୟ ବ୍ୟତୀତ ମୁଁ ତିନି ରାତିରୁ ଅଧିକ ସେଥିରୁ କିଛି ନିଜ ପାଖରେ ରଖିବା ପସନ୍ଦ କରନ୍ତି ନାହିଁ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୪୫୨)

## ୭୧. ଆଖିର ବ୍ୟଭିଚାର

''ଆଖିର ବ୍ୟଭିଚାର ହେଉଛି ବାସନାପୂର୍ଣ୍ଣ ଦୃଷ୍ଟି ଏବଂ ଜିହ୍ୱାର ବ୍ୟଭିଚାର ହେଉଛି ଅଶ୍ଳୀଳ କଥା ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୬୫୭)

## ୭୨. ରୋଗୀ ସହ ସାକ୍ଷାତ କର

''ଜଣେ ପୀଡ଼ିତର ସାକ୍ଷାତ ପାଇଁ ଯାଇଥିବା ବ୍ୟକ୍ତି (ଘରକୁ) ଫେରିବା ପର୍ଯ୍ୟନ୍ତ ସ୍ୱର୍ଗର ଫଳୋଦ୍ୟାନରେ ବିଚରଣ କରୁଥାଏ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୫୬୮)

## ୭୩. ଦୀନଦୁଃଖୀଙ୍କ ପାଖେ ପାଖେ ଈଶ୍ୱର ଥାଆନ୍ତି

ଯେଉଁଦିନ ସମସ୍ତେ ପୁନର୍ଜୀବିତ ହେବେ, ସେଦିନ ମହାମହିମ ଅଲ୍ଲାହ ମଣିଷକୁ ପଚାରିବେ—''ହେ ଆଦମଙ୍କ ସନ୍ତାନ ! ମୁଁ ଅସୁସ୍ଥ ଥିଲି;

କିନ୍ତୁ ତୁ ମୋ ସହିତ ସାକ୍ଷାତ କଲୁ ନାହିଁ ?'' ସେ କହିବ—''ହେ ପ୍ରଭୁ ! ମୁଁ ଆପଣଙ୍କ ସହ କିପରି ସାକ୍ଷାତ କରିପାରିବି ? ଆପଣ ତ ସାରାଜଗତର ପାଳନକର୍ତ୍ତା ।'' ତା'ପରେ ଅଲ୍ଲାହ ତାକୁ ପଚାରିବେ—''କ'ଣ ତୁ ଏହା ଜାଣିନଥିଲୁ ଯେ ମୋର ଅମୁକ ଭକ୍ତ ଅସୁସ୍ଥ ଥିଲା ? କିନ୍ତୁ ତୁ ତା' ସହ ସାକ୍ଷାତ କଲୁ ନାହିଁ । ଯଦି ତୁ ତା' ସହ ଦେଖା କରିଥାଆନ୍ତୁ, ତେବେ ମୋତେ ତା' ନିକଟରେ ପାଇଥାଆନ୍ତୁ ।''

''ହେ ଆଦମପୁତ୍ର ! ମୁଁ ତୋତେ ଖାଇବାକୁ ମାଗିଥିଲି; କିନ୍ତୁ ତୁ ମୋତେ ଖାଇବାକୁ ଦେଲୁନାହିଁ ।'' ସେ ବ୍ୟକ୍ତି କହିବ—''ହେ ପ୍ରଭୁ ! ମୁଁ ଭଲା ଆପଣଙ୍କୁ କିପରି ଖାଇବାକୁ ଦେଇପାରିବି ? ଆପଣ ଯେ ସାରା ଜଗତର ପାଳନକର୍ତ୍ତା ?'' ସେ କହିବେ—''ତୁ କ'ଣ ଏହା ଜାଣିନଥିଲୁ ଯେ ମୋର ଅମୁକ ଭକ୍ତ ତୋତେ ଖାଇବାକୁ ମାଗିଥିଲା ? କିନ୍ତୁ ତୁ ତାକୁ ଖୁଆଇଲୁ ନାହିଁ । କ'ଣ ତୁ ଏହା ଜାଣି ନଥିଲୁ ଯେ, ଯଦି ତୁ ତାକୁ ଖାଇବାକୁ ଦେଇଥାଆନ୍ତୁ, ତେବେ ମୋତେ ତା' ପାଖରେ ପାଇଥାଆନ୍ତୁ ?''

''ହେ ଆଦମପୁତ୍ର ! ମୁଁ ତୋତେ ପାଣି ମାଗିଥିଲି, କିନ୍ତୁ ତୁ ମୋତେ ଦେଲୁ ନାହିଁ ।'' ସେ କହିବ—''ହେ ପ୍ରଭୁ, ମୁଁ ଆପଣଙ୍କୁ କିପରି ପାଣି ଦେଇଥାଆନ୍ତି ? ଆପଣ ଯେ ସାରାଜଗତର ପାଳନକର୍ତ୍ତା ?'' ତା'ପରେ ପ୍ରଭୁ କହିବେ—''ମୋର ଅମୁକ ଭକ୍ତ ତୋତେ ପାଣି ମାଗିଥିଲା, କିନ୍ତୁ ତୁ ତାକୁ ଦେଲୁ ନାହିଁ । ଯଦି ତୁ ତାକୁ ପାଣି ଦେଇଥାଆନ୍ତୁ, ତେବେ ମୋତେ ତା' ନିକଟରେ ପାଇଥାଆନ୍ତୁ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୫୬୯)

## ୭୪. ଅଲ୍ଲାହ ଦୟାମୟ ଏବଂ ଦୟା ପସନ୍ଦ କରନ୍ତି

''ଅଲ୍ଲାହ ଦୟାମୟ ଏବଂ ସେ ଦୟା ପସନ୍ଦ କରନ୍ତି ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୫୯୩)

## ୭୫. ସର୍ବୋତ୍ତମ ବ୍ୟକ୍ତି

''ତୁମମାନଙ୍କ ମଧ୍ୟରୁ ସେହିମାନେ ସବୁଠାରୁ ଭଲ, ଯେଉଁମାନଙ୍କର ବ୍ୟବହାର ଓ ଚରିତ୍ର ସବୁଠାରୁ ଭଲ ।

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୫୬)

**୭୬. ପରିଚିତ ଓ ଅପରିଚିତକୁ ଶୁଭେଚ୍ଛା ଜଣାଅ**

''ଗରିବମାନଙ୍କୁ ଭୋଜନ ଦିଅ ଏବଂ ପରିଚିତ ଓ ଅପରିଚିତ ଉଭୟଙ୍କୁ ଶୁଭେଚ୍ଛା ଜଣାଅ (ଇସ୍‌ଲାମର ଶୁଭେଚ୍ଛା ହେଉଛି 'ଅସ୍-ସଲାମୁ ଆଲୈକୁମ୍' ଅର୍ଥାତ୍, ଆପଣଙ୍କର ମଙ୍ଗଳ ହେଉ) ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୧୧)

**୭୭. ପ୍ରଥମେ ତୁମେ ଶୁଭେଚ୍ଛା ଜଣାଅ**

''ଯେଉଁମାନେ (ଅନ୍ୟକୁ) ପ୍ରଥମେ ଶୁଭେଚ୍ଛା ଜଣାନ୍ତି, ସେମାନେ ଅଲ୍ଲାହଙ୍କର ସାନ୍ନିଧ ଲାଭ କରନ୍ତି ।''

(ଅବୁ ଦାଉଦ, ବାଣୀ-୫୧୭୮)

**୭୮. ଗୁରୁଜନମାନଙ୍କୁ ସମ୍ମାନ କର**

''ଯିଏ ଆମ ସାନମାନଙ୍କ ପ୍ରତି ଦୟା ନ କରେ ଏବଂ ଆମ ଗୁରୁଜନମାନଙ୍କୁ ସମ୍ମାନ ନ କରେ, ସେ ଆମ ମଧ୍ୟରୁ ନୁହେଁ ।''

(ତିରମିଜୀ, ବାଣୀ-୧୯୧୯)

**୭୯. ନିମନ୍ତ୍ରଣ ସ୍ୱୀକାର କର**

''କ୍ରୀତଦାସମାନଙ୍କୁ ମୁକ୍ତ କର ଏବଂ (ଅନ୍ୟର) ନିମନ୍ତ୍ରଣ ସ୍ୱୀକାର କର ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୨୮୫)

**୮୦. ଚରିତ୍ରବାନ ବ୍ୟକ୍ତିର ମର୍ଯ୍ୟାଦା**

''ଜଣେ ବିଶ୍ୱାସକାରୀ ଉତ୍ତମ ଚରିତ୍ର ବଳରେ ରାତିରେ ପ୍ରାର୍ଥନା କରୁଥିବା ଏବଂ ଦିନରେ ଉପବାସ କରୁଥିବା ବ୍ୟକ୍ତିର ମର୍ଯ୍ୟାଦା ହାସଲ କରିବ ।''

(ଅବୁ ଦାଉଦ, ବାଣୀ-୪୭୮୦)

**୮୧. ପଦମର୍ଯ୍ୟାଦା ଅନୁଯାୟୀ ବ୍ୟବହାର କର**

''ଲୋକମାନଙ୍କ ସହିତ ସେମାନଙ୍କ ପଦମର୍ଯ୍ୟାଦା ଅନୁଯାୟୀ ବ୍ୟବହାର କର ।''

(ଅବୁ ଦାଉଦ, ବାଣୀ-୪୮୨୪)

## ୮୨. ଋଣୀ ପ୍ରତି ଉଦାର ହୁଅ

ଜଣେ ବ୍ୟକ୍ତି ଲୋକଙ୍କୁ ଟଙ୍କା କରଜ ଦିଏ ଏବଂ ସେ ନିଜ କର୍ମଚାରୀଙ୍କୁ କହେ—''ଯଦି ଋଣୀ ଗରିବ ଥାଏ, ତା' ଋଣ କ୍ଷମା କରିଦିଅ, ଯାହାଫଳରେ ହୁଏତ ଅଲ୍ଲାହ ଆମକୁ କ୍ଷମା କରିଦେବେ ।'' ସୁତରାଂ ତା' ମୃତ୍ୟୁ ପରେ ଯେତେବେଳେ ସେ ଅଲ୍ଲାହଙ୍କ ସହ ସାକ୍ଷାତ କଲା, ଅଲ୍ଲାହ ତାକୁ କ୍ଷମା କରିଦେଲେ ।

(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ବାଣୀ-୬୮୭)

## ୮୩. ଉପହାରର ପ୍ରତିଦାନ ଦିଅ

''ଯଦି କାହାରିକୁ ଉପହାର ସ୍ୱରୂପ କିଛି ଦିଆଯାଏ, ତେବେ ସାମର୍ଥ୍ୟ ଥିଲେ ସେ ତାର ପ୍ରତିବଦଳ ଦେବା ଉଚିତ । ଯଦି ସେ ଅସମର୍ଥ, ତେବେ ସେ ଏଥିପାଇଁ ଦାତାର ପ୍ରଶଂସା କରିବା ଉଚିତ । ଯିଏ ଉପହାର-ଦାତାର ପ୍ରଶଂସା କରେ, ସେ ତାକୁ ଧନ୍ୟବାଦ ଦିଏ ଏବଂ ଯିଏ ଉପହାରକୁ ଗୁପ୍ତ ରଖେ, ସେ ତା' ପ୍ରତି ଅକୃତଜ୍ଞତା ପ୍ରକାଶ କରେ ।''

(ଅବୁ ଦାଉଦ, ବାଣୀ-୪୭୯୫)

## ୮୪. ନିର୍ଯ୍ୟାତିତମାନଙ୍କର ସହାୟତା କର

''ନିର୍ଯ୍ୟାତିତମାନଙ୍କର ସହାୟତା କର ଏବଂ ପଥହରାମାନଙ୍କୁ ବାଟ ଦେଖାଅ ।''

(ଅବୁ ଦାଉଦ, ବାଣୀ-୪୭୯୯)

## ୮୫. ନ୍ୟାୟରେ ଥିଲେ ସୁଦ୍ଧା କଳହ ଏଡ଼ାଇଦିଅ

''ମୁଁ ସ୍ୱର୍ଗର ପରିସର ମଧ୍ୟରେ ସେହି ବ୍ୟକ୍ତିକୁ ଘରଟିଏ ଦେବାର ଦାୟିତ୍ୱ ନେଉଛି ଯିଏ ନ୍ୟାୟରେ ଥାଇ ସୁଦ୍ଧା କଳହ ଏଡ଼ାଇ ଦିଏ । ସେହି ବ୍ୟକ୍ତିକୁ ସ୍ୱର୍ଗର ମଧ୍ୟଭାଗରେ ଘରଟିଏ ଦେବାର ଦାୟିତ୍ୱ ନେଉଛି ଯିଏ ପରିହାସରେ ମଧ୍ୟ ମିଛ କହେନାହିଁ ଏବଂ ସେହି ବ୍ୟକ୍ତିକୁ ସ୍ୱର୍ଗର ଉପରିଭାଗରେ ଘରଟିଏ ଦେବାର ଦାୟିତ୍ୱ ନେଉଛି ଯିଏ ଭଲରୂପେ ନିଜ ଚରିତ୍ରର ନିର୍ମାଣ କରେ ।''

(ଅବୁ ଦାଉଦ, ବାଣୀ-୪୭୮୨)

## ୮୬. ଅନ୍ୟ ପ୍ରତି ଦୟା କର, ତୁମ ପ୍ରତି ଦୟା କରାଯିବ

''ଯିଏ ଲୋକମାନଙ୍କ ପ୍ରତି ଦୟା ନ କରେ, ଅଲ୍ଲାହ ତା' ପ୍ରତି ମଧ୍ୟ ଦୟା କରିବେ ନାହିଁ ।''

(ତିରମିଜୀ, ବାଣୀ-୧୯୨୨)

## ୮୭. କାହାରି ସମ୍ମାନ କ୍ଷୁର୍ଣ୍ଣ କର ନାହିଁ

''ଯିଏ ନିଜ ଭାଇର ସମ୍ମାନ ରକ୍ଷା କରେ, ଅଲ୍ଲାହ ତାକୁ ପୁନରୁତ୍‌ଥାନ ଦିନ ନର୍କାଗ୍ନିରୁ ସୁରକ୍ଷା ପ୍ରଦାନ କରିବେ ।''

(ତିରମିଜୀ, ବାଣୀ-୧୯୩୧)

## ୮୮. ପରନିନ୍ଦା କରନାହିଁ

ଈଶ୍ୱରଦୂତଙ୍କୁ ପ୍ରଶ୍ନ କରାଗଲା—''ହେ ଈଶ୍ୱରଦୂତ ! ପରନିନ୍ଦା କ'ଣ ?'' ସେ କହିଲେ—''ନିଜ ଭାଇ ବିଷୟରେ ଏଭଳି କଥା କହିବା ଯାହା ସେ ପସନ୍ଦ କରେନାହିଁ ।'' ପ୍ରଶ୍ନ ହେଲା—''ମୁଁ ତା' ବିଷୟରେ ଯାହା କହେ ଯଦି ତାହା ସତ୍ୟ ହୋଇଥାଏ ?'' ଈଶ୍ୱରଦୂତ କହିଲେ—''ଯଦି ତାହା ସତ୍ୟ, ତେବେ ତୁମେ ତା'ର ନିନ୍ଦା କରୁଛ ଆଉ ଯଦି ଏହା ସତ ନୁହେଁ, ତେବେ ତୁମେ ତା' ପ୍ରତି ମିଥ୍ୟାରୋପ କଲ ।''

(ତିରମିଜୀ, ବାଣୀ-୧୯୩୪)

## ୮୯. ଈର୍ଷା ପୁଣ୍ୟକୁ ଖାଇଯାଏ

''ଈର୍ଷା କରନାହିଁ, କାରଣ ଈର୍ଷା ପୁଣ୍ୟକୁ ଏମିତି ଖାଇଯାଏ ଯେମିତି ନିଆଁ ଜାଳେଣୀ ବା ଘାସକୁ ଖାଇଯାଏ ।''

(ଅବୁ ଦାଉଦ, ବାଣୀ-୪୮୮୫)

## ୯୦. ମିଛ କହିବା ଏକ ବିଶ୍ୱାସଘାତକତା

''ତୁମେ ତୁମ ଭାଇକୁ କିଛି କୁହ ଏବଂ ସେ ତାକୁ ବିଶ୍ୱାସ କରେ, କିନ୍ତୁ ତୁମେ ତାକୁ ନିରାଟ ମିଛକଥା କହୁଥାଅ । ଏହା (ତା' ପ୍ରତି) ଘୋର ବିଶ୍ୱାସଘାତକତା ।''

(ଅବୁ ଦାଉଦ, ବାଣୀ-୪୯୫୩)

## ୯୧. ଶାନ୍ତି ସ୍ଥାପନ ପାଇଁ କୁହାଯାଇଥିବା ମିଛ, ମିଛ ନୁହେଁ

''ଯିଏ ଲୋକମାନଙ୍କ ମଧ୍ୟରେ (କିଛି ମିଛ କହି) ଶାନ୍ତି ସ୍ଥାପନ କରେ, ସେ ମିଥ୍ୟାବାଦୀ ନୁହେଁ ।''

(ତିରମିଜୀ, ବାଣୀ-୧୯୩୮)

## ୯୨. ଶାନ୍ତି ସ୍ଥାପନ ଏକ ମହାପୁଣ୍ୟ

''ମୁଁ ତୁମମାନଙ୍କୁ ଉପବାସ, ପ୍ରାର୍ଥନା ଏବଂ ଦାନ ଅପେକ୍ଷା ଅଧିକ ଶ୍ରେଷ୍ଠ କର୍ମ ବିଷୟରେ କହିବି କି ?''

ଲୋକମାନେ ଉତ୍ତର ଦେଲେ—''କୁହନ୍ତୁ, ହେ ଈଶ୍ୱରଦୂତ ।''

ସେ କହିଲେ—''ଲୋକମାନଙ୍କ ମଧ୍ୟରେ ମିଳାମିଶା କରିଦେବା ।''

(ଅବୁ ଦାଉଦ, ବାଣୀ-୪୯୦୧)

## ୯୩. ତିନୋଟି ଯାଗାରେ ମିଛ କହିବା ଶାସ୍ତ୍ରସମ୍ମତ

''ତିନୋଟି ସ୍ଥାନ ବ୍ୟତୀତ ଅନ୍ୟ ସ୍ଥାନରେ ମିଥ୍ୟା କହିବା ବୈଧ ନୁହେଁ— ନିଜ ପତ୍ନୀକୁ ଖୁସି କରିବା ପାଇଁ କିଛିଟା ମିଛ କହିବା, ଯୁଦ୍ଧ ସମୟରେ ମିଥ୍ୟା କହିବା ଏବଂ ଲୋକମାନଙ୍କ ମଧ୍ୟରେ (ବିବାଦର ମୀମାଂଶା କରି) ଶାନ୍ତି ସ୍ଥାପନ କରିବାପାଇଁ ମିଥ୍ୟା କହିବା ।''

(ତିରମିଜୀ, ବାଣୀ-୧୯୩୯)

## ୯୪. ଅନ୍ୟକୁ କ୍ଷମା କର

ଜଣେ ବ୍ୟକ୍ତି ଈଶ୍ୱରଦୂତଙ୍କ ନିକଟକୁ ଆସି ପ୍ରଶ୍ନ କଲେ—''ହେ ଈଶ୍ୱରଦୂତ ! ଜଣେ ଭୃତ୍ୟକୁ କେତେଥର କ୍ଷମା କରାଯିବା ଉଚିତ ? ଈଶ୍ୱରଦୂତ ନୀରବ ରହିଲେ । ତା'ପରେ ସେ ପୁଣି ପ୍ରଶ୍ନ କଲା— ''ହେ ଈଶ୍ୱରଦୂତ ! ଜଣେ ଭୃତ୍ୟକୁ କେତେ ଥର କ୍ଷମା କରିବା ଉଚିତ ।'' ଈଶ୍ୱରଦୂତ ଉତ୍ତର ଦେଲେ—''ପ୍ରତିଦିନ ସତୁରି ଥର ।''

(ତିରମିଜୀ, ବାଣୀ-୧୯୪୯)

## ୯୫. କୃତଜ୍ଞ ହୁଅ

''ଯେଉଁ ବ୍ୟକ୍ତି ମଣିଷମାନଙ୍କ ପ୍ରତି କୃତଜ୍ଞ ନୁହେଁ, ସେ ଅଲ୍ଲାହଙ୍କ ପ୍ରତି ମଧ୍ୟ କୃତଜ୍ଞ ନୁହେଁ ।''

(ତିରମିଜୀ, ବାଣୀ-୧୯୫୪)

## ୯୬. ଭଲକର୍ମ ଛୋଟ ହେଲେ ବି ମହତ୍ୱପୂର୍ଣ୍ଣ

''ଜଣେ ବ୍ୟକ୍ତି ଯାଉଥିବା ସମୟରେ ବାଟରେ କଣ୍ଟା ପଡ଼ିଥିବା ଦେଖି ତାକୁ ଉଠାଇଦେଲା, ଅଲ୍ଲାହ ତା' ପ୍ରତି ପ୍ରସନ୍ନ ହେଲେ ଏବଂ ତା' ଦୋଷ କ୍ଷମା କରିଦେଲେ ।''

(ତିରମିଜୀ, ବାଣୀ-୧୯୫୮)

## ୯୭. ରାସ୍ତାର ଅଧିକାର

''ସାବଧାନ ହୁଅ ! ରାସ୍ତା ଉପରେ ବସ ନାହିଁ ।'' ଲୋକମାନେ କହିଲେ—''ହେ ଅଲ୍ଲାହଙ୍କ ଧର୍ମଦୂତ ! ଆମେ ରାସ୍ତାରେ ନ ବସି ରହିପାରିବୁ ନାହିଁ । ସେଠାରେ ଆମେ ବସି କଥାବାର୍ତ୍ତା କରୁ ।'' ଈଶ୍ୱରଦୂତ କହିଲେ—''ଯଦି ତୁମେ ରାସ୍ତାରେ ବସିବାକୁ ଚାହଁ, ତେବେ ତାକୁ ତା'ର ଅଧିକାର ଦିଅ ।'' ସେମାନେ ପ୍ରଶ୍ନ କଲେ—''ହେ ଈଶ୍ୱରଦୂତ ! ରାସ୍ତାର ଅଧିକାର କ'ଣ ?'' ଈଶ୍ୱରଦୂତ ଉତ୍ତର ଦେଲେ—''ଦୃଷ୍ଟି ତଳକୁ ରଖିବା, ଅନ୍ୟକୁ କଷ୍ଟ ନ ଦେବା, ଶୁଭେଚ୍ଛାର ପ୍ରତିଶୁଭେଚ୍ଛା ଜଣାଇବା, ସତ୍ ଉପଦେଶ ଦେବା ଏବଂ କୁକର୍ମରୁ ଅନ୍ୟକୁ ନିବୃତ୍ତ ରଖିବା ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୨୪୮)

## ୯୮. ବିନମ୍ର ହୁଅ

''ଯେଉଁ ବ୍ୟକ୍ତି ପାଖରେ ବିନମ୍ରତା ନାହିଁ, ତା' ପାଖରେ କୌଣସି ଭଲଗୁଣ ନାହିଁ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୫୯୨)

## ୯୯. ଜୀବଜନ୍ତୁଙ୍କ ପ୍ରତି ଦୟା କର

''ଜଣେ ସ୍ତ୍ରୀଲୋକକୁ ଏଥିପାଇଁ ଦଣ୍ଡିତ କରାଗଲା ଯେ ସେ ଗୋଟିଏ ବିରାଡ଼ିକୁ ବାନ୍ଧି ରଖିଥିବାରୁ ତା'ର ମୃତ୍ୟୁ ହୋଇଗଲା । ସେ ବିରାଡ଼ିଟିକୁ ଖାଇବା ପିଇବାକୁ ଦେଇ ନଥିଲା କିମ୍ବା ଖାଦ୍ୟ ଆହରଣ ପାଇଁ ତାକୁ ବାହାରକୁ ମଧ୍ୟ ଛାଡ଼ି ନଥିଲା । ଏହି କାରଣ ଯୋଗୁଁ ସେହି ସ୍ତ୍ରୀଲୋକ ଜଣକ ନର୍କଗାମୀ ହେଲା ।''

(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ବାଣୀ-୬୮୯)

## ୧୦୦. ପ୍ରତ୍ୟେକ ପ୍ରାଣୀର ସେବାରେ ପୁଣ୍ୟ ମିଳେ

''ବାଟରେ ଯାଉଥିବା ସମୟରେ ଜଣେ ବ୍ୟକ୍ତିକୁ ପ୍ରବଳ ଶୋଷ ହେଲା ଏବଂ ସେ ଗୋଟିଏ କୂଅ ଭିତରେ ପଶି ପାଣି ପିଇଲା । ପାଣି ପିଇସାରି ବାହାରିବା ପରେ ସେ ଦେଖିଲା ଯେ ଗୋଟିଏ କୁକୁର ପ୍ରବଳ ଶୋଷରେ ବିକଳ ହୋଇ ମାଟିକାଦୁଅ ଖାଇଯାଉଛି । ଲୋକଟି ମନକୁ ମନ କହିଲା— 'ଏଇ କୁକୁରଟି ଠିକ୍ ସେଇଭଳି କଷ୍ଟ ଭୋଗୁଛି, ଯେମିତି କିଛି ସମୟ ପୂର୍ବେ ମୁଁ ଭୋଗୁଥିଲି ।' ସୁତରାଂ ସେ ପୁଣି କୂଅ ଭିତରେ ପଶିଲା, ନିଜ ଜୋତାରେ ପାଣି ଭର୍ତ୍ତି କରି ତାକୁ ପାଟିରେ କାମୁଡ଼ି ଧରି କୂଅରୁ ବାହାରି ଆସିଲା । ତା'ପରେ ସେ ତୃଷାର୍ତ୍ତ କୁକୁରଟିକୁ ପାଣି ପିଆଇଲା । ଅଲ୍ଲାହ ସେହି ବ୍ୟକ୍ତିଟିର ଏହି କର୍ମ ଯୋଗୁଁ ଅତି ପ୍ରସନ୍ନ ହେଲେ ଏବଂ ତା'ର ସବୁ ପାପ କ୍ଷମା କରିଦେଲେ । (ଈଶ୍ୱରଦୂତଙ୍କଠାରୁ) ଏହା ଶୁଣି ଉପସ୍ଥିତ ଲୋକମାନେ ପ୍ରଶ୍ନ କଲେ—''ହେ ଈଶ୍ୱରଦୂତ ! କ'ଣ ପଶୁମାନଙ୍କର ସେବା କଲେ ମଧ୍ୟ ଆମକୁ ପୁଣ୍ୟ ମିଳିବ ?'' ମହାମାନ୍ୟ ଈଶ୍ୱରଦୂତ ଉତ୍ତର ଦେଲେ—''ହଁ, ପ୍ରତ୍ୟେକ ପ୍ରାଣୀର ସେବାରେ ପୁଣ୍ୟ ମିଳେ ।''

(ସହୀ ବୁଖାରୀ, ୩ୟ ଖଣ୍ଡ, ବାଣୀ-୫୫୧)

## ୧୦୧. କୁକୁର ପ୍ରତି ଦୟା ମଧ୍ୟ ପୁଣ୍ୟକାର୍ଯ୍ୟ

''ଥରେ ତୃଷାର୍ତ୍ତ କୁକୁରଟିଏ ଗୋଟିଏ କୂଅ ଚାରିପଟେ ବୁଲୁଥିଲା ଏବଂ ଶୋଷ ଯୋଗୁଁ ପ୍ରାୟ ମରିବାକୁ ବସିଥିଲା । ଜଣେ ଇସ୍ରାଇଲି ଦେହଜୀବୀ ଏହା ଦେଖିଲା ଏବଂ ନିଜ ଜୋତା ବାହାର କରି ସେଥିରେ ତାକୁ ପାଣି ଆଣି ପିଆଇଲା । ତେଣୁ ଅଲ୍ଲାହ ତା'ର ସେହି ସତ୍‌କର୍ମ ପାଇଁ ତାକୁ କ୍ଷମା କରିଦେଲେ ।''

(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ବାଣୀ-୬୭୩)

## ୧୦୨. ବୃକ୍ଷରୋପଣ ଏକ ମହତ କାର୍ଯ୍ୟ

''ଯଦି ଜଣେ ମୁସଲମାନ ବୃକ୍ଷରୋପଣ କରେ କିମ୍ବା ଶସ୍ୟ ବୁଣେ ଏବଂ ତହିଁରୁ କୌଣସି ପଶୁପକ୍ଷୀ ବା ମଣିଷ ଖାଦ୍ୟ ପାଆନ୍ତି, ତେବେ ତା'ର ଏହି କର୍ମ ଈଶ୍ୱରଙ୍କ ନିକଟରେ 'ଦାନ' ରୂପେ ବିବେଚିତ ହୁଏ ।''

(ସହୀ ବୁଖାରୀ, ୩ୟ ଖଣ୍ଡ, ବାଣୀ-୫୧୩)

## ୧୦୩. ଦୟାଶୀଳ ହୁଅ

ଜଣେ ବେଦୁଇନ୍ ବ୍ୟକ୍ତି ମସ୍‌ଜିଦ ମଧ୍ୟରେ ପରିସ୍ରା କରିଦେଲା । ଲୋକମାନେ ତାକୁ ମାରିବା ପାଇଁ ଉଦ୍ୟତ ହେଲେ । ତେଣୁ ଈଶ୍ୱରଦୂତ କହିଲେ—‘‘ତାକୁ ପରିସ୍ରା କରିବାକୁ ଦିଅ ।’’ ତା’ପରେ ଈଶ୍ୱରଦୂତ ବାଲ୍‌ଟିଏ ପାଣି ମଗାଇ ସେହି ପରିସ୍ରା ସ୍ଥାନକୁ ଧୋଇଦେଲେ ।

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୫୪)

## ୧୦୪. ଦୋ’ମୁହାଁ ବ୍ୟକ୍ତି ଅତି ଜଘଣ୍ୟ

‘‘ପୁନରୁତ୍‌ଥାନ ଦିନ ଦୋ’ମୁହାଁ ଲୋକମାନେ ଅଲ୍ଲାହଙ୍କ ଦୃଷ୍ଟିରେ ସବୁଠାରୁ ଜଘଣ୍ୟ ଲୋକ ହେବେ, ଯେଉଁମାନଙ୍କର କିଛି ଲୋକଙ୍କ ପାଖରେ ଗୋଟାଏ ଚେହେରା ଏବଂ ଆଉ କିଛି ଲୋକଙ୍କ ପାଖରେ ଆଉ ଗୋଟିଏ ଚେହେରା ।’’

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୮୪)

## ୧୦୫. କପଟୀର ଲକ୍ଷଣ

‘‘ଜଣେ କପଟୀର ତିନୋଟି ଲକ୍ଷଣ ଥାଏ—କଥା କହିଲେ ସେ ମିଛ କହେ, ବଚନ ଦେଲେ ତାକୁ ଭାଙ୍ଗିଦିଏ ଏବଂ ଯଦି ତୁମେ ତା’ ପ୍ରତି ବିଶ୍ୱାସ କର, ସେ ବିଶ୍ୱାସଘାତକତା କରେ ।’’

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୩୨)

## ୧୦୬. ଶକ୍ତିମାନ ସେହି ଯିଏ କ୍ରୋଧ ନିୟନ୍ତ୍ରଣ କରିପାରେ

‘‘ଭଲ କୁସ୍ତି କରୁଥିବା ଲୋକ ଶକ୍ତିମାନ ନୁହେଁ; ବରଂ ଶକ୍ତିମାନ ହେଉଛି ସେହି, ଯିଏ କ୍ରୋଧ ସମୟରେ ନିଜକୁ ନିୟନ୍ତ୍ରଣ କରିପାରେ ।’’

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୬୦୯)

## ୧୦୭. କାହା ପ୍ରତି ଅକାରଣରେ ସନ୍ଦେହ କରନାହିଁ

‘‘ଶଂସୟ ପ୍ରତି ସାବଧାନ ! କାରଣ (ଅଯଥା) ସନ୍ଦେହ ମିଛକାହାଣୀଠାରୁ ଆହୁରି ଖରାପ । ଅନ୍ୟର ଦୋଷ ଅନ୍ୱେଷଣ କରନାହିଁ, ପରସ୍ପରର ଗୁପ୍ତକଥା ଜାଣିବାର ପ୍ରୟାସ କରନାହିଁ, ଅଶ୍ଳୀଳ କର୍ମ କରନାହିଁ, ପରସ୍ପର ପ୍ରତି ଈର୍ଷା କରନାହିଁ ବା ପରସ୍ପରକୁ ଘୃଣା

କରନାହିଁ ଏବଂ ନିଜ ନିଜ ମଧ୍ୟରେ କଥାବାର୍ତ୍ତା ବନ୍ଦ କରନାହିଁ । ହେ ଅଲ୍ଲାହଙ୍କର ଭକ୍ତ, ଭାଇ ଭାଇ ହୋଇ ରୁହ ।

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୯୨)

## ୧୦୮. କଳହ କର ନାହିଁ

''କଳହପ୍ରିୟ ବ୍ୟକ୍ତି ଅଲ୍ଲାହଙ୍କ ଦୃଷ୍ଟିରେ ଅତି ଜଘଣ୍ୟ ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୨୯୮)

## ୧୦୯. ଉପବାସର ଉଦ୍ଦେଶ୍ୟ କେବଳ ଖାଦ୍ୟତ୍ୟାଗ ନୁହେଁ

''ଯିଏ ମିଥ୍ୟା ବଚନ କହିବା, କୁକର୍ମ କରିବା ଏବଂ ଅନ୍ୟ ପ୍ରତି ଖରାପ ଭାଷା ପ୍ରୟୋଗ କରିବା ନ ଛାଡ଼େ, ଅଲ୍ଲାହଙ୍କୁ ତାର (ଉପବାସରେ) ଖାଦ୍ୟ, ପାନୀୟ ଛାଡ଼ିଦେବାର କୌଣସି ଆବଶ୍ୟକତା ନାହିଁ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୮୩)

## ୧୧୦. ଅହଂକାରୀ ବୈକୁଣ୍ଠକୁ ଯିବ ନାହିଁ

''ଯାହା ମନରେ ଗୋଟିଏ ସୋରିଷ ଓଜନର ଅହଂକାର ଥିବ, ସେ ବୈକୁଣ୍ଠରେ ପ୍ରବେଶ କରିବ ନାହିଁ ଏବଂ ଯାହା ମନରେ ଗୋଟିଏ ସୋରିଷ ଓଜନର ବିଶ୍ୱାସ ଥିବ, ସେ (ନର୍କ) ଅଗ୍ନିରେ ପ୍ରବେଶ କରିବ ନାହିଁ ।''

(ତିରମିଜୀ, ବାଣୀ-୧୯୯୮)

## ୧୧୧. ଚୁଗୁଲିଆ ବୈକୁଣ୍ଠକୁ ଯିବନାହିଁ

''ଚୁଗୁଲିଆ ବ୍ୟକ୍ତି ବୈକୁଣ୍ଠରେ ପ୍ରବେଶ କରିବ ନାହିଁ ।''

(ତିରମିଜୀ, ବାଣୀ-୨୦୨୬)

## ୧୧୨. ସତକର୍ମ ଅସତ୍‌କର୍ମର କୁପ୍ରଭାବକୁ ନଷ୍ଟ କରିଦିଏ

''ତୁମେ ଯେଉଁଠାରେ ଥାଅ, ଅଲ୍ଲାହଙ୍କ ପ୍ରତି ଭୟ ରଖ ଏବଂ କୌଣସି ଅସତ୍‌କର୍ମ କରିଦେବା ପରେ ଏହାକୁ ଦୂରୀଭୂତ କରିବା ପାଇଁ କୌଣସି ଭଲକର୍ମ କରିନିଅ ଏବଂ ଲୋକଙ୍କ ସହିତ ଭଲ ବ୍ୟବହାର କର ।''

(ତିରମିଜୀ, ବାଣୀ-୧୯୮୭)

## ୧୧୩. ସ୍ୱର୍ଗକୁ ଦୁଃଖ କଷ୍ଟ ଘେରିରହିଛି

''ସ୍ୱର୍ଗକୁ (ବିଭିନ୍ନ ପ୍ରକାର) ଦୁଃଖ କଷ୍ଟ ଘେରିରହିଛି ଏବଂ ନର୍କକୁ ଘେରି ରହିଛି କାମନା ।'' (ଅର୍ଥାତ୍ ସ୍ୱର୍ଗକୁ ଯିବାକୁ ହେଲେ ଅନେକ ଇଚ୍ଛାବିରୁଦ୍ଧ ଓ ଅପ୍ରିୟ କର୍ମ କରିବାକୁ ପଡ଼ିବ; କିନ୍ତୁ ନର୍କକୁ ଯିବାପାଇଁ ହେଲେ କେବଳ ଇଚ୍ଛାଗୁଡ଼ିକୁ ପୂର୍ଣ୍ଣ କରିଦେବା ହିଁ ଯଥେଷ୍ଟ ।)

(ତିରମିଜୀ, ବାଣୀ-୨୫୫୯)

## ୧୧୪. କ୍ଷମା କଲେ ସମ୍ମାନ ବଢ଼େ, ବିନମ୍ର ହେଲେ ମର୍ଯ୍ୟାଦା ବଢ଼େ

''ଦାନ କଲେ ଧନ କମିଯାଏ ନାହିଁ । ଅନ୍ୟକୁ କ୍ଷମା ଦେଲେ ଅଲ୍ଲାହ ମଣିଷର ସମ୍ମାନ ବୃଦ୍ଧି କରନ୍ତି ଏବଂ ଯିଏ ଅଲ୍ଲାହଙ୍କ ପାଇଁ ବିନମ୍ର ହୁଏ, ଅଲ୍ଲାହ ତାର ମର୍ଯ୍ୟାଦା ବୃଦ୍ଧି କରନ୍ତି ।''

(ତିରମିଜୀ, ବାଣୀ-୨୦୨୯)

## ୧୧୫. ସର୍ବୋତ୍ତମ ବ୍ୟକ୍ତି

''ତୁମମାନଙ୍କ ମଧ୍ୟରେ ସବୁଠାରୁ ଭଲ ମଣିଷ ହେଉଛି ସେଇ, ଯାହାଠାରୁ (ସର୍ବଦା) ଭଲ ଆଶା କରାଯାଏ ଏବଂ ଲୋକେ ତା' ଦୁଷ୍କର୍ମରୁ ନିରାପଦରେ ରୁହନ୍ତି ଏବଂ ସବୁଠାରୁ ମନ୍ଦବ୍ୟକ୍ତି ହେଉଛି ସେଇ, ଯାହାଠାରୁ କୌଣସି ଭଲ କଥା ଆଶା କରାଯାଏ ନାହିଁ ଏବଂ ଲୋକେ ତା' ଦୁଷ୍ଟତାରୁ ନିଜକୁ ସୁରକ୍ଷିତ ମନେ କରନ୍ତି ନାହିଁ ।''

(ତିରମିଜୀ, ବାଣୀ-୨୨୬୩)

## ୧୧୬. ସ୍ୱାସ୍ଥ୍ୟ ଓ ସମୟର ଅପବ୍ୟବହାର କର ନାହିଁ

''ଅଧିକାଂଶ ଲୋକ ଦୁଇଟି ଅନୁଗ୍ରହର ଅପବ୍ୟୟ କରନ୍ତି—ସ୍ୱାସ୍ଥ୍ୟର ଓ ସମୟର ।''

(ତିରମିଜୀ, ବାଣୀ-୨୩୦୪)

## ୧୧୭. ମୃତମାନଙ୍କର ନିନ୍ଦା କରନାହିଁ

''ମୃତମାନଙ୍କର ନିନ୍ଦା କର ନାହିଁ । ଏହାଦ୍ୱାରା ଜୀବିତମାନଙ୍କୁ କଷ୍ଟ ହୁଏ ।''

(ତିରମିଜୀ, ବାଣୀ-୧୯୮୨)

## ୧୧୮. ପ୍ରେମ ପ୍ରକାଶ କର

''ଯଦି ତୁମମାନଙ୍କ ମଧ୍ୟରୁ କେହି ତା' ଭାଇକୁ ପ୍ରେମ କରେ, ଏକଥା ସେ ତାକୁ ଜଣାଇ ଦେଉ ।''

(ତିରମିଜୀ, ବାଣୀ-୨୩୯୨)

## ୧୧୯. ଧୈର୍ଯ୍ୟର ପ୍ରତିଦାନ ସ୍ୱର୍ଗ

ମହାମହିମ ଅଲ୍ଲାହ କହିଛନ୍ତି—''ମୁଁ ଯାହାର ଦୃଷ୍ଟିଶକ୍ତି ଛିନ୍ନ କରେ ଏବଂ ସେ ଧୈର୍ଯ୍ୟ ଧରି (ମୋ'ଠାରୁ) ପ୍ରତିଦାନର ଆଶା ରଖେ, ତେବେ ତାକୁ ସ୍ୱର୍ଗ ବ୍ୟତୀତ ଅନ୍ୟ କୌଣସି ପ୍ରତିଦାନ ଦେଇ ମୁଁ ସନ୍ତୁଷ୍ଟ ହେବି ନାହିଁ ।''

(ତିରମିଜୀ, ବାଣୀ-୨୪୦୧)

## ୧୨୦. ଅନ୍ୟ ପ୍ରତି ଈର୍ଷା କରନାହିଁ

''ନିଜ ଭାଇର ବିପଦରେ ଖୁସି ହୁଅ ନାହିଁ, କାରଣ ଅଲ୍ଲାହ ତା' ପ୍ରତି ଅନୁଗ୍ରହ କରନ୍ତି ଏବଂ ତୁମକୁ ପରୀକ୍ଷା କରନ୍ତି ।''

(ତିରମିଜୀ, ବାଣୀ-୨୫୦୬)

## ୧୨୧. ଦାନ କେଉଁଠାରୁ ଆରମ୍ଭ କରିବ

''ହେ ଆଦମଙ୍କ ସନ୍ତାନ ! ଯାହା ତୁମ ପାଖରେ ବଳକା ରହିଯାଏ, ତାକୁ ଅନ୍ୟକୁ (ଦାନ) କରିଦେବା ହିଁ ତୁମ ପକ୍ଷରେ ମଙ୍ଗଳ ଏବଂ ତାକୁ ପାଖରେ ରଖିବା ତୁମ ପାଇଁ ଭଲ ନୁହେଁ । କିନ୍ତୁ ଯେତିକି ରଖିଲେ ଯଥେଷ୍ଟ ହେବ, ସେତିକି ରଖିଲେ କ୍ଷତି ନାହିଁ ଏବଂ ତୁମ ଉପରେ ନିର୍ଭର କରୁଥିବା ଲୋକଙ୍କଠାରୁ (ଦାନ ଦେବା) ଆରମ୍ଭ କର । ଦେଉଥିବା ହାତ ଗ୍ରହଣ କରୁଥିବା ହାତ ଅପେକ୍ଷା ଶ୍ରେୟସ୍କର ।''

(ତିରମିଜୀ, ବାଣୀ-୨୩୪୩)

## ୧୨୨. କାମନାର ଅନ୍ତ ନାହିଁ

''ଈଶ୍ୱରଦୂତ ଆମ ପାଖରେ ଭୂମି ଉପରେ ଗୋଟିଏ ଚାରିକୋଣିଆ ଘର କାଟିଲେ ଏବଂ ଏହାର ମଝିରେ ଗୋଟିଏ ସରଳରେଖା ଟାଣିଲେ ଯାହାକି ସେହି ଚାରିକୋଣିଆ ଘରର ବାହାରକୁ ବାହାରି ଥିଲା । ମଝି

ରେଖାର ଉଭୟ ପଟେ ସେ ବିଭିନ୍ନ (ଆକାରର) ରେଖାମାନ ଟାଣିଲେ (ପ୍ରାୟ ଏହିପରି)—




ତା'ପରେ ସେ କହିଲେ ଏ ହେଉଛି ଆଦମଙ୍କର ସନ୍ତାନ (କ) ଏବଂ ଏହା ହେଉଛି ତାର ପରମାୟୁ (ଖ) ଯାହାକି ତାକୁ ଚାରିଆଡୁ ଘେରି ରହିଛି । ମଝିରେ ଥିବା ରେଖାଟି ମଣିଷ ଏବଂ ତା' ଉଭୟ ପଟେ ଥିବା ଛୋଟ ବଡ଼ ରେଖାଗୁଡ଼ିକ ତା' ଦୁଃଖ ବିପତ୍ତି (ଗ), ଯଦି ସେ ଗୋଟିକୁ ପାର କରିଯାଏ, ତେବେ ଅନ୍ୟଟି ତାକୁ ମାଡ଼ିବସେ । (ଘରର) ବାହାରକୁ ବାହାରିଥିବା ରେଖାଟି ହେଉଛି ମଣିଷର କାମନା (ଘ) (ଯାହାକି ତା'ର ପରମାୟୁଠାରୁ ଆଗକୁ ବଢ଼ି ରହିଛି) ।

(ତିରମିଜୀ, ବାଣୀ-୨୪୫୪)

## ୧୨୩. ନିର୍ଯ୍ୟାତିତମାନଙ୍କ ପ୍ରାର୍ଥନା ପ୍ରତି ସାବଧାନ

''ନିର୍ଯ୍ୟାତିତ ମଣିଷମାନଙ୍କର ପ୍ରାର୍ଥନା ପ୍ରତି ସାବଧାନ, କାରଣ ସେମାନଙ୍କର ପ୍ରାର୍ଥନା ଓ ଅଲ୍ଲାହଙ୍କ ମଧ୍ୟରେ କୌଣସି ପ୍ରତିବନ୍ଧକ ନ ଥାଏ ।''

(ତିରମିଜୀ, ବାଣୀ-୨୦୧୪)

## ୧୨୪. କାଙ୍ଗାଳ କିଏ

ଈଶ୍ୱରଦୂତ ଦିନେ ନିଜର ଶିଷ୍ୟମାନଙ୍କୁ ପଚାରିଲେ—''କହିଲ, କାଙ୍ଗାଳ କିଏ ?'' ଶିଷ୍ୟମାନେ ଉତ୍ତର ଦେଲେ—''ଯାହା ପାଖରେ ଟଙ୍କା ପଇସା ନାହିଁ, ସେହି କାଙ୍ଗାଳ ।'' ଈଶ୍ୱରଦୂତ କହିଲେ—''ଆମ୍ଭମାନଙ୍କ

ମଧ୍ୟରେ କାଙ୍ଗାଳ ସେହି, ଯିଏ ଅନ୍ତିମ ବିଚାରଦିନ ନମାଜ, ଉପବାସ, ଜକାତ (ଦାନ)ର ଭଣ୍ଡାର ନେଇ ଆସିଥିବ; କିନ୍ତୁ ଦୁନିଆରେ କାହାରିକୁ ଗାଳିଗୁଲଜ କରିଥିବ, କାହା ପ୍ରତି ମିଥ୍ୟାରୋପ କରିଥିବ, କାହାକୁ ମାଡ଼ପିଟ କରିଥିବ କିମ୍ବା କାହା ଧନ ଅନ୍ୟାୟରେ ଖାଇଯାଇଥିବ । ଯେତେବେଳେ ସେ ବିଚାରର ସମ୍ମୁଖୀନ ହେବ, ତା' ଦ୍ୱାରା ଅତ୍ୟାଚାରିତ ହୋଇଥିବା ଲୋକମାନେ ହାଜର ହେବେ ଏବଂ ଯାହାର ଯାହା କିଛି ଅଧିକାର ସିଦ୍ଧ ହେବ ତାର ଅର୍ଜିତ ପୁଣ୍ୟରୁ ସେମାନଙ୍କୁ (କ୍ଷତି ପୂରଣ) ଦେଇ ଦିଆଯିବ, ଏପରିକି ତାର ସବୁ ପୁଣ୍ୟ ସରିଯିବ, ତା'ପରେ ଦାବୀଦାରମାନଙ୍କ ପାପ ତା' ଉପରେ ଲଦି ଦିଆଯିବ ଏବଂ ତାକୁ ନର୍କରେ ଫିଙ୍ଗି ଦିଆଯିବ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୫୮୧)

## ୧୨୫. ଅନ୍ୟକୁ କୁକର୍ମରୁ ନିବୃତ୍ତ ରଖ

''ତୁମମାନଙ୍କ ମଧ୍ୟରୁ କେହି ଯଦି (କୌଣସି) କୁକର୍ମ ହେଉଥିବାର ଦେଖେ, ତେବେ ସେ ତାହା ନିଜ ହାତରେ ବନ୍ଦ କରୁ । ଯଦି ହାତ ଦ୍ୱାରା ବନ୍ଦ କରିବାକୁ ସେ ସମର୍ଥ ନୁହେଁ, ତେବେ କଥା କହି ବନ୍ଦ କରୁ ଏବଂ ଯଦି କେହି ଏହା ମଧ୍ୟ କରିବାକୁ ସମର୍ଥ ନୁହେଁ, ତେବେ ଅନ୍ତତଃ ନିଜ ମନରେ ଏହାକୁ ଖରାପ ଭାବୁ ଏବଂ ଏହା ହେଉଛି ସବୁଠାରୁ ଦୁର୍ବଳତମ (ଈଶ୍ୱର) ବିଶ୍ୱାସ ।''

(ତିରମିଜୀ, ବାଣୀ-୨୧୭୨)

## ୧୨୬. ନ୍ୟାୟର କଥାଟିଏ କହିବା ଗୋଟିଏ ବଡ଼ ଜିହାଦ୍

''ଅତ୍ୟାଚାରୀ ଶାସକ ସମ୍ମୁଖରେ ନ୍ୟାୟର କଥାଟିଏ କହିବା ଗୋଟିଏ ବଡ଼ ଜିହାଦ୍ (ଈଶ୍ୱରଙ୍କ ପାଇଁ ସଂଘର୍ଷ) ।''

(ତିରମିଜୀ, ବାଣୀ-୨୧୭୪)

## ୧୨୭. ଅତ୍ୟାଚାରୀ ଓ ଅତ୍ୟାଚାରିତ, ଉଭୟଙ୍କୁ ରୋକ

ତୁମ ଭାଇ ଅତ୍ୟାଚାରୀ ହେଉ ବା ଅତ୍ୟାଚାରିତ, ତାକୁ ସାହାଯ୍ୟ କର । ଜଣେ ବ୍ୟକ୍ତି ପ୍ରଶ୍ନ କଲେ—''ହେ ଈଶ୍ୱରଦୂତ ! ଯଦି ତା' ପ୍ରତି ଅତ୍ୟାଚାର ହୋଇଛି ତେବେ ତ ମୁଁ ତାକୁ (ନିଶ୍ଚୟ) ସାହାଯ୍ୟ

କରିବି, କିନ୍ତୁ ଯଦି ସେ ଅତ୍ୟାଚାରୀ ହୋଇଥାଏ, ତେବେ ମୁଁ ତାକୁ କିପରି ସାହାଯ୍ୟ କରିବି ?'' ଈଶ୍ୱରଦୂତ ଉତ୍ତର ଦେଲେ—''ତାକୁ ଅନ୍ୟ ପ୍ରତି ଅତ୍ୟାଚାର କରିବାକୁ ନ ଦେବା । ଏହାହିଁ ତାକୁ ତୁମର ସାହାଯ୍ୟ ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୮୪)

## ୧୨୮. ଅନ୍ୟର ଧନ-ଜୀବନ ଓ ମାନ-ସମ୍ମାନ ପ୍ରତି ସମ୍ମାନ କର

''ତୁମେମାନେ ପରସ୍ପରର ଧନ-ଜୀବନ ଓ ମାନ-ସମ୍ମାନର ପବିତ୍ରତା ପ୍ରତି ସମ୍ମାନ ପ୍ରଦର୍ଶନ କରିବ ଯେପରି ଆଜିର ଏହି ଦିନ ଏବଂ ଏହି ସହର ପ୍ରତି ସମ୍ମାନ ପ୍ରଦର୍ଶନ କରୁଅଛ ।''

(ତିରମିଜୀ, ବାଣୀ-୨୧୫୯)

## ୧୨୯. ମୁସଲମାନ ବ୍ୟଭିଚାର କରିବା ସମୟରେ ମୁସଲମାନ ନଥାଏ

''ଜଣେ ବ୍ୟଭିଚାରୀ ଅବୈଧ ଯୌନ ସଙ୍ଗମ କରୁଥିବା ସମୟରେ ବିଶ୍ୱାସକାରୀ (ମୁସଲମାନ) ନଥାଏ ଏବଂ ଜଣେ ବ୍ୟକ୍ତି ଚୋରି କରୁଥିବା ସମୟରେ ମୁସଲମାନ ନଥାଏ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୮୮୩)

## ୧୩୦. ଶାସକମାନେ କ୍ଷମତାର ଦୂରୁପଯୋଗ କରନ୍ତୁ ନାହିଁ

''ଯଦି ଅଲ୍ଲାହ କୌଣସି ବ୍ୟକ୍ତିକୁ କିଛି ଲୋକଙ୍କୁ ଶାସନ କରିବାର କ୍ଷମତା ପ୍ରଦାନ କରନ୍ତି ଏବଂ ସେ ସେମାନଙ୍କର ଉଚିତ ଦେଖାଶୁଣା ନ କରେ (ଅର୍ଥାତ୍ ନ୍ୟାୟପୂର୍ଣ୍ଣ ଭାବେ ଶାସନ ନ କରେ) ତେବେ ସେ ସ୍ୱର୍ଗର ସୁଗନ୍ଧ ମଧ୍ୟ ପାଇବ ନାହିଁ ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୨୬୪)

## ୧୩୧. କେହି ନ୍ୟାୟ ନ କରୁ, ତୁମେ ନ୍ୟାୟ କର

''ପ୍ରତି କଥାରେ ହଁ ମାରିବା ଲୋକଙ୍କ ପରି ହୁଅନାହିଁ, ଯେଉଁମାନେ କୁହନ୍ତି—'ଯଦି ଲୋକେ ଭଲ ହେବେ ତେବେ ଆମେ ଭଲ ହେବା ଏବଂ ଯଦି ସେମାନେ ଅତ୍ୟାଚାର କରିବେ ତେବେ ଆମେ ମଧ୍ୟ କରିବା ।' ବରଂ ନିଜ ମନକୁ ସ୍ଥିର କର । ଯଦି ଲୋକେ ଭଲ

ହୁଅନ୍ତି ତୁମେ ଭଲ (ବ୍ୟବହାର) କର ଏବଂ ଯଦି ସେମାନେ ଖରାପ ହୁଅନ୍ତି, ତେବେ ତୁମେ ଅନ୍ୟାୟ କରନାହିଁ ।''

(ତିରମିଜୀ, ବାଣୀ-୨୦୦୭)

## ୧୩୨. ମୃତ୍ୟୁ ପୂର୍ବରୁ ଦୋଷ କ୍ଷମା କରାଇନିଅ

''ଅଲ୍ଲାହ ସେହି ଭକ୍ତ ପ୍ରତି ଦୟା କରନ୍ତୁ, ଯିଏ ତା' ଭାଇର ଧନ ବା ସମ୍ମାନ ନଷ୍ଟ କରିବାର ଦୋଷ କରେ, (କିନ୍ତୁ) ତା'ପରେ ସେ ତା' ନିକଟକୁ ଆସି (ନିଜ ଦୋଷ ପାଇଁ) କ୍ଷମାଭିକ୍ଷା କରିନିଏ (ଅନ୍ତିମ ବିଚାରଦିନ ଏହି ଅଧିକାର) ଛିନ୍ନ ହେବା ପୂର୍ବରୁ, ଯେତେବେଳେ ତା' ପାଖରେ ଟଙ୍କା ଥିବ ନା ପଇସା, ସେତେବେଳେ ଯଦି ତା'ର କିଛି ପୁଣ୍ୟ ଥିବ, ତାହା କାଢ଼ି ନିଆଯିବ ଏବଂ ଯଦି ତା'ର ପୁଣ୍ୟ ନଥିବ, ତେବେ ତା' ଭାଇର ପାପ ତା' ଉପରେ ଲଦି ଦିଆଯିବ ।''

(ତିରମିଜୀ, ବାଣୀ-୨୪୧୯)

## ୧୩୩. ମହାପ୍ରଳୟର ପୂର୍ବାଭାସ

''ମହାପ୍ରଳୟର ପୂର୍ବାଭାସ ମଧ୍ୟରେ ଏହା ମଧ୍ୟ ରହିଛି ଯେ, (୧) (ଶାସ୍ତ୍ରଜ୍ଞମାନଙ୍କ ମୃତ୍ୟୁ ଫଳରେ) ଧର୍ମଜ୍ଞାନ ଲୋପ ପାଇଯିବ, (୨) ଅଜ୍ଞତାର ରାଜୁତି ହେବ, (୩) ମଦ୍ୟପାନ ଏକ ସାଧାରଣ କଥା ହେବ ଏବଂ (୪) ପ୍ରକାଶ୍ୟ ଭାବରେ ଅବୈଧ ଯୌନ ସଙ୍ଗମ ହେବ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୮୦)

## ୧୩୪. କ୍ଷମତା ଅଯୋଗ୍ୟମାନଙ୍କ ହାତକୁ ଆସିବ

''ଯେତେବେଳେ କ୍ଷମତା ଅଯୋଗ୍ୟ ଲୋକମାନଙ୍କ ହାତକୁ ଆସେ, ପ୍ରଳୟର ପ୍ରତୀକ୍ଷା କର ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୫୬)

## ୧୩୫. ଅତ୍ୟଧିକ ରକ୍ତପାତ ହେବ

''ମହାପ୍ରଳୟ ପୂର୍ବରୁ ଏମିତି ସମୟ ଆସିବ, ଯେତେବେଳେ ସତ୍-ଜ୍ଞାନ ଲୋପ ପାଇଯିବ ଏବଂ ଅଜ୍ଞତା ତାର ସ୍ଥାନ ଗ୍ରହଣ କରିବ ଏବଂ ବହୁଳ ଭାବରେ ରକ୍ତପାତ ହେବ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୬୭୨)

## ୧୩୬. ହତ୍ୟାକାରୀ ହତ୍ୟାର କାରଣ ଜାଣି ନଥିବ

''ତାଙ୍କ ରାଣ ଯାହାଙ୍କ ହାତରେ ମୋ ଜୀବନ ରହିଛି, ଏମିତି ଏକ ସମୟ ନିଶ୍ଚୟ ଆସିବ ଯେତେବେଳେ ହତ୍ୟା କରିଥିବା ଲୋକ (ନିଜେ) ଜାଣିନଥିବ ଯେ ସେ କାହିଁକି ହତ୍ୟା କଲା ଏବଂ ହତ୍ୟା କରାଯାଇଥିବା ଲୋକଟି ମଧ୍ୟ ଜାଣିନଥିବ ଯେ ତାକୁ କାହିଁକି ହତ୍ୟା କରାଗଲା ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୯୦୮)

## ୧୩୭. ନରହତ୍ୟା ମହାପାପ

''ମହାପାପଗୁଡ଼ିକ ମଧ୍ୟରେ ସବୁଠାରୁ ବଡ଼ ପାପ ହେଉଛି ଅଲ୍ଲାହଙ୍କ ସହିତ ସହଭାଗିତା କରିବା, ନରହତ୍ୟା କରିବା, ପିତାମାତାଙ୍କୁ ଅବଜ୍ଞା କରିବା ଏବଂ ମିଥ୍ୟା ସାକ୍ଷ୍ୟ ପ୍ରଦାନ କରିବା ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୧୦)

## ୧୩୮. ଯୁଦ୍ଧରେ ଅଣସୈନିକଙ୍କୁ ହତ୍ୟା କରନାହିଁ

ଯୁଦ୍ଧ ସମୟରେ ଜଣେ ମହିଳା ନିହତ ହୋଇଯାଇଥିଲା ଏବଂ ଲୋକମାନେ (ତା' ଶବକୁ) ଘେରି ରହିଥିଲେ । ମହାମାନ୍ୟ ଈଶ୍ୱରଦୂତ ସେଠାରେ ଉପସ୍ଥିତ ହେବାମାତ୍ରେ ସେମାନେ ସେଠାରୁ ହଟିଗଲେ । ଈଶ୍ୱରଦୂତ (ମୃତ ମହିଳାର ଶବ ଦେଖି) କହିଲେ—''ଯେଉଁମାନେ ଆମ ସହିତ ଯୁଦ୍ଧ କଲେ, ଏହି ମହିଳାଟି ସେମାନଙ୍କ ମଧ୍ୟରେ ରହି ଯୁଦ୍ଧ କରି ନଥିଲା ।'' ତା'ପରେ ସେ ଜଣେ ଲୋକକୁ କହିଲେ— ''ଖାଲିଦ୍ ବିନ୍ ୱଲିଦ୍‌ଙ୍କ ପାଖକୁ ଯାଅ ଏବଂ ତାଙ୍କୁ କୁହ ଯେ ଅଲ୍ଲାହଙ୍କର ଧର୍ମଦୂତ ତୁମକୁ ଆଦେଶ ଦେଉଛନ୍ତି ଯେ ତୁମେ ଶିଶୁ, ମହିଳା ବା ପଶୁଜଗୁଆଳୀମାନଙ୍କୁ ହତ୍ୟା କରିବ ନାହିଁ ।''

(ଇବନେ ମାଜା, ବାଣୀ-୨୮୪୨)

## ୧୩୯. ଅକାରଣରେ ପିମ୍ପୁଡ଼ିକୁ ମାରିଦେବା ମଧ୍ୟ ଦୋଷାବହ

ଥରେ କୌଣସି ଜଣେ ଈଶ୍ୱରଦୂତ ଗୋଟିଏ ଗଛମୂଳେ ବିଶ୍ରାମ ନେଉଥାଆନ୍ତି । ପିମ୍ପୁଡ଼ିଟିଏ ତାଙ୍କୁ କାମୁଡ଼ିଦେଲା । ତେଣୁ ସେ (ଶିଷ୍ୟମାନଙ୍କୁ) ତାଙ୍କ ଜିନିଷପତ୍ର ସେଠାରୁ ଅନ୍ୟତ୍ର ଉଠାଇ ନେବାପାଇଁ ଏବଂ ପିମ୍ପୁଡ଼ିମାନଙ୍କ ବସାରେ ନିଆଁ ଲଗାଇ ଦେବାପାଇଁ ଆଦେଶ ଦେଲେ ।

(ତେଣୁ) ଅଲ୍ଲାହ ତାଙ୍କ ପ୍ରତି ଦୈବବାଣୀ କଲେ—''ଗୋଟିଏ ପିମ୍ପୁଡ଼ିକୁ (ଯିଏ କାମୁଡ଼ି ଥିଲା) ପୋଡ଼ିଦେବା ଯଥେଷ୍ଟ ନ ଥିଲା କି ?''

(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ବାଣୀ-୫୩୬)

**୧୪୦. ଉପାର୍ଜନରେ ସାଧୁ ପନ୍ଥା ଅବଲମ୍ବନ କର**

''ସଂସାର ଅର୍ଜନ କରିବାରେ ସାଧୁ ପନ୍ଥା ଅବଲମ୍ବନ କର, କାରଣ ପ୍ରତ୍ୟେକ ବ୍ୟକ୍ତିକୁ ତାହା ଅବଶ୍ୟ ପ୍ରାପ୍ତ ହେବ, ଯାହା ପାଇଁ ତାକୁ ସୃଷ୍ଟି କରାଯାଇଛି ।''

(ଇବନେ ମାଜା, ବାଣୀ-୨୧୪୨)

**୧୪୧. ସାଧୁ ବ୍ୟବସାୟୀ ସଫଳ ହେବେ**

''ପୁନର୍ଜୀବିତ ହେବା ଦିନ କେବଳ ଅଲ୍ଲାହଙ୍କ ପ୍ରତି ଭୟ ରଖୁଥିବା, ଧର୍ମନିଷ୍ଠ ଭାବରେ ବ୍ୟବସାୟ କରୁଥିବା ଏବଂ ସତ କହୁଥିବା ବ୍ୟବସାୟୀମାନଙ୍କ ବ୍ୟତୀତ ଅନ୍ୟ (ବ୍ୟବସାୟୀ)ମାନେ ଭ୍ରଷ୍ଟାଚାରୀ ରୂପେ ଉଠିବେ ।''

(ଇବନେ ମାଜା, ବାଣୀ-୨୧୪୬)

**୧୪୨. ସଚ୍ଚୋଟ ବ୍ୟବସାୟୀ ଶହୀଦର ପୁଣ୍ୟ ଅର୍ଜନ କରିବ**

''ଜଣେ ସାଧୁ ଓ ସଚ୍ଚୋଟ ମୁସଲମାନ ବ୍ୟବସାୟୀ ପୁନରୁତ୍ଥାନ ଦିନ ଶହୀଦମାନଙ୍କ ଗହଣରେ ଉଠିବ ।''

(ଇବନେ ମାଜା, ବାଣୀ-୨୧୩୯)

**୧୪୩. କଳାବଜାର ପାଇଁ ଦ୍ରବ୍ୟ ଗଚ୍ଛିତ ରଖ ନାହିଁ**

''କେବଳ ଜଣେ ପାପୀ ହିଁ (ଅତ୍ୟାବଶ୍ୟକୀୟ ଦ୍ରବ୍ୟଗୁଡ଼ିକୁ) ଲୁଚାଇ ଗଚ୍ଛିତ ରଖେ ।''

(ଇବନେ ମାଜା, ବାଣୀ-୨୧୫୪)

**୧୪୪. ବିକା-କିଣା ବେଳେ ଉଦାର ହୁଅ**

''ଅଲ୍ଲାହ ସେହି ଦାସ ପ୍ରତି ଦୟା କରନ୍ତୁ, ଯିଏ ବିକିବା ସମୟରେ ଉଦାର ହୁଏ, କିଣିବା ସମୟରେ ମଧ୍ୟ ଉଦାର ହୁଏ ଏବଂ ନିଜର

ପ୍ରାପ୍ୟ ଆଦାୟ କରିବା ସମୟରେ କୋହଳ ମନୋଭାବ ପ୍ରଦର୍ଶନ କରେ ।''

(ଇବନେ ମାଜା, ବାଣୀ-୨୨୦୩)

## ୧୪୫. ଓଜନରେ ଟିକିଏ ଅଧିକା ଦିଅ

''ଯେତେବେଳେ ତୁମେ ଜିନିଷ ଓଜନ କର, (ଗ୍ରାହକକୁ ଓଜନରେ କିଛି) ଅଧିକ ଦିଅ ।''

(ଇବନେ ମାଜା, ବାଣୀ-୨୨୨୨)

## ୧୪୬. ଉତ୍କୋଚ ଦିଅ ନାହିଁ ବା ନିଅ ନାହିଁ

''ସେହି ବ୍ୟକ୍ତି ଅଲ୍ଲାହଙ୍କ ଦ୍ୱାରା ଅଭିଶପ୍ତ ହେଉ ଯିଏ ଉତ୍କୋଚ ଦିଏ ଏବଂ ଯିଏ ଏହାକୁ ଗ୍ରହଣ କରେ ।''

(ଇବନେ ମାଜା, ବାଣୀ-୨୩୧୩)

## ୧୪୭. ଅନ୍ୟକୁ ଠକ ନାହିଁ

''କାରବାରରେ ଠକୁଥିବା ଲୋକ ଆମ ମଧ୍ୟରୁ ନୁହେଁ ।''

(ଇବନେ ମାଜା, ବାଣୀ-୨୨୨୪)

## ୧୪୮. କ୍ଷମତା ମାଗ ନାହିଁ

''ଶାସକ ହେବାର ଇଚ୍ଛା କରନାହିଁ । ଯଦି (ତୁମେ ଏଥିପାଇଁ ଆଗ୍ରହୀ ଥାଅ ଏବଂ) ତୁମକୁ ଶାସନ କ୍ଷମତା ମିଳେ, ତେବେ ତୁମେ ଏଥିପାଇଁ (ସମ୍ପୂର୍ଣ୍ଣ) ଦାୟୀ ରହିବ । କିନ୍ତୁ ଯଦି ତୁମେ କ୍ଷମତା ନେବାକୁ ଚାହଁନାହିଁ, ଅଥଚ ତୁମକୁ କ୍ଷମତା ଦିଆଯାଏ, ତେବେ (ଈଶ୍ୱରଙ୍କ ଦ୍ୱାରା) ତୁମର ସହାୟତା କରାଯିବ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୬୧୯)

## ୧୪୯. ନ୍ୟାୟବନ୍ତ ବିଚାରପତିଙ୍କ ପାଇଁ ଦୁଇଟି ପୁଣ୍ୟ

''ଯେତେବେଳେ ଜଣେ ବିଚାରପତି କୌଣସି (ବିଷୟରେ) ରାୟ ଦିଅନ୍ତି ଏବଂ ସେ ଉଚିତ ନ୍ୟାୟ ଦେବାପାଇଁ ଯଥାସାଧ୍ୟ ଚେଷ୍ଟା କରନ୍ତି ଏବଂ ତାଙ୍କର ବିଚାର ଠିକ୍ ହୁଏ, ତେବେ ତାଙ୍କ ପାଇଁ ଦୁଇଗୋଟି ପୁଣ୍ୟ ମିଳିବ

ଏବଂ ଯଦି ସେ ଉଚିତ ନ୍ୟାୟ ଦେବାପାଇଁ ସାଧ୍ୟମତେ ଚେଷ୍ଟା କରନ୍ତି, କିନ୍ତୁ ଭୁଲ କରିଦିଅନ୍ତି ତେବେ ତାଙ୍କୁ ଗୋଟିଏ ପୁଣ୍ୟ ମିଳିବ ।''

(ଇବନେ ମାଜା, ବାଣୀ-୨୩୧୪)

## ୧୫୦. ବିଚାରପତି କ୍ରୋଧ ସମୟରେ ରାୟ ନ ଦିଅନ୍ତୁ

''କୌଣସି ବିଚାରପତି କ୍ରୋଧ ଅବସ୍ଥାରେ ଥିବା ସମୟରେ ରାୟ ନଦିଅନ୍ତୁ ।''

(ଇବନେ ମାଜା, ବାଣୀ-୨୩୧୬)

## ୧୫୧. ଅନ୍ୟାୟର ପକ୍ଷ ସମର୍ଥନ କରନାହିଁ

''ଯିଏ କୌଣସି ବିବାଦରେ ଅନ୍ୟାୟର ପକ୍ଷ ସମର୍ଥନ କରେ, ତାହା ପ୍ରତ୍ୟାହାର ନ କରିବା ପର୍ଯ୍ୟନ୍ତ ସେ ଅଲ୍ଲାହଙ୍କର କୋପଦୃଷ୍ଟି ମଧ୍ୟରେ ଥାଏ ।''

(ଇବନେ ମାଜା, ବାଣୀ-୨୩୨୦)

## ୧୫୨. ମିଥ୍ୟା ସାକ୍ଷୀ ନର୍କ ଭୋଗ କରିବ

''ମିଛ କହିଥିବା ସାକ୍ଷୀର ପାଦ ବିଚାରଦିନ (ନିଜ ସ୍ଥାନରୁ) ସେପର୍ଯ୍ୟନ୍ତ ଘୁଞ୍ଚିବ ନାହିଁ, ଯେପର୍ଯ୍ୟନ୍ତ ଅଲ୍ଲାହ ତା' ପାଇଁ ନର୍କ ବାଧ୍ୟତାମୂଳକ ବୋଲି ଘୋଷଣା ନ କରିଛନ୍ତି ।''

(ଇବନେ ମାଜା, ବାଣୀ-୨୩୭୩)

## ୧୫୩. ଗରିବ ଋଣୀକୁ ମହଲତ ଦିଅ

''ଯଦି କେହି ଚାହୁଁଥାଏ ଯେ, ଅଲ୍ଲାହ ତାକୁ ନିଜ କୃପାର ଛାୟା ତଳେ ସ୍ଥାନ ଦିଅନ୍ତୁ, ତେବେ ସେ ନିଃସ୍ୱ ବ୍ୟକ୍ତିକୁ (ଋଣ ଶୁଝିବାପାଇଁ) ମହଲତ ଦେଉ କିମ୍ବା ତା' ଋଣ କ୍ଷମା କରିଦେଉ ।''

(ଇବନେ ମାଜା, ବାଣୀ-୨୪୧୯)

## ୧୫୪. ଋଣ ପରିଶୋଧ କର

''ଜମାନତ ନେଇଥିବା ଜମାନତକାରୀ ଋଣ ପାଇଁ ଦାୟୀ ରହିବ ଏବଂ ଋଣ ଅବଶ୍ୟ ପରିଶୋଧ କରାଯିବ ।''

(ଇବନେ ମାଜା, ବାଣୀ-୨୪୦୫)

**୧୫୫. ଋଣ ନ ଶୁଝିବାର ଉଦ୍ଦେଶ୍ୟ ରଖିଥିବା ଲୋକ ଚୋର**

''ଯଦି କୌଣସି ବ୍ୟକ୍ତି ଋଣ ନେବାବେଳେ ତାକୁ ପରିଶୋଧ ନ କରିବାର ଉଦ୍ଦେଶ୍ୟ ରଖିଥାଏ, ସେ (ବିଚାର ଦିନ) ଅଲ୍ଲାହଙ୍କ ସହିତ ଜଣେ ଚୋର ରୂପେ ସାକ୍ଷାତ କରିବ ।''

(ଇବନେ ମାଜା, ବାଣୀ-୨୪୧୦)

**୧୫୬. ଋଣ ମଣିଷକୁ ମିଛୁଆ କରିଦିଏ**

''ହେ ଅଲ୍ଲାହ ! ପାପ ଏବଂ ଋଣରୁ ମୁଁ ଆପଣଙ୍କର ଶରଣ ମାଗୁଛି ।'' କେହି ଜଣେ ତାଙ୍କୁ ପଚାରିଲେ—''ଆପଣ ଋଣରୁ ଅଲ୍ଲାହଙ୍କର ଶରଣ (କାହିଁକି) ମାଗନ୍ତି ?'' ସେ ଉତ୍ତର ଦେଲେ—''ଯଦି ଜଣେ ବ୍ୟକ୍ତି ଋଣୀ ହୋଇଯାଏ, ସେ ମିଛକଥା କହେ, ରାଣ ନିୟମ କରେ ଆଉ ସେଗୁଡ଼ିକୁ ଭାଙ୍ଗିଦିଏ ।''

(ଅବୁ ଦାଉଦ, ବାଣୀ-୮୭୯)

**୧୫୭. ମଦ୍ୟପାନ ସବୁ କୁକର୍ମର ମୂଳ**

''ମଦ୍ୟପାନ କରନାହିଁ । ଏହା ସବୁ କୁକର୍ମର ମୂଳ ।''

(ଇବନେ ମାଜା, ବାଣୀ-୩୩୭୧)

**୧୫୮. କୌଣସି ନିଶାଦ୍ରବ୍ୟ ସେବନ କରନାହିଁ**

''ସବୁ ପ୍ରକାର ନିଶାଦ୍ରବ୍ୟ ନିଷିଦ୍ଧ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୧୪୫)

**୧୫୯. ମଦ୍ୟପ ସ୍ୱର୍ଗରେ ପ୍ରବେଶ କରିବ ନାହିଁ**

''ମଦ୍ୟପ ସ୍ୱର୍ଗରେ ପ୍ରବେଶ କରିବ ନାହିଁ ।''

(ଇବନେ ମାଜା, ବାଣୀ-୩୩୭୬)

**୧୬୦. ନିଶାଦ୍ରବ୍ୟ ଅଳ୍ପ ହେଲେ ବି ନିଷିଦ୍ଧ**

''ଯାହାର ଅଧିକ ମାତ୍ରା ସେବନ କଲେ ନିଶା ଧରେ, ତା'ର କମ୍ ପରିମାଣ ମଧ୍ୟ ନିଷିଦ୍ଧ ।''

(ଅବୁ ଦାଉଦ, ବାଣୀ-୩୬୭୯)

## ୧୬୧. ସୁଧ ନେବା ଓ ଦେବା ଉଭୟ ଅବୈଧ

''ମହାମାନ୍ୟ ଈଶ୍ୱରଦୂତ ସୁଧ ନେଉଥିବା ବ୍ୟକ୍ତି, ଦେଉଥିବା ବ୍ୟକ୍ତି, ଏହାର ସାକ୍ଷୀ ଏବଂ ଏହାର ଚୁକ୍ତିନାମା ଲେଖୁଥିବା ବ୍ୟକ୍ତିକୁ ଅଭିଶାପ ଦେଇଛନ୍ତି ।''

(ଅବୁ ଦାଉଦ, ବାଣୀ-୩୩୨୭)

## ୧୬୨. କନ୍ୟା ସନ୍ତାନଙ୍କୁ ହତ୍ୟା କରନାହିଁ

''ମହାମହିମ ଅଲ୍ଲାହ ମାତାଙ୍କର ଅବଜ୍ଞା କରିବା, କନ୍ୟାସନ୍ତାନକୁ ଜୀବନ୍ତ ପୋତିଦେବା ଏବଂ ସାମର୍ଥ୍ୟ ଥିବା ସତ୍ତ୍ୱେ ଅନ୍ୟମାନଙ୍କର (ଅଧିକାର ଥିବା), ବସ୍ତୁ ସେମାନଙ୍କୁ ଫେରସ୍ତ ନ କରିବା ଏବଂ (ଅନ୍ୟର ଅଧିକାରକୁ) ନିଜର ବୋଲି ଦାବୀ କରିବା ନିଷିଦ୍ଧ କରିଛନ୍ତି । ସେ ତିନୋଟି କଥା ନାପସନ୍ଦ କରିଛନ୍ତି—ଅଦରକାରୀ କଥା କହିବା, ଅତ୍ୟଧିକ ପ୍ରଶ୍ନ ପଚାରିବା ଏବଂ ବଦ୍‌ଖର୍ଚ୍ଚ କାରିବା ।''

(ସହୀ ମୁସଲିମ, ୩ୟ ଖଣ୍ଡ, ବାଣୀ-୧୭୧୫)

## ୧୬୩. ସବୁ ମଣିଷ ସମାନ

''ଯଦି ଜଣେ ଭୃତ୍ୟ ତୁମମାନଙ୍କର ଶାସକ ରୂପେ ନିଯୁକ୍ତ ହୁଏ ଏବଂ ସେ ଅଲ୍ଲାହଙ୍କ ଗ୍ରନ୍ଥ ଅନୁଯାୟୀ ତୁମମାନଙ୍କର ବ୍ୟାପାର ପରିଚାଳନା କରେ, ତେବେ ତୁମେମାନେ ତା' କଥା ଶୁଣିବା ଉଚିତ ଏବଂ ତା' ଆଦେଶ ମାନିବା ଉଚିତ ।''

(ସହୀ ମୁସଲିମ, ୩ୟ ଖଣ୍ଡ, ବାଣୀ-୧୮୩୮)

## ୧୬୪. ରୋଗର ଚିକିତ୍ସା କର

କେତେକ ବେଦୁଇନ୍ ବ୍ୟକ୍ତି ପଚାରିଲେ—''ହେ ଈଶ୍ୱରଦୂତ ! କ'ଣ ଆମେ (ରୋଗର) ଚିକିତ୍ସା କରାଇବା ? ସେ କହିଲେ—''ହଁ, ହେ ଅଲ୍ଲାହଙ୍କର ଭକ୍ତଗଣ ! ପ୍ରତିକାର କର, କାରଣ ଅଲ୍ଲାହ ଏପରି କୌଣସି ରୋଗ ସୃଷ୍ଟି କରିନାହାନ୍ତି ଯାହାର ପ୍ରତିକାର ସୃଷ୍ଟି କରିନାହାନ୍ତି (ଅବଶ୍ୟ) ଗୋଟିଏ ରୋଗ ବ୍ୟତୀତ ।''

ସେମାନେ ପଚାରିଲେ—''ହେ ଅଲ୍ଲାହଙ୍କର ବାର୍ତ୍ତାବହ ! ସେଇଟି କ'ଣ ?'' ସେ ଉତ୍ତର ଦେଲେ—''ବୃଦ୍ଧାବସ୍ଥା ।''

(ତିରମିଜୀ, ବାଣୀ-୨୦୩୮)

## ୧୬୫. ଚିକିତ୍ସାରେ ଅବୈଧ ଉପାୟ ଅବଲମ୍ବନ କରନାହିଁ

''ଅଲ୍ଲାହ ରୋଗ ଏବଂ ରୋଗର ପ୍ରତିକାର ଉଭୟ ସୃଷ୍ଟି କରିଛନ୍ତି ଏବଂ ପ୍ରତ୍ୟେକ ରୋଗର ସେ ପ୍ରତିକାର ଦେଇଛନ୍ତି । ତେଣୁ ଚିକିତ୍ସା କର; କିନ୍ତୁ ଏଥିପାଇଁ ଅବୈଧ ଉପାୟ ଅବଲମ୍ବନ କରନାହିଁ ।''

(ଅବୁ ଦାଉଦ, ବାଣୀ-୩୮୬୫)

## ୧୬୬.ଧନ-ଜନ ଦ୍ୱାରା ମଣିଷର ପରୀକ୍ଷା ହୁଏ

''ପରିବାର, ଧନସମ୍ପତ୍ତି, ସନ୍ତାନ ଏବଂ ପ୍ରତିବେଶୀ (ଆଦି) ଦ୍ୱାରା ମଣିଷକୁ ପରୀକ୍ଷା କରାଯାଏ ।''

(ତିରମିଜୀ, ବାଣୀ-୨୨୫୮)

## ୧୬୭. ଭାଗ୍ୟ ପୂର୍ବନିର୍ଦ୍ଧାରିତ

''ଜଣେ ଭକ୍ତ ବିଶ୍ୱାସକାରୀ ହୁଏନାହିଁ ଯେପର୍ଯ୍ୟନ୍ତ ସେ ଭାଗ୍ୟ ପ୍ରତି ବିଶ୍ୱାସ ନ କରେ, ଭାଗ୍ୟରେ ଥିବା ଭଲ ବା ମନ୍ଦ ପ୍ରତି ଯେମିତିକି ସେ ଜାଣେ ଯେ ଯାହା ତା' ପ୍ରତି ଘଟିସାରିଛି, ତାହା ଅବଶ୍ୟ ଘଟିବାର ଥିଲା ଏବଂ ଯାହା ଘଟିନାହିଁ, ତାହା କେବେ ମଧ୍ୟ ଘଟିବାର ନଥିଲା ।''

(ତିରମିଜୀ, ବାଣୀ-୨୧୪୪)

## ୧୬୮. ଶେଷ ଯୁଗରେ ଅଳ୍ପ ପୁଣ୍ୟର ବେଶୀ ମହତ୍ତ୍ୱ

''ତୁମେମାନେ ଏଭଳି ଏକ ସମୟରେ ଆସିଛ ଯେତେବେଳେ କି ତୁମମାନଙ୍କୁ ଆଜ୍ଞା ଦିଆଯାଉଥିବ କର୍ମର ଦଶମାଂଶ ତ୍ୟାଗ କରିଦେଲେ ଜଣେ ବ୍ୟକ୍ତି ବିନଷ୍ଟ ହୋଇଯିବ । କିନ୍ତୁ ଏହାପରେ ଏମିତି ସମୟ ଆସୁଛି ଯେତେବେଳେ ଜଣେ ବ୍ୟକ୍ତି ଏହାର (କେବଳ) ଦଶମାଂଶ ପାଳନ କରିଦେଲେ ମଧ୍ୟ ମୁକ୍ତି ପାଇଯିବ ।''

(ତିରମିଜୀ, ବାଣୀ-୨୨୬୭)

### ୧୬୯. ସଦୁପଦେଶ ଦେଉଥାଅ

''ଯାହାଙ୍କ ହାତରେ ମୋର ଜୀବନ ଅଛି, ତାଙ୍କରି ଶପଥ ନେଇ କହୁଛି ତୁମେମାନେ (ଲୋକମାନଙ୍କୁ) ସତ୍‌କର୍ମ କରିବାକୁ କୁହ ଏବଂ କୁକର୍ମରୁ ସେମାନଙ୍କୁ ନିବୃତ୍ତ ରଖ, ନହେଲେ ତୁମମାନଙ୍କ ଉପରେ ଅଲ୍ଲାହଙ୍କ ଠାରୁ ବିପତ୍ତି ଆସିବ ଏବଂ ତା'ପରେ ତୁମେମାନେ ତାଙ୍କୁ ପ୍ରାର୍ଥନା କରିବ; କିନ୍ତୁ ସେ ତୁମ ପ୍ରାର୍ଥନା ଶୁଣିବେ ନାହିଁ ।

(ତିରମିଜୀ, ବାଣୀ–୨୧୬୯)

### ୧୭୦. ସଦୁପଦେଶର ପୁଣ୍ୟ

''ଅନ୍ୟକୁ କୌଣସି ସତ୍‌କର୍ମର ମାର୍ଗଦର୍ଶନ କରୁଥିବା ବ୍ୟକ୍ତି (ସେହି) ସତ୍‌କର୍ମ କରୁଥିବା ବ୍ୟକ୍ତି ଭଳି ପୁଣ୍ୟ ଅର୍ଜନ କରେ ।''

(ଅବୁ ଦାଉଦ, ବାଣୀ–୫୧୧୦)

### ୧୭୧. ସତ୍‌ଜ୍ଞାନର ମହତ୍ତ୍ୱ

''ଜ୍ଞାନୀ ଓ ଜ୍ଞାନପିପାସୁ, ଉଭୟଙ୍କର ପୁଣ୍ୟରେ ଭାଗ ରହିଛି । ଅବଶିଷ୍ଟ ମାନବଜଗତ ନିକଟରେ ଭଲ ବୋଲି କିଛି ନାହିଁ ।''

(ଇବନେ ମାଜା, ବାଣୀ–୨୨୮)

### ୧୭୨. ଆତ୍ମବଡ଼ିମା ପାଇଁ ଜ୍ଞାନ ଅର୍ଜନ କରନାହିଁ

''ଯିଏ ମୂର୍ଖମାନଙ୍କ ସହିତ ଯୁକ୍ତି କରିବାପାଇଁ ବା ବିଦ୍ୱାନମାନଙ୍କ ନିକଟରେ ନିଜର ଆତ୍ମବଡ଼ିମା କରିବାପାଇଁ କିମ୍ବା ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିବାପାଇଁ ଜ୍ଞାନ ଅର୍ଜନ କରେ, ସେ ନର୍କରେ ପ୍ରବେଶ କରିବ ।

(ଇବନେ ମାଜା, ବାଣୀ–୨୫୩)

### ୧୭୩. ଈଶ୍ୱର ତୁମ ନିକଟରେ ଅଛନ୍ତି

''ଅଲ୍ଲାହଙ୍କୁ ମନେ ରଖ, ସେ ତୁମକୁ ରକ୍ଷା କରିବେ, ଅଲ୍ଲାହଙ୍କୁ ସ୍ମରଣ କର, ତୁମେ ତାଙ୍କୁ ନିଜ ପାଖରେ ପାଇବ । ଯେତେବେଳେ କିଛି ମାଗ, ଅଲ୍ଲାହଙ୍କୁ ମାଗ ଏବଂ ଯେତେବେଳେ ତୁମର କୌଣସି

ସାହାଯ୍ୟ ଦରକାର, ଅଲ୍ଲାହଙ୍କୁ ସହାୟତା ମାଗ । ଜାଣିରଖ, ଯଦି ସୃଷ୍ଟିର ସମସ୍ତେ (ମିଶି) ତୁମର କିଛି ଲାଭ କରିବା ପାଇଁ ଏକତ୍ରିତ ହୁଅନ୍ତି, ତଥାପି ଅଲ୍ଲାହ ଯାହା ତୁମ ଭାଗ୍ୟରେ ଲେଖିଦେଇଛନ୍ତି, ତା'ଠାରୁ ଅଧିକ ଲାଭ କରିପାରିବେ ନାହିଁ ଏବଂ ଯଦି ସେମାନେ ତୁମର କୌଣସି କ୍ଷତି କରିବାକୁ ଏକଜୁଟ ହୁଅନ୍ତି, ତେବେ ଅଲ୍ଲାହ ଯାହା ଭାଗ୍ୟରେ ଲେଖିଦେଇଛନ୍ତି, ତା'ଠାରୁ ଅଧିକ କ୍ଷତି କରିପାରିବେ ନାହିଁ । କଲମ ଉଠାଇ ନିଆଯାଇଛି ଏବଂ ପୃଷ୍ଠାଗୁଡ଼ିକ ଶୁଖିଯାଇଛି ।''

(ତିରମିଜୀ, ବାଣୀ-୨୫୧୬)

## ୧୭୪. ଈଶ୍ୱରଙ୍କ ପ୍ରତି ନିଷ୍ଠାବାନ ହୁଅ

''ଯିଏ ଅଲ୍ଲାହଙ୍କ ସକାଶେ ଦିଏ, ଅଲ୍ଲାହଙ୍କ ସକାଶେ ନିବୃତ୍ତ ରହେ, ଅଲ୍ଲାହଙ୍କ ସକାଶେ ପ୍ରେମକରେ, ଅଲ୍ଲାହଙ୍କ ସକାଶେ ଘୃଣା କରେ ଏବଂ ଅଲ୍ଲାହଙ୍କ ସକାଶେ ବିବାହ କରେ, ସେ ପ୍ରକୃତରେ ନିଜର ବିଶ୍ୱାସକୁ ପୂର୍ଣ୍ଣାଙ୍ଗ କଲା ।''

(ତିରମିଜୀ, ବାଣୀ-୨୫୨୧)

## ୧୭୫.ଲୋକଙ୍କୁ ଦେଖାଇବା ପାଇଁ ପୁଣ୍ୟ କରନାହିଁ

''ଯିଏ ଉଦ୍ଦେଶ୍ୟମୂଳକ ଭାବରେ ଲୋକମାନଙ୍କର ପ୍ରଶଂସାଭାଜନ ହେବା ପାଇଁ ସତ୍‌କର୍ମ କରେ, ଅଲ୍ଲାହ ଲୋକମାନଙ୍କ ସମ୍ମୁଖରେ ତା'ର ପ୍ରକୃତ ଉଦ୍ଦେଶ୍ୟ ପ୍ରକାଶ କରିଦେବେ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୫୦୬)

## ୧୭୬.ଦିବ୍ୟଜ୍ଞାନର ଦୁରୂପଯୋଗ କରନାହିଁ

''ଯଦି କୌଣସି ବ୍ୟକ୍ତି ଅଲ୍ଲାହଙ୍କ ପ୍ରସନ୍ନତା ଲାଭ କରିବାପାଇଁ ଆବଶ୍ୟକ ହେଉଥିବା ଜ୍ଞାନ ଅର୍ଜନ କରେ; କିନ୍ତୁ ତାହା ସେ ସାଂସାରିକ ଫାଇଦା ହାସଲ କରିବା ପାଇଁ କରେ, ତେବେ ସେ ସ୍ୱର୍ଗର ସୁଗନ୍ଧ ମଧ୍ୟ ପାଇବ ନାହିଁ ।''

(ଅବୁ ଦାଉଦ, ବାଣୀ-୩୬୫୬)

## ୧୭୭. ଭକ୍ତ ଅନୁତାପ କଲେ ଈଶ୍ୱର ପ୍ରସନ୍ନ ହୁଅନ୍ତି

''ତୁମେ ନିଜର ହଜିଯାଇଥିବା ଓଟଟିକୁ ପାଇଗଲେ ଯେତେ ଆନନ୍ଦିତ ହୁଅ, ତା'ଠାରୁ ଅଧିକ ଆନନ୍ଦିତ ଅଲ୍ଲାହ ହୁଅନ୍ତି ଯେତେବେଳେ ତାଙ୍କର ଭକ୍ତ ଅନୁତପ୍ତ ହୋଇ ତାଙ୍କ ଆଡ଼କୁ ଫେରିଆସେ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୬୭୫)

## ୧୭୮.ଈଶ୍ୱର କରୁଣାମୟ

କେତେକ ଯୁଦ୍ଧବନ୍ଦୀଙ୍କୁ ଈଶ୍ୱରଦୂତଙ୍କ ସମ୍ମୁଖରେ ଉପସ୍ଥିତ କରାଗଲା । ସେମାନଙ୍କ ମଧ୍ୟରେ ଜଣେ ମହିଳା ନିଜର (ହଜିଯାଇଥିବା) ପିଲାକୁ (ବିକଳ ହୋଇ) ଖୋଜୁଥିଲା । ପିଲାକୁ ପାଇବାମାତ୍ରେ ସେ ତାକୁ ନିଜ ଛାତିରେ ଆଉଜାଇ ନେଇ ସ୍ତନ୍ୟପାନ କରାଇଲା । ଈଶ୍ୱରଦୂତ କହିଲେ— ''କ'ଣ ତୁମେମାନେ ଭାବୁଛ ଯେ, ଏହି ସ୍ତ୍ରୀଲୋକଟି ତା' ପୁଅକୁ ନିଆଁ ମଧ୍ୟକୁ ଫିଙ୍ଗି ଦେଇପାରିବ ? ଆମେ ଉତ୍ତର ଦେଲୁ—''ନା, ଯଦିଓ ତାର ଏପରି କରିବାର ସାମର୍ଥ୍ୟ ଅଛି ।'' ତା'ପରେ ଈଶ୍ୱରଦୂତ କହିଲେ— ''ଏହି ସ୍ତ୍ରୀଲୋକଟିର ନିଜ ପୁଅ ପ୍ରତି ଦୟା ତୁଳନାରେ ଅଲ୍ଲାହଙ୍କର ତାଙ୍କ ଦାସମାନଙ୍କ ପାଇଁ ଦୟା ଢେର୍ ବେଶୀ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୨୮)

## ୧୭୯. ପଶ୍ଚାତ୍ତାପ ଦ୍ୱାରା ଈଶ୍ୱର କିଭଳି ପ୍ରସନ୍ନ ହୁଅନ୍ତି

ଭକ୍ତ ଅନୁତପ୍ତ ହୋଇ ଅଲ୍ଲାହଙ୍କ ପ୍ରତି ପ୍ରତ୍ୟାବର୍ତ୍ତନ କଲେ ଅଲ୍ଲାହ ତା' ପଶ୍ଚାତାପ ଦ୍ୱାରା ଏଭଳି ବ୍ୟକ୍ତି ଅପେକ୍ଷା ଅଧିକ ଆନନ୍ଦିତ ହୁଅନ୍ତି ଯାହାର ଖାଦ୍ୟ ପାଣି ନେଇଯାଉଥିବା ଓଟଟି ନିର୍ଜଳ ମରୁଭୂମିରେ ହଜିଯାଇଥାଏ ଏବଂ ତାକୁ ଫେରି ପାଇବାର ସବୁ ଆଶା ସେ ଛାଡ଼ି ଦେଇଥାଏ । ସମ୍ପୂର୍ଣ୍ଣ ନିରାଶ ହୋଇ ଗୋଟିଏ ଛାଇରେ ମୃତ୍ୟୁକୁ ଅପେକ୍ଷା କରି ସେ ଶୋଇପଡ଼େ । ଆଖି ଖୋଲିବା ପରେ ସେ ଦେଖେ ଯେ, ତା' ଓଟଟି ତା' ପାଖରେ ଠିଆ ହୋଇଛି । ଆନନ୍ଦରେ ବିହ୍ୱଳ ହୋଇ ସେ କହିପକାଏ—''ହେ ପ୍ରଭୁ ! ତୁମେ ମୋ ଭକ୍ତ ଏବଂ ମୁଁ ତୁମ ପ୍ରଭୁ ।'' ଅତିଶୟ ଆନନ୍ଦ ଯୋଗୁଁ ସେ ଏହି ଭୁଲ କରିପକାଏ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୭୪୭)

## ୧୮୦. ସବୁ ଈଶ୍ୱରଦୂତମାନଙ୍କର ଧର୍ମ ଗୋଟିଏ

''ବାର୍ତ୍ତାବହମାନଙ୍କର ମାତା ଭିନ୍ନ ଭିନ୍ନ, କିନ୍ତୁ ସେମାନଙ୍କର ଧର୍ମ ଗୋଟିଏ ।''

(ସହୀ ବୁଖାରୀ, ୪ର୍ଥ ଖଣ୍ଡ, ବାଣୀ-୬୫୨)

## ୧୮୧. ସବୁ ଈଶ୍ୱରଦୂତଙ୍କୁ ସମାନ ଦୃଷ୍ଟିରେ ଦେଖ

''ଈଶ୍ୱରଦୂତମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ ପସନ୍ଦ କର ନାହିଁ ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୫୧)

## ୧୮୨.ଈଶ୍ୱରଦୂତମାନଙ୍କ ମଧ୍ୟରେ ପ୍ରଭେଦ କରନାହିଁ

''ଈଶ୍ୱରଦୂତମାନଙ୍କ ମଧ୍ୟରେ ପ୍ରଭେଦ କରନାହିଁ ।''

(ଅବୁ ଦାଉଦ, ବାଣୀ-୪୬୫୧)

## ୧୮୩.ମୁଁ ତୁମର ହିତାକାଂକ୍ଷୀ

ମୋର ଏବଂ ମୁଁ ଆଣିଥିବା ବାର୍ତ୍ତାର ଦୃଷ୍ଟାନ୍ତ ଏମିତି ଯେମିତି ଜଣେ ବ୍ୟକ୍ତି ଲୋକମାନଙ୍କ ନିକଟକୁ ଆସି କହେ—''ମୁଁ ନିଜ ଆଖିରେ ତୁମମାନଙ୍କର ଶତ୍ରୁ ସୈନ୍ୟଙ୍କୁ ଦେଖିଆସିଛି ଏବଂ ତୁମମାନଙ୍କୁ ସାବଧାନ କରୁଛି ନିଜକୁ ରକ୍ଷା କର, ବଞ୍ଚାଅ ।'' କିଛି ଲୋକ ତା' କଥା ମାନିଲେ ଏବଂ ଲୁଚିଛପି ରାତାରାତି ବାହାରିଗଲେ ଏବଂ ସେମାନେ ରକ୍ଷା ପାଇଗଲେ । କିନ୍ତୁ ଆଉ କିଛି ଲୋକ ତାକୁ ବିଶ୍ୱାସ କଲେନାହିଁ । ସୁତରାଂ ସକାଳୁ ଶତ୍ରୁ ସୈନ୍ୟମାନେ ସେମାନଙ୍କୁ ଧ୍ୱଂସ କରିଦେଲେ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ-୪୮୯)

## ୧୮୪.ତିନିଜଣଙ୍କୁ ଦ୍ୱିଗୁଣ ପ୍ରତିଦାନ ମିଳିବ

''ତିନିଜଣ ବ୍ୟକ୍ତି ଦ୍ୱିଗୁଣ ପ୍ରତିଦାନ ପାଇବେ, (୧) ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତି ଯିଏ ନିଜ ଈଶ୍ୱରଦୂତଙ୍କ ପ୍ରତି ବିଶ୍ୱାସ ରଖେ ଏବଂ ତା' ସହିତ ଈଶ୍ୱରଦୂତ ମୁହମ୍ମଦଙ୍କ ପ୍ରତି ମଧ୍ୟ ବିଶ୍ୱାସ ରଖେ, (୨) ଜଣେ ଭୃତ୍ୟ ଯିଏ ନିଜ ମାଲିକ ଏବଂ ଅଲ୍ଲାହ, ଉଭୟଙ୍କ ପ୍ରତି ନିଜର କର୍ତ୍ତବ୍ୟ

ପାଳନ କରେ, (୩) କୌଣସି ଦାସୀର ମାଲିକ ଯିଏ ତାକୁ ସଦାଚାର ଶିଖାଏ, ତାକୁ ଉତ୍ତମ ଧର୍ମଶିକ୍ଷା ଦିଏ ଏବଂ ତାକୁ ବିବାହ କରିନିଏ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୯୭)

## ୧୮୫.ମୋ ଅନୁଗାମୀ ଅଧିକ ହେବେ

''ପ୍ରତ୍ୟେକ ଈଶ୍ୱରଦୂତଙ୍କୁ (କିଛି ନା କିଛି) ଚମତ୍କାରିତା ପ୍ରଦାନ କରାଯାଇଥିଲା ଯାହା ଯୋଗୁଁ ଲୋକେ ସେମାନଙ୍କୁ ବିଶ୍ୱାସ କରୁଥିଲେ । ମୋତେ କିନ୍ତୁ (ଚମତ୍କାରିତା ରୂପରେ) ଦୈବବାଣୀ (କୁର୍‌ଆନ) ଦିଆଗଲା, ଯାହାକୁ ଅଲ୍ଲାହ ମୋ ପ୍ରତି ପ୍ରକଟ କଲେ । ତେଣୁ ମୁଁ ଆଶା କରେ ଯେ ପୁନର୍ଜୀବିତ ହେବା ଦିନ ଅନ୍ୟ ଈଶ୍ୱରଦୂତମାନଙ୍କର ଅନୁଗାମୀମାନଙ୍କ ଅପେକ୍ଷା ମୋ ଅନୁଗାମୀମାନଙ୍କର ସଂଖ୍ୟା ଅଧିକ ହେବ ।''

(ସହୀ ବୁଖାରୀ, ୬ଷ୍ଠ ଖଣ୍ଡ, ବାଣୀ-୫୦୪)

## ୧୮୬.ସାଂସାରିକ ଫାଇଦା ପାଇଁ ଧର୍ମକୁ ବିକି ଦିଅନାହିଁ

''ସତ୍‌କର୍ମ କରିବାରେ ଶୀଘ୍ର କର । ଅନ୍ଧାର ରାତ୍ରିର ଅଂଶ ଭଳି ପରୀକ୍ଷା ଉପନୀତ ହେବ । ଜଣେ ଲୋକ ସକାଳେ ବିଶ୍ୱାସକାରୀ ଥିବ ଏବଂ ସନ୍ଧ୍ୟାରେ ନାସ୍ତିକ ହୋଇଯିବ ଏବଂ ସନ୍ଧ୍ୟାରେ ବିଶ୍ୱାସକାରୀ ରହିବ, କିନ୍ତୁ ସକାଳେ ନାସ୍ତିକ ହୋଇଯିବ । ପୁଣି କେହି ସାଂସାରିକ ବସ୍ତୁ ପାଇଁ ନିଜ ଧର୍ମକୁ ବିକିଦେବ ।''

(ତିରମିଜୀ, ବାଣୀ-୨୧୯୫)

## ୧୮୭. ମୁଁ ଯାହା ଜାଣେ, ତୁମେ ଜାଣନାହିଁ

''ଯାହା ମୁଁ ଜାଣେ, ଯଦି ତୁମେମାନେ ତାହା ଜାଣିପାରନ୍ତ, ତେବେ ହସିବା ଅପେକ୍ଷା ଅଧିକ କାନ୍ଦନ୍ତ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୪୯୩)

## ୧୮୮.ପରିଣାମ ଅନ୍ତିମ ସମୟର କର୍ମ ଉପରେ ନିର୍ଭର କରେ

''ଜଣେ ବ୍ୟକ୍ତି ଏଭଳି (ସତ୍) କର୍ମ କରେ ଯେ, ଲୋକମାନଙ୍କୁ ତା' କର୍ମଗୁଡ଼ିକ ବୈକୁଣ୍ଠବାସୀମାନଙ୍କର କର୍ମ ପରି ଜଣାପଡ଼େ; କିନ୍ତୁ ପ୍ରକୃତରେ ସେ ବ୍ୟକ୍ତି ନର୍କବାସୀ ହୋଇଥାଏ । ସେହିପରି ଜଣେ ବ୍ୟକ୍ତି ଏଭଳି କର୍ମ

କରେ ଯେ, ତା' କର୍ମଗୁଡ଼ିକ ନର୍କବାସୀମାନଙ୍କର କର୍ମ ପରି ଜଣାପଡ଼େ, କିନ୍ତୁ ପ୍ରକୃତରେ ସେହି ବ୍ୟକ୍ତି ବୈକୁଣ୍ଠବାସୀ ହୋଇଥାଏ । ପରିଣାମ (ମଣିଷର) ଅନ୍ତିମ ସମୟର କର୍ମ ଉପରେ ନିର୍ଭର କରେ ।

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୫୦୦)

## ୧୮୯.ଅତି ସହଜ କର୍ମ

ପୁନରୁତ୍ଥାନ ଦିନ ଜଣେ ଅବିଶ୍ୱାସକାରୀକୁ ପ୍ରଶ୍ନ କରାଯିବ, ''ଯଦି ତୁମ ପାଖରେ ଧରିତ୍ରୀ ପରିମାଣର ସୁନା ଥାଆନ୍ତା, ତୁମେ ନିଜର ମୁକ୍ତି ବଦଳରେ ତାହା ଦିଅନ୍ତ କି ?'' ସେ କହିବ—''ହଁ ।'' ତା'ପରେ ତାକୁ କୁହାଯିବ—''ଏହାଠାରୁ ଅତି ସହଜ କାମଟିଏ କରିବାକୁ ତୁମକୁ କୁହାଯାଇଥିଲା (ଅର୍ଥାତ୍ ଈଶ୍ୱରଙ୍କ ବ୍ୟତୀତ ଅନ୍ୟର ସେବା ଉପାସନା ନ କରିବାପାଇଁ); କିନ୍ତୁ ତୁମେ ମନା କରିଦେଲ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୫୪୬)

## ୧୯୦.ମନୁଷ୍ୟ ପୁନର୍ଜୀବିତ ହେବ

''ପ୍ରତ୍ୟେକ ଭକ୍ତ ସେହି ଅବସ୍ଥାରେ ପୁନର୍ଜୀବିତ ହୋଇଉଠିବ, ଯେଉଁ ଅବସ୍ଥାରେ ସେ ମରିଥିବ ।''

(ସହୀ ମୁସଲିମ, ୪ର୍ଥ ଖଣ୍ଡ, ବାଣୀ-୨୮୭୮)

## ୧୯୧.କର୍ମ ପଞ୍ଜିକା

''ଅଲ୍ଲାହ କୁହନ୍ତି—ଯଦି ମୋ ଭକ୍ତ କୌଣସି ଅପକର୍ମ କରିବା ପାଇଁ ମନରେ ଚିନ୍ତା କରେ ତେବେ (ହେ ଦେବଦୂତ !) ସେ ତାହା ନ କରିବା ପର୍ଯ୍ୟନ୍ତ କର୍ମପଞ୍ଜିକାରେ ଲେଖନାହିଁ । ଯଦି ସେ ସେହି କୁକର୍ମ କରେ, ତେବେ ସେଇଟିକୁ (ଗୋଟିଏ ପାପ) ଲେଖ । କିନ୍ତୁ ଯଦି ସେ ମୋ ପାଇଁ ସେହି ଅପକର୍ମ କରିବାରୁ କ୍ଷାନ୍ତ ହୁଏ, ତେବେ ତା' ଖାତାରେ ଗୋଟିଏ ପୁଣ୍ୟ ଲେଖ । (ଅନ୍ୟ ପକ୍ଷରେ) ଯଦି ସେ କୌଣସି ସତ୍‌କର୍ମ କରିବାକୁ ମନରେ ଚିନ୍ତା କରେ; କିନ୍ତୁ ତାହା କରେନାହିଁ, ତେବେ ତା' ଖାତାରେ ଗୋଟିଏ 'ଭଲ କର୍ମ' ଲେଖ ଏବଂ ଯଦି ସେ ସେହି ଭଲକର୍ମଟି କରେ ତେବେ ତା' ଖାତାରେ ଦଶରୁ ସାତଶହ ପର୍ଯ୍ୟନ୍ତ ପୁଣ୍ୟ ଲେଖ ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୫୯୨)

## ୧୯୨. ତୁମେମାନେ ଈଶ୍ୱରଙ୍କ ଦର୍ଶନ ପାଇବ

‘‘ପୁନର୍ଜୀବିତ ହେବା ଦିନ ତୁମେମାନେ ତୁମ ପ୍ରଭୁଙ୍କର ଏପରି ଦର୍ଶନ କରିବ ଯେପରି ଚନ୍ଦ୍ରଦର୍ଶନ କରୁଛ ଏବଂ ତାଙ୍କୁ ଦର୍ଶନ କରିବାରେ କୌଣସି ଅସୁବିଧା ହେବନାହିଁ ।’’

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୫୩୧)

## ୧୯୩. ଈଶ୍ୱରଙ୍କୁ ସଦାବେଳେ ସ୍ମରଣ କର

ମହାମହିମ ଅଲ୍ଲାହ କୁହନ୍ତି—‘‘ଭକ୍ତର ବିଶ୍ୱାସ ଅନୁଯାୟୀ ମୁଁ ତା’ ସହିତ ବ୍ୟବହାର କରେ ଏବଂ ସେ ମୋତେ ସ୍ମରଣ କରୁଥିବା ସମୟରେ ମୁଁ ତା’ ନିକଟରେ ଥାଏ । ଯଦି ସେ ମୋତେ ମନରେ ସ୍ମରଣ କରେ, ତେବେ ମୁଁ ମଧ୍ୟ ତାକୁ ମୋ ମନରେ ସ୍ମରଣ କରେ, ଯଦି ସେ ଲୋକମାନଙ୍କ ଗହଣରେ ମୋର ଚର୍ଚ୍ଚା କରେ, ତେବେ ମୁଁ ସେମାନଙ୍କ ଅପେକ୍ଷା ଉତ୍କୃଷ୍ଟ ପ୍ରାଣୀମାନଙ୍କର ଗହଣରେ ତା’ର ଚର୍ଚ୍ଚା କରେ ଏବଂ ଯଦି ସେ ମୋ ଆଡ଼କୁ ଚାଖଣ୍ଡେ ଚାଲେ ତେବେ ମୁଁ ତା’ ଆଡ଼କୁ ହାତେ ଚାଲେ ଏବଂ ଯଦି ସେ ମୋ ଆଡ଼କୁ ଚାଲି ଚାଲି ଆସେ, ତେବେ ମୁଁ ତା’ ଆଡ଼କୁ ଦଉଡ଼ିଯାଏ ।’’

(ଇବନେ ମାଜା, ବାଣୀ-୩୮୨୨)

## ୧୯୪. ସ୍ୱର୍ଗର ମହଲ

‘‘ସ୍ୱର୍ଗରେ ଏଭଳି (ବିଳାସପୂର୍ଣ୍ଣ) ମହଲମାନ ଅଛି, ଯାହା ଭିତରୁ ବାହାରପଟ ଏବଂ ବାହାରୁ ଭିତରପଟ ଦେଖାଯାଏ ।’’ ଜଣେ ବେଦୁଇନ୍ ଠିଆ ହୋଇ ପ୍ରଶ୍ନ କଲା—‘‘ହେ ଈଶ୍ୱରଦୂତ ! ସେଗୁଡ଼ିକ କାହା ପାଇଁ (ନିର୍ମିତ) ? ସେ ଉତ୍ତର ଦେଲେ—‘‘ଯିଏ ଉତ୍ତମ କଥା କହେ, କ୍ଷୁଧାର୍ତ୍ତଙ୍କୁ ଭୋଜନ ଦିଏ, ନିୟମିତ ଉପବାସ କରେ ଏବଂ ରାତିରେ ଲୋକେ ଶୋଇଥିବାବେଳେ (ଅଲ୍ଲାହଙ୍କ ପାଇଁ) ନମାଜ ପଢ଼େ ।’’

(ତିରମିଜୀ, ବାଣୀ-୧୯୮୪)

## ୧୯୫. ବିଶ୍ୱାସର ଅର୍ଥ

‘‘(ବିଶ୍ୱାସ କରିବା ଅର୍ଥ ଏହି ଯେ) ତୁମେ ଅଲ୍ଲାହଙ୍କ ପ୍ରତି, ତାଙ୍କର ସ୍ୱର୍ଗଦୂତମାନଙ୍କ ପ୍ରତି, ତାଙ୍କ ସାକ୍ଷାତ ପ୍ରତି, ତାଙ୍କ ବାର୍ତ୍ତାବହମାନଙ୍କ

ପ୍ରତି ଏବଂ ପରଲୋକରେ ପୁନର୍ଜୀବିତ ହେବା ପ୍ରତି ଦୃଢ଼ ସ୍ୱୀକାରୋକ୍ତି ଦିଅ ।''

(ସହୀ ମୁସଲିମ, ୧ମ ଖଣ୍ଡ, ବାଣୀ-୯)

### ୧୯୬.ଇସଲାମର ମୌଳିକ ବିଶ୍ୱାସ

''ଚାରିଗୋଟି କଥାରେ ବିଶ୍ୱାସ ନ କରିବା ପର୍ଯ୍ୟନ୍ତ ଜଣେ ଭକ୍ତ ବିଶ୍ୱାସକାରୀ ନୁହେଁ—ଅଲ୍ଲାହଙ୍କ ବ୍ୟତୀତ କେହି ଉପାସନା ଯୋଗ୍ୟ ନୁହେଁ ଏବଂ ମୁଁ ଅଲ୍ଲାହଙ୍କ ବାର୍ତ୍ତାବହ ଯାହାକୁ ସେ ସତ୍ୟର ବାର୍ତ୍ତା ଦେଇ ପ୍ରେରଣ କରିଛନ୍ତି, ମୃତ୍ୟୁ ଏବଂ ମୃତ୍ୟୁ ପରେ ପୁନର୍ଜୀବନ ପାଇ ଉଠିବାରେ ଏବଂ ଭାଗ୍ୟରେ ।''

(ତିରମିଜୀ, ବାଣୀ-୨୧୪୫)

### ୧୯୭.ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ବିଶ୍ୱାସ

''ତୁମମାନଙ୍କ ମଧ୍ୟରୁ କେହି ବିଶ୍ୱାସକାରୀ ହୋଇପାରିବ ନାହିଁ, ଯେପର୍ଯ୍ୟନ୍ତ ସେ ନିଜ ପିତା, ସନ୍ତାନସନ୍ତତି ଏବଂ ସମସ୍ତ ମଣିଷଙ୍କ ଅପେକ୍ଷା ମୋତେ ଅଧିକ ପ୍ରେମ ନ କରେ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୧୪)

### ୧୯୮. ଇସ୍‌ଲାମର ସ୍ତମ୍ଭ

''ଇସ୍‌ଲାମ ପାଞ୍ଚୋଟି ସ୍ତମ୍ଭ ଉପରେ ଦଣ୍ଡାୟମାନ—(୧) ଏହାର ସାକ୍ଷ୍ୟ ପ୍ରଦାନ କରିବା ଯେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହେଁ ଏବଂ ମୁହମ୍ମଦ ଅଲ୍ଲାହଙ୍କର ବାର୍ତ୍ତାବହ, (୨) ଭଲ ରୂପେ ନିୟମିତ ନମାଜ ପ୍ରତିଷ୍ଠା କରିବା, (୩) ଜକାତ୍ ଦେବା (ବାଧ୍ୟତାମୂଳକ ଦାନ), (୪) ହଜ୍ କରିବା (ମକ୍କା ତୀର୍ଥଯାତ୍ରା), ଏବଂ (୫) ରମଜାନ ମାସରେ ଉପବାସ ପାଳନ କରିବା ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୭)

### ୧୯୯.ସ୍ୱର୍ଗରେ ପ୍ରବେଶ କରିବାର ବାଟ

''(ସ୍ୱର୍ଗରେ ପ୍ରବେଶ କରିବାକୁ ହେଲେ) ତୁମେ ଅଲ୍ଲାହଙ୍କର ଉପାସନା କର ଏବଂ ତାଙ୍କ ସହିତ ଅନ୍ୟ କାହାରି ଉପାସନା କରନାହିଁ, ଉତ୍ତମ

ରୂପେ ନମାଜ ପଢ଼, ଦାନ (ଜକାତ୍) ଦିଅ ଏବଂ ନିଜ ନିକଟ ସମ୍ପର୍କୀୟମାନଙ୍କ ସହ ଭଲ ସମ୍ପର୍କ ରଖ ।''

(ସହୀ ବୁଖାରୀ, ୮ମ ଖଣ୍ଡ, ବାଣୀ-୧୨)

## ୨୦୦.ମୋ ଆନୁଗତ୍ୟର ଶପଥ ନିଅ

''ମୋ ପ୍ରତି ଆନୁଗତ୍ୟର ଶପଥ ନିଅ ଯେ, (୧) ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ଉପାସନାରେ ଅଂଶୀଦାର କରିବ ନାହିଁ, (୨) ଚୋରି କରିବ ନାହିଁ, (୩) ଅବୈଧ ଯୌନସଙ୍ଗମ କରିବ ନାହିଁ, (୪) ନିଜ ସନ୍ତାନମାନଙ୍କୁ ହତ୍ୟା କରିବ ନାହିଁ, (୫) କୌଣସି ନିର୍ଦ୍ଦୋଷ ବ୍ୟକ୍ତି ପ୍ରତି ମିଥ୍ୟାରୋପ କରିବ ନାହିଁ, (୬) ଭଲ କର୍ମର ଆଦେଶ ଦିଆଗଲେ ଅବଜ୍ଞା କରିବ ନାହିଁ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୧୭)

## ୨୦୧.ଉପବାସ ଦ୍ୱାରା ପାପ କ୍ଷୟ ହୁଏ

''ଯିଏ ରମଜାନ ମାସରେ ବିଶ୍ୱାସର ସହିତ ନିଷ୍ଠାପର ଭାବେ ଉପବାସ ପାଳନ କରେ ଏବଂ ଅଲ୍ଲାହଙ୍କଠାରୁ ଏହାର ପ୍ରତିଦାନର ଆଶା ରଖେ, ତାର ପୂର୍ବ ପାପଗୁଡ଼ିକୁ କ୍ଷମା କରି ଦିଆଯିବ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୩୭)

## ୨୦୨. ପ୍ରାର୍ଥନାର ମହତ୍ତ୍ୱ

''ଯଦି କୌଣସି ବ୍ୟକ୍ତିର ଘର ସାମ୍ନାରେ ନଈଟିଏ ଥାଏ ଏବଂ ସେ ପ୍ରତିଦିନ ସେଥିରେ ପାଞ୍ଚଥର ସ୍ନାନ କରେ, କ'ଣ ତା' ଦେହରେ କିଛି ମଇଳା ରହିବ ? ଲୋକମାନେ କହିଲେ—''କିଛି ମଇଳା ରହିବ ନାହିଁ ।'' ଈଶ୍ୱରଦୂତ କହିଲେ—''ଏହାହିଁ ହେଉଛି ପାଞ୍ଚଥର ପ୍ରାର୍ଥନା (ନମାଜ)ର ଦୃଷ୍ଟାନ୍ତ । ଏହାଦ୍ୱାରା ଅଲ୍ଲାହ ଅସତ୍‌କର୍ମର ପ୍ରଭାବକୁ ନଷ୍ଟ କରିଦିଅନ୍ତି ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୫୦୬)

## ୨୦୩.ସାମର୍ଥ୍ୟ ଅନୁସାରେ ସତ୍‌କର୍ମ କର

''ନିଜ ସାମର୍ଥ୍ୟ ଅନୁଯାୟୀ କର୍ମ କର, କାରଣ ଅଲ୍ଲାହ ପ୍ରତିଦାନ ଦେବାରେ ଥକିଯାଆନ୍ତି ନାହିଁ; ମାତ୍ର ତୁମେ (ଅବଶ୍ୟ) ଥକିଯିବ ।

ଅଲ୍ଲାହଙ୍କ ନିକଟରେ ତାହାହିଁ ସର୍ବୋତ୍ତମ ଉପାସନା ଯାହା ନିୟମିତ ରୂପେ କରାଯାଏ ।''

(ସହୀ ବୁଖାରୀ, ୧ମ ଖଣ୍ଡ, ବାଣୀ-୪୧)

## ୨୦୪.ବିପଦଭଞ୍ଜନ ପାଇଁ ଡାକିବା ଏକ ଉପାସନା

''(ବିପଦ ଭଞ୍ଜନ ପାଇଁ) ଡାକିବା ଅବଶ୍ୟ ଏକ ଉପାସନା ।'' ତା'ପରେ ମହାମାନ୍ୟ ଈଶ୍ୱରଦୂତ ଆବୃତ୍ତି କଲେ—''ଏବଂ ତୁମ ପ୍ରଭୁ କୁହନ୍ତି ମୋତେ ଡାକ, ମୁଁ ତୁମର ଡାକ ଶୁଣିବି ।'' (କୁର୍‌ଆନ ୪୦ : ୬୦)

(ଇବନେ ମାଜା, ବାଣୀ-୩୮୨୮)

## ୨୦୫. ସାତଜଣ ଭାଗ୍ୟଶାଳୀ

ଯେଉଁଦିନ ଅଲ୍ଲାହଙ୍କ ଛାୟା ବ୍ୟତୀତ ଅନ୍ୟ କାହାରି ଛାୟା ନଥିବ, ସେଦିନ ସାତଜଣଙ୍କୁ ସେ ନିଜର ଛାୟା ପ୍ରଦାନ କରିବେ । ସେମାନେ ହେଲେ—

(୧) ଜଣେ ନ୍ୟାୟବନ୍ତ ଶାସକ

(୨) ସେହି ଯୁବକ ଯିଏ ପିଲାଦିନୁ କେବଳ ଅଲ୍ଲାହଙ୍କର ଉପାସନା କରିଆସିଛି ।

(୩) ସେହି ବ୍ୟକ୍ତି ଯାହାର ମନ ସର୍ବଦା ମସଜିଦ୍‌ରେ ରହିଥାଏ ।

(୪) ସେଇ ଦୁଇଜଣ ବ୍ୟକ୍ତି ଯେଉଁମାନେ ପରସ୍ପରକୁ କେବଳ ଅଲ୍ଲାହଙ୍କ ପାଇଁ ପ୍ରେମ କରନ୍ତି, ଅଲ୍ଲାହଙ୍କ ପାଇଁ ମିଶନ୍ତି ବା ଅଲଗା ହୁଅନ୍ତି ।

(୫) ସେହି ବ୍ୟକ୍ତି ଯାହାକୁ ଜଣେ ଉଚ୍ଚବଂଶୀୟା ସୁନ୍ଦରୀ ତରୁଣୀ ଅବୈଧ ଯୌନ ସମ୍ଭୋଗ ପାଇଁ ଆମନ୍ତ୍ରଣ କରେ; କିନ୍ତୁ ସେ ତାକୁ ପ୍ରତ୍ୟାଖ୍ୟାନ କରିଦିଏ ଏବଂ କହେ ଯେ ମୁଁ ଅଲ୍ଲାହଙ୍କୁ ଭୟ କରୁଛି ।

(୬) ସେହି ବ୍ୟକ୍ତି ଯିଏ ଏମିତି ଦାନ ଦିଏ ଯେ ତା' ବାମହାତ ଜାଣେନା ଯେ ତା'ର ଡାହାଣ ହାତ କ'ଣ ଦେଲା ।

(୭) ସେହି ବ୍ୟକ୍ତି ଯିଏ ଏକ ନିଭୃତ ସ୍ଥାନରେ ଅଲ୍ଲାହଙ୍କୁ ସ୍ମରଣ କରେ ଏବଂ ତା' ଆଖି ଲୁହରେ ଛଳ ଛଳ ହୋଇଯାଏ ।

(ସହୀ ବୁଖାରୀ, ୨ୟ ଖଣ୍ଡ, ବାଣୀ-୫୦୪)

## ୨୦୬. କୁର୍‌ଆନ ଶିଖ ଏବଂ ଶିଖାଅ

''ତୁମମାନଙ୍କ ମଧ୍ୟରେ ସର୍ବୋତ୍ତମ ଲୋକ ସେହି ଯିଏ କୁର୍‌ଆନର ଜ୍ଞାନ ଲାଭ କରେ ଏବଂ ଅନ୍ୟକୁ ଏହାର ଶିକ୍ଷା ଦିଏ ।''

(ଇବନେ ମାଜା, ବାଣୀ-୨୧୨)

## ୨୦୭. ଈଶ୍ୱର ବାଣୀ ସର୍ବୋତ୍କୃଷ୍ଟ ବାଣୀ

''ଅଲ୍ଲାହଙ୍କ ଗ୍ରନ୍ଥ ସର୍ବୋତ୍କୃଷ୍ଟ ବାଣୀ, ମୁହମ୍ମଦଙ୍କ ମାର୍ଗ ସର୍ବୋତ୍କୃଷ୍ଟ ମାର୍ଗ ଏବଂ ସବୁଠାରୁ ନିକୃଷ୍ଟ କଥା ହେଉଛି ଧର୍ମରେ ନୂଆ ନୂଆ ଆଚାର ଏବଂ ପ୍ରତ୍ୟେକ ନୂଆ କଥା ବିଭ୍ରାନ୍ତିକର ।''

(ସହୀ ମୁସଲିମ, ୨ୟ ଖଣ୍ଡ, ବାଣୀ-୮୬୭)

## ୨୦୮. ଧର୍ମରେ ନୂଆ କଥା ବାହାର କରନାହିଁ

''ଯିଏ ଧର୍ମରେ ନୂଆ ନୂଆ କଥା ବାହାର କରେ, ଯାହାର କୌଣସି ପ୍ରମାଣ ନାହିଁ, ସେଗୁଡ଼ିକ ଅବଶ୍ୟ ରଦ୍ଦ କରିଦିଆଯିବ ।''

(ସହୀ ମୁସଲିମ, ୩ୟ ଖଣ୍ଡ, ବାଣୀ-୧୭୧୮)

## ୨୦୯. ମୋ ଉପଦେଶ ଗ୍ରହଣ କଲେ ସ୍ୱର୍ଗରେ ପ୍ରବେଶ କରିବ

''ମୋର ସମସ୍ତ ଅନୁଗାମୀ ସ୍ୱର୍ଗକୁ ଯିବେ; ମାତ୍ର ସେମାନେ ଯିବେନାହିଁ ଯେଉଁମାନେ ମନା କରିଦିଅନ୍ତି ।'' ପ୍ରଶ୍ନ କରାଗଲା—''ହେ ଈଶ୍ୱରଦୂତ ! (ସ୍ୱର୍ଗକୁ ଯିବାପାଇଁ) କିଏ ମନା କରିବ ?'' ସେ ଉତ୍ତର ଦେଲେ— ''ଯିଏ ମୋ କଥା ମାନେ ସେ ସ୍ୱର୍ଗକୁ ଯିବ ଏବଂ ଯିଏ ମୋତେ ଅବଜ୍ଞା କରେ, ସେ ସ୍ୱର୍ଗକୁ ଯିବାପାଇଁ ମନା କରିଦିଏ ।''

(ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ-୩୮୪)

## ୨୧୦. ମୋ କଥା ପହଞ୍ଚାଇ ଦିଅ

''ଶୁଣ, ଯିଏ ଏଠାରେ ଉପସ୍ଥିତ ଅଛି, ସେ ଏଠାରେ ଅନୁପସ୍ଥିତ ଥିବା ବ୍ୟକ୍ତିକୁ ମୋ କଥା ପହଞ୍ଚାଇ ଦେଉ ।

(ଇବନେ ମାଜା, ବାଣୀ-୨୩୪)



# BIBLIOGRAPHY

1. *Rao Prof. K.S. Ramakrishna*, Muhammad, the Prophet of Islam, Madras, 1952
2. *Thomas Carlyle*, Heros and Hero Worship, London
3. *R. Bosworth Smith*, Mohammad and Mohammadanism, London, 1874
4. *Alphonse De Lamartine*, Histoire De La Turquie, Paris, 1854
5. *John William Draper*, History of the Intellectual Development of Europe, London, 1875
6. *Michael H. Hart*, The 100 : A Ranking of the Most Influential Persons in History, Meera Publication, Chennai
7. Time, USA, July, 1974
8. *Edward Gibbon*, Life of Mahomet, London, 1881
9. *Major Arthur Glyn Leonard*, Islam : Her Moral And Spiritual Value, London, 1909
10. *John Davaport*, An Apology for Mohammed and the Koran, London, 1869
11. *Clinton Bennett*, Victorian Images of Islam, England, 1992
12. *Godfray Higgins Esq.*, An Apology ford the Life and Character of the Celebrated Prophet of Arabia called Mahomed or the Illustrious, London, 1829
13. *M.N. Roy*, The Historical Role of Islam, Bombay, 1938
14. *Marcus Dods*, Mohammed, Buddha And Christ, London, 1877
15. *Samuel G. Goodrich*, Famous Men of Ancient Times, Boston, 1852
16. *Stanley Lane-poole*, Studies in A Mosque, London, 1883

17. *G.M. Draycott*, Mahomet - Founder of Islam, New York, 1916

18. *D.S. Margoliouth*, Mohammed and the Rise of Islam, New York & London, 1905

19. *H.A.R. Gibb*, Mohammedanism, An Historical Survey, New York, 1962

20. *William Montgomery Watt*, Prophet and Statesman, London, 1960

21. *Washington Irvings*, Mahomet and His Successors, New York, 1868

22. *Sir William Muir*, Mahomet and Islam, The Religious Tract Society, St. Paul's Churchyard, 1887

23. *Meredith Towsnsend*, Mahommed - The Great Arabian, New York, 1912

24. Antim Sandesta (Hindi), *Mufti Mhod. Sarwar Faruqui Nadwi*, Jamiat Payame-Amn, Nadwa Road, Daliganj, Lucknow, 2004

25. *Dr. Ved Prakash Upapddhay*, Muhammad in the Hindu Scriptures, Islamic Book Service, New Delhi, 2006

26. *Devendranath Tagore*, The Autobiography of Maharshi Devendranath Tagore, London, 1914

27. *Martin Lings*, Muhammed - His Life from Earlier Sources, London, 1983

28. The Choice, *Ahmed Deedat*, KSA, 1993

29. Sirat Ibn Hisham, (English Translation) A. Farid, Al-Fatah Foundation, Cairo, 2000

30. A Dictionary of Islam, *Thomas Patrick Hughes*, London, 1885

31. Encyclopedia Britannica or A Dictionary of Arts and Sciences, London

32. *John Laurice Blake*, The Family Encyclopedia of Useful Knowledge and General Literature, New York, 1834

33. *Harun Yahia*, Learning from the Qur'an, Turkey, 2003

34. *Sir William Muir*, The Life of Mahomet, London, 1861

35. *Sir William Muir*, The Life of Mahomet from Original Sources, London, 1923
36. *W. St.C. Tisdall*, The Original Sources of the Koran, London and New York, 1911
37. *J.M. Rodwell*, El-Koran, London, 1876
38. *Alvan Lamson*, DD, The Church of the First Three Centuries, Boston, 1860
39. A History of the Origin of the Doctrine of the Trinity in the Christian Church, *Hugh H. Stannus*, London, 1882
40. *Annie Besant*, The Life and Teachings of Muhammad, Madras, 1932
41. *Dr. M.A. Srivastav*, Hazrat Muhammad Aur Bharatiya Dharma Grantha (Hindi), Lucknow
42. *Harun Yahya*, The Miracles of the Qur'an, Canada, 2000
43. *Dr. Maurice Bucaille*, The Bible, the Qur'an and Science, Idara Ishate Diniyat, New Delhi, 2002
44. *A.H. Vidyarthi*, Muhammad in the World Scriptures, 2nd Edition, Lahore, 1975
45. *Paul Carus*, Gospel of Buddha, 9th Edition, Chicago, 1904
46. *A.H. Vidyarthi and U. Ali*, Muhammad in Parsi, Hindoo and Buddhist Scriptures, Islamic Book Service, Darya Ganj, New Delhi, 2005
47. *Gopal Chandra Praharaj*, Purna Chandra Odiya Bhashakosh (Oriya), Utkal Sahitya Press, Cuttack, 1931
48. Rig Veda (Oriya Translation), *Madhusudan Mohanty*, Dharma Grantha Store, Cuttack, 1981
49. Yajur Veda (Oriya Translation), *Madhusudan Mohanty*, Dharma Grantha Store, Cuttack
50. The Holy Bible (Oriya), The Bible Society of India, Mahatma Gandhi Road, Bangalore
51. The Holy Bible, New International Version, New York International Bible Society, 1978

52. The Meaning of the Holy Qur'an (Text, Translation and Commentary), *Abdullah Yusuf Ali*

53. Sahih Al-Bukhari (Arabic-English), *Dr. Muhammad Muhsin Khan*, Kitab Bhavan, Darya Ganj, New Delhi, 1984

54. Sahih Muslim, (English Translation) , *Abdul Hamid Siddiqi*, Islamic Book Service, Darya Ganj, New Delhi, 4th Edition, 2005

55. Jami At-Tirmidhi (Arabic-English), *Abu Khaliyl* (USA), Darussalam, Riyadh, KSA, 2007

56. Sunan Abu Dawud (English), *Ahmad Hasan*, Kitab Bhavan, Darya Ganj, New Delhi, 1990

57. Sunan Ibn-e-Majah, (Arabic-English), *Mohammad Tufail Ansari*, Kitab Bhavan, Darya Ganj, New Delhi, 2008

58. Encyclopedia Britannica Ultimate Reference Suite, Chicago, 2011

59. *Dr. Zakir Naik*, The Quran and Modern Science Compatible or Incompatible, Adam Publishers and Distributors, New Delhi, 2008.

59. http://www.britannica.com

60. http://en.wikipedia.org

61. http://www.harunyahya.com

62. http://www.irf.net

63. http://www.islam-guide.com

